# ଭାଗବତ କଥା

(ଅଷ୍ଟାଦଶ ଖଣ୍ଡ)

ଲେଖକ

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା

ଡ଼ଃ କୃଷ୍ଣପ୍ରସାଦ ମିଶ୍ର

ଅନୁବାଦ

ଡକ୍ଟର ଭଗବାନ ପଣ୍ଡା

ପ୍ରକାଶକ



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

( ଅଷ୍ଟାଦଶ ଖଣ୍ଡ )

ପ୍ରକାଶିକା

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

କଟକ ଷ୍ଟୁଡେଣ୍ଟସ ଷ୍ଟୋର

ବାଲୁବଜାର କଟକ-୭୫୩୦୦୨

ପ୍ରଥମ ସଂସ୍କରଣ—୧୯୮୫

ପ୍ରଚ୍ଛଦ

ଶ୍ରୀ ଅସିତ ମୁଖାର୍ଜୀ

ମୁଦ୍ରଣ

**ନବରତ୍ନ ପ୍ରିଣ୍ଟର୍ସ**

ଝାଞ୍ଜିରିମଙ୍ଗଳା, କଟକ-୯

ମୂଲ୍ୟ – ବନ୍ଧାଇ : ୧୫ ଟଙ୍କା

ସାଦା : ୧୨ ଟଙ୍କା

**BHAGABAT KATHA**

(18th Part)

**Sri Prabhudatta Brahmacharee**

Publisher :

**Srimati Annapurna Mishra**

Cuttack Student's Store

Cuttack-753002

First Edition—1985

Price—Deluxe Rs. 15-00

Popular Rs. 12-00



ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|




# ବୃତ୍ରାସୁର ବଧ

ବଜ୍ରସ୍ତୁ ତତ୍କନ୍ଧରମାଶୁବେଗଃ କୃନ୍ତନ୍ ସମନ୍ତାତ୍ ପରିବର୍ତ୍ତମାନଃ ।
ନ୍ୟପାତୟତ୍ତାବଦହର୍ଗଣେନ ଯୋ ଜ୍ୟୋତିଷାମୟନେ
ବାର୍ତ୍ରହତ୍ୟେ ॥

(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୨ଅ-୩୩ ଶ୍ଳୋ)

**ଛପ୍ପୟ**

ଆକେ ବାହର ଇନ୍ଦ୍ର ଅସୁର କେ ସିର୍ କୂଁ କାଟେଂ ।
ବଜ୍ର, ବେଗ ତେଂ ଘୁସେଂ ଅସୁର କୀ ଅସ୍ଥି ନ ଫାଟେଂ ॥
ସବରୀ-ଶକ୍ତି ଲଗାୟ କର୍ୟୋ ଧଡ଼ ସିର ତେ ନ୍ୟାରୋ ।
ଏକ ବର୍ଷ ଦ୍ୟୋଂ ଲଗ୍ୟୋ ମର୍ୟୋ ପୁନି ବୃତ୍ର ବିଚାରୋ ॥
ମୁନି ଦଧୀଚି କୀ ଅସ୍ଥି ତେଁ, ବଜ୍ର ବନ୍ୟୋ ସୁରଂ-ରିପୁ ମର୍ୟୋ ।
ଅବ ଚରିତ ଅଗିଲୋ ସୁନୋ, ଜୋ ଦଧୀଚି ପତ୍ନୀ କର୍ୟୋ ॥

ମହାପୁରୁଷମାନଙ୍କ ଚରିତ୍ର ଆଦର୍ଶସ୍ଥାନୀୟ । ସେମାନେ ଯେଉଁ କାର୍ଯ୍ୟ ହାତକୁ ନିଅନ୍ତି, ତାହା ସୁଚାରୁରୂପେ ସମ୍ପନ୍ନ କରନ୍ତି । ସେମାନଙ୍କର ଆନନ୍ଦ ଓ କ୍ରୋଧ ମଧ୍ୟରୁ କୌଣସିଟି ବ୍ୟର୍ଥ ହୁଏ ନାହିଁ । ସେମାନେ ନିଗ୍ରହ ଓ ଅନୁଗ୍ରହ ଉଭୟ କାର୍ଯ୍ୟରେ ସମର୍ଥ । ପରୋପକାର ସାଧନ ପାଇଁ ସେମାନେ ସବୁକିଛି କରିପାରନ୍ତି । ସୁଖ ଦୁଃଖରେ ସମଭାବନା ପୋଷଣ କରୁଥିବା ଲୋକ ଜ୍ଞାନୀ ବୋଲି ବିବେଚିତ ହୁଏ । ପୁତ୍ର ଓ ପ୍ରାଣର ମୋହ ତ୍ୟାଗ କରି ପତିଙ୍କ ଅନୁଗାମୀ ହେବା ପତିପ୍ରାଣା ବା ପତିବ୍ରତା ନାରୀର ସ୍ୱଭାବ । ନିଜର ଉଦ୍ଦେଶ୍ୟ ପୂରଣ ପାଇଁ ଯେ ଉଚିତ ଅନୁଚିତ ବିଚାର ନ କରି କାର୍ଯ୍ୟ କରେ ତାକୁ ସ୍ୱାର୍ଥପର କହନ୍ତି । କିନ୍ତୁ ଯାହାର ହୃଦୟରେ ଭଗବଦ୍ ଭକ୍ତି ଅଛି ସେ ପ୍ରକୃତରେ ଧନ୍ୟ । ଯେଉଁ ଯୋନିରେ ଜନ୍ମ ହେଉ ବା ଯେଉଁ ଅବସ୍ଥାରେ ଥାଉନା କାହିଁକି ସେ ସମସ୍ତଙ୍କର ପୂଜନୀୟ, ସ୍ମରଣୀୟ ଓ ଅଭିନନ୍ଦନୀୟ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ବୃତ୍ରାସୁରର ପେଟ ଚିରି ଇନ୍ଦ୍ର ବାହାରି ଆସିଲେ, ତଥାପି ସେ ମଲା ନାହିଁ । ହାତଦୁଇଟି ତା'ର କାଟିଦିଆଯାଇଥିଲା, ପେଟ ଫାଟିଗଲା, ତେବେବି ସେ ବିନ୍ଧ୍ୟ ପର୍ବତ ପରି ପଡ଼ିରହିଲା । ଗିରିଗୁହା ପରି ତା'ର ପାଟି

ମେଲି ଥିଲା ଏବଂ ବାହାରକୁ ବାହାରି ପଡ଼ୁଥିବା ଜିହ୍ୱା ଠିକ୍ ଇନ୍ଦ୍ରଧନୁ ପରି ଦେଖା-ଯାଉଥିଲା । ଇନ୍ଦ୍ର ନିଜର ଅମୋଘ ଅସ୍ତ୍ର ବଜ୍ର ଦ୍ୱାରା ତା'ର ମୁଣ୍ଡ କାଟିବାକୁ ଆରମ୍ଭ କଲେ । କିନ୍ତୁ ଟିକିଏ ହେଲେବି କଟିଲା ନାହିଁ । ତା'ର ହାଡ଼ସବୁ ବଜ୍ରପରି କଠୋର ଓ ଅଭେଦ୍ୟ ଥିଲା । ଇନ୍ଦ୍ର ଭଗବାନ୍‌ଙ୍କ ନାମ ସ୍ମରଣ କରି ତା' ଶରୀରପାଖରେ ବୁଲି ବୁଲି ନିଜର ସମସ୍ତ ବଳ ଲଗାଇ ବୃତ୍ରାସୁରକୁ କାଟିବାକୁ ଆରମ୍ଭ କଲେ । ସାବାନ ଓ ସାର ରାତ୍ର ଅର୍ଥାତ୍ ଆମମାନଙ୍କର ସମସ୍ତ ଗଣନା ଅନୁସାରେ ପୂରା ବର୍ଷେ କାଳ ଲାଗି ଇନ୍ଦ୍ର ଅସୁରର କେବଳ ମୁଣ୍ଡଟା କାଟି ପାରିଲେ । ବୃତ୍ରାସୁରର ଦେହରୁ ମୁଣ୍ଡଟା ଅଲଗା ହୋଇଯିବାର ଦେଖି ଦେବଗଣ ଖୁବ୍ ଆନନ୍ଦିତ ହେଲେ । ଅନେକ ଆନନ୍ଦରେ ଦୁନ୍ଦୁଭି ବାଦ୍ୟ ବଜାଇବାକୁ ଲାଗିଲେ । ମୁନିଋଷିଗଣ ବୃତ୍ରାସୁରହନ୍ତା ଇନ୍ଦ୍ରଙ୍କୁ ନାନାପ୍ରକାର ସ୍ତୁତି କଲେ । ଗନ୍ଧର୍ବମାନେ ସଙ୍ଗୀତ ଗାନ କଲେ ଓ ସେଇ ସଙ୍ଗୀତର ତାଳେ ତାଳେ ଅପ୍‌ସରାଗଣ ନୃତ୍ୟ କରିବାକୁ ଲାଗିଲେ । ସ୍ୱର୍ଗଆଡ଼େ ଆନନ୍ଦର ଢେଉ ଖେଳିଗଲା ।

ଇନ୍ଦ୍ର ଯେଉଁଠି ବଜ୍ରରେ ବୃତ୍ରାସୁରର ମୁଣ୍ଡ କାଟୁଥିଲେ ସେଇଠି ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ବନମାଳୀ ଠିଆ ହୋଇ ହସୁଥିଲେ । ବୃତ୍ରାସୁର ଏକ ଧ୍ୟାନରେ ତନ୍ମୟ ହୋଇ ନିଜର ପ୍ରିୟ ଇଷ୍ଟଦେବ ଶ୍ୟାମସୁନ୍ଦରଙ୍କୁ ଚାହିଁଥାଏ । ତା'ର ମନରେ ଦୁଃଖ ନ ଥିଲା କି ଆନନ୍ଦ ନଥିଲା । ନିଜର ପ୍ରଭୁଙ୍କୁ ଆଖିଆଗରେ ଦେଖୁଥିବାରୁ ଓ ତାଙ୍କର ନାମ ସ୍ମରଣ କରୁଥିବାରୁ ତାକୁ ଟିକିଏ ହେଲେ କଷ୍ଟ ହେଉ ନ ଥିଲା । ଆକାଶରେ ଥାଇ ସିଦ୍ଧ, ଚାରଣ ଓ ଗନ୍ଧର୍ବଗଣ ଏହି ବିଚିତ୍ର ଦୃଶ୍ୟ ଦେଖୁଥିଲେ । ସମସ୍ତଙ୍କ ଦେଖୁଥିବା ଅବସ୍ଥାରେ ବୃତ୍ରାସୁର ଦେହରୁ ଏକ ପରମ ପ୍ରକାଶମୟୀ ଜ୍ୟୋତି ବାହାରି ସର୍ବଲୋକାତୀତ ଭଗବାନ୍ ବାସୁଦେବଙ୍କ ଶରୀରରେ ଲୀନ ହୋଇଗଲା । ବର୍ଷାକାଳରେ ବିଜୁଳି ଚମକି ଉଠି ଯେପରି ଆକାଶରେ ଲୀନ ହୋଇଯାଏ ଏହା ଠିକ୍ ସେହିପରି ଦେଖାଗଲା । ବୃତ୍ରାସୁର ଶରୀର ତ୍ୟାଗ କରି ସଦ୍‌ଗତି ଲାଭକଲା । କର୍ମବନ୍ଧନରୁ ସେ ଚିରକାଳ ପାଇଁ ମୁକ୍ତ ହୋଇଗଲା । ନିଜର ଅଚଳା ଭଗବଦ୍ ଭକ୍ତିରେ ନିଷ୍ଠା ଥିବା ହେତୁ ସେ ସେହି ଅକ୍ଷୟ ପଦ ଲାଭ କଲା, ଯେଉଁଠାକୁ ଯାଇ ଆଉ କେହି କେବେ ସଂସାରକୁ ଫେରିଆସେ ନାହିଁ ।

ବୃତ୍ରାସୁର ବଧ କଥା ଶୁଣିବା ପରେ ମହର୍ଷି ଶୌନକ ପଚାରିଲେ—ଭଗବନ୍ ! ଆମେ ଏହି ଅଦଭୁତ ଆଖ୍ୟାନ ଶୁଣିବା ସଙ୍ଗେ ସଙ୍ଗେ ମହର୍ଷି ଦଧୀଚିଙ୍କ ତପସ୍ୟା, ତେଜ, ମନୋହରକାରୀ ଓ ଅଦ୍ଭୁତ ଶକ୍ତି କଥା ଭାବିଲାମାତ୍ରେ ଦେହ ଆମର ରୋମାଞ୍ଚିତ ହୋଇ-ଉଠୁଛି । ସେ ଯଦି ତାଙ୍କ ଶରୀର ଦାନ କରି ନଥାନ୍ତେ ତେବେ କୌଣସି ଉପାୟରେ ବୃତ୍ରାସୁରକୁ ମାରିବା ସମ୍ଭବ ହୋଇ ନଥାନ୍ତା । କିନ୍ତୁ ଆପଣ କଥାଟାକୁ ଅଧାରେ ରଖିଦେଲେ । ଆପଣ କହୁଥିଲେ ଯେତେବେଳେ ଦେବଗଣ ଦଧୀଚି ମୁନିଙ୍କୁ ଅସ୍ଥି ମାଗିବା ପାଇଁ ଗଲେ ସେତେବେଳେ ତାଙ୍କର ପତିବ୍ରତା ପତ୍ନୀ ନଦୀକୁ ପାଣି ଆଣିବାପାଇଁ ଯାଇଥିଲେ । ସେ ଫେରିଆସିଲେ ସବୁ ଯୋଜନା ପଣ୍ଡ ହୋଇଯିବ ବୋଲି ଭାବି ଦେବଗଣ ବ୍ୟସ୍ତ ହେଉଥିଲେ । ସେ ଫେରି ଆସିଲେ ମୁନିଙ୍କୁ ଦେହତ୍ୟାଗ କରିବା ପାଇଁ ସୁଯୋଗ

ଦେବେ ନାହିଁ । ଦେବତାମାନଙ୍କ ଅନୁରୋଧରେ ପତ୍ନୀ ଫେରିବା ପୂର୍ବରୁ ଦଧୀଚି ଦେହ ତ୍ୟାଗ କଲେ ଏବଂ ବିଶ୍ୱକର୍ମା ସଙ୍ଗେ ସଙ୍ଗେ ତାଙ୍କ ଅସ୍ଥି ନେଇ ବଜ୍ର ଓ ଅନ୍ୟାନ୍ୟ ଅସ୍ତ୍ର ତିଆରି କଲେ । ଦେବଗଣ ସେ ଅସ୍ତ୍ରଶସ୍ତ୍ର ନେଇ ଯଥାଶୀଘ୍ର ସେଠାରୁ ପଳାଇଗଲେ । ଦେବତାମାନେ ଚାଲିଯିବା ପରେ ମୁନିଙ୍କ ପତ୍ନୀ ଆଶ୍ରମକୁ ଫେରିଆସି କଣ ଦେଖିଲେ ? ଏହା ଶୁଣିବା ପାଇଁ ଆମର କୌତୂହଳ ଜାତ ହୋଇଛି ।

ସୂତମୁନି ଏହି ପ୍ରଶ୍ନ ଶୁଣି ପ୍ରସନ୍ନ ହୋଇ କହିବାକୁ ଆରମ୍ଭ କଲେ—ମୁନିଗଣ ! ଆପଣମାନଙ୍କ ପରି ଶ୍ରୋତାଗଣଙ୍କୁ ପାଇ ମୁଁ ଧନ୍ୟ ହୋଇଛି । କାରଣ ମୋର କଥା କହିବା କାର୍ଯ୍ୟ ସଫଳ ହେଲା ବୋଲି ଭାବୁଛି । ମୁଁ କଥା କହିବା ମଧ୍ୟରେ ଆପଣମାନେ ଯାହା ପଚାରିଲେ ତାହା କହିବାକୁ ଭୁଲି ଯାଇଛି । ଏବେ ସେହି କାହାଣୀ କହୁଛି, ଆପଣମାନେ ଧୀରସ୍ଥିର ହୋଇ ଶୁଣନ୍ତୁ ।

ଦେବଗଣ ନିଜର ସ୍ୱାର୍ଥ ସାଧନ କରି ମୁନିଙ୍କ ଅସ୍ଥିରେ ନିର୍ମିତ ଅସ୍ତ୍ରଶସ୍ତ୍ର ନେଇ ଦଧୀଚିଙ୍କ ଆଶ୍ରମରୁ ଚାଲିଗଲେ । ଦଧୀଚି ମୁନିଙ୍କ ପତ୍ନୀ ସ୍ନାନସାରି, ବାଛୁରିକୁ ସ୍ନେହ କରି, ପାଣି ନେଇ, ଗୌରୀଙ୍କ ପୂଜା ସାରି ଆଶ୍ରମରେ ପହଞ୍ଚିଲେ । ସାରା ଆଶ୍ରମ ତାଙ୍କୁ ଖାଲି ଖାଲି ଲାଗିଲା ଓ ଶ୍ରୀହୀନ ମନେ ହେଲା । ସେଠାରେ ଥିବା ପଶୁପକ୍ଷୀ ସମସ୍ତେ ଉଦାସ ଥିଲାପରି ଜଣାଗଲା । ହରିଣଗୁଡ଼ିକ କାନ୍ଦୁଥିଲେ । ଗଛଲତାର ପତ୍ରଗୁଡ଼ିକ ଝାଉଁଳି ପଡ଼ିଥିଲା । ଯଜ୍ଞଶାଳାର ଅଗ୍ନି ତେଜୋହୀନ ଦେଖାଯାଉଥିଲା । ଏକ ପ୍ରହର କାଳ ମଧ୍ୟରେ ଏପରି ପରିବର୍ତ୍ତନ ଘଟିଥିବାର ଲକ୍ଷ୍ୟ କରି ଦଧୀଚିଙ୍କ ପତ୍ନୀ ଆଶ୍ଚର୍ଯ୍ୟ ହୋଇଗଲେ । ନିଜର ସ୍ୱାମୀଙ୍କୁ ଦେଖିବାକୁ ନ ପାଇ ସେ ଅଗ୍ନିଦେବତାଙ୍କ ପାଖକୁ ଯାଇ ପଚାରିଲେ— ହେ ଅଗ୍ନିଦେବ ! ତୁମେ ସମସ୍ତ ପ୍ରକାର ଶୁଭାଶୁଭର ସାକ୍ଷୀ । ତୁମକୁ ଅଜଣା କିଛି ନାହିଁ । ମୋ'ର ପତି କୁଆଡ଼େ ଗଲେ ତୁମେ କୁହ । ପତିବ୍ରତାର ପ୍ରଭାବରେ ଅଗ୍ନି ନୀରବ ରହି-ପାରିଲେ ନାହିଁ । ସେ ମୂର୍ତ୍ତିମାନ୍ ହୋଇ—କହିଲେ—ଦେବି ! ତୁମର ପତି ଅକ୍ଷୟ ପଦ ଲାଭ କରିଛନ୍ତି । ପରର କଲ୍ୟାଣ ପାଇଁ, ଦେବତାମାନଙ୍କର ହିତ ସାଧନ ନିମିତ୍ତ ହସି ହସି ମୁଖରେ ସେ ନିଜର ଜୀବନ ଉତ୍ସର୍ଗ କରିଛନ୍ତି । ସଂସାରରେ ପରୋପକାର ପାଇଁ ସର୍ବସ୍ୱ ତ୍ୟାଗ କରିବାରେ ସେ ଶ୍ରେଷ୍ଠ ବ୍ୟକ୍ତିରୂପେ ବିବେଚିତ ହେବେ । ତୁମର ପତି ଦେହତ୍ୟାଗ କରିଥିଲେ ମଧ୍ୟ ଚିର ଅମର ହୋଇ ରହିବେ ।

ଅଗ୍ନି ଦେବତାଙ୍କଠାରୁ ସବୁକଥା ଶୁଣି ସତୀଙ୍କ ହୃଦୟ ଦୁଃଖରେ ପୂର୍ଣ୍ଣ ହୋଇଗଲା । ପତି ଯାହାର ପ୍ରାଣ, ପତିଙ୍କ ପାଦସେବା ଯାହାର ଶ୍ରେଷ୍ଠ ଆନନ୍ଦ, ପତି ଯାହାର ସର୍ବସ୍ୱ, ସେହି ପତିବ୍ରତା ନାରୀ ପକ୍ଷରେ ପତି ବିୟୋଗଠାରୁ ବଳି ଆଉ ବଡ଼ ଦୁଃଖ କଣ ଅଛି ? ଦଧୀଚିଙ୍କ ପତ୍ନୀ ଗର୍ଭିଣୀ ଥିଲେ । ସେ କାନ୍ଦି କାନ୍ଦି କହିଲେ—ଦେବତାମାନଙ୍କୁ ଅଭିଶାପ ଦେବା ପାଇଁ ମୋର ସାମର୍ଥ୍ୟ ନାହିଁ । ସାମର୍ଥ୍ୟ ଥିଲେ ମଧ୍ୟ ସେମାନଙ୍କୁ ମୁଁ ଅଭିଶାପ ଦେବି ନାହିଁ । ମୋର ସ୍ୱାମୀ ଏହି କ୍ଷଣ-ଭଙ୍ଗୁର ଦେହ ପ୍ରତି କେବେହେଲେ ମୋହ ପ୍ରକାଶ

କରିନାହାନ୍ତି । ରାଜସୂୟ, ଅଶ୍ୱମେଧ ଯଜ୍ଞ କରି ଲୋକେ ଯାହା ପାଇ ନାହାନ୍ତି ମୋର ପତି ସେହି ଅକ୍ଷୟଲୋକ ଲାଭ କରି ଯଶସ୍ୱୀ ହୋଇଛନ୍ତି । ପଞ୍ଚଭୂତର ଭୌତିକ ଉପାଦାନରେ ଗଠିତ ଶରୀର ଦିନେ ନଷ୍ଟପ୍ରାୟ ବିନଷ୍ଟ ହୋଇଥାନ୍ତି । ମୋର ପତି ସେହି କ୍ଷଣ-ଭଙ୍ଗୁର ଦେହକୁ ଏକ ମହତ୍ତ୍ୱ କାର୍ଯ୍ୟରେ ଉପଯୋଗ କରିଛନ୍ତି । ଗୋ, ବ୍ରାହ୍ମଣ, ଦେବତାଙ୍କ ଉଦ୍ଦେଶ୍ୟରେ ଯେ ଜୀବନ ଉତ୍ସର୍ଗ କରେ ସେ ସଂସାରରେ ଧନ୍ୟ । ତାର ଜୀବନ ଧନ୍ୟ ଓ ତାର ଜନ୍ମ ସାର୍ଥକ ହୁଏ । ମୁଁ ଏବେ ପତିଙ୍କ ପଥ ଅନୁସରଣ କରିବି ।

ମହର୍ଷି ସୂତ କହିଲେ—ମୁନିଗଣ ! ସତୀ ହେବାର ସିଦ୍ଧାନ୍ତ ନେଇ ଦଧୀଚଙ୍କ ପତ୍ନୀ ଯଜ୍ଞକୁଣ୍ଡରେ ବିରାଜିତ ଅଗ୍ନିଙ୍କୁ ପ୍ରଣାମ କଲେ । ଗାଈ, ବାଛୁରୀ, ହରିଣ ଓ ଅନ୍ୟାନ୍ୟ ପଶୁପକ୍ଷୀଙ୍କୁ ଆଦର କଲେ । ଆଶ୍ରମର ବୃକ୍ଷଗୁଡ଼ିକୁ ଆଲିଙ୍ଗନ କଲେ । ନିଜ ସ୍ୱାମୀଙ୍କର ରୋମ, ଚର୍ମ, ଅଗ୍ନିହୋତ୍ର ପାତ୍ର, ବଲ୍‌କଲ-ବସ୍ତ୍ରକୁ ନେଇ ସତୀ ହେବାର ସମସ୍ତ ଆୟୋଜନ କଲେ । ନିଜେ କାଷ୍ଠ ସଂଗ୍ରହ କରି ଏକ ଚିତା ପ୍ରସ୍ତୁତ କଲେ ।

ବର୍ତ୍ତମାନ ତାଙ୍କ ଆଗରେ ଏକ ଧର୍ମ-ସଙ୍କଟ ଦେଖାଦେଲା । ତାଙ୍କ ଗର୍ଭରେ ମୁନିଙ୍କ ଅମୋଘ ବୀର୍ଯ୍ୟ ସ୍ଥାପିତ ହୋଇଛି । ପତିଙ୍କ ଅବସ୍ଥାପିତ ନ୍ୟାସଭୂତ ଗର୍ଭର ସୁରକ୍ଷା ଦାୟିତ୍ୱ ସେ ନେଇଛନ୍ତି । ଗର୍ଭିଣୀ ନାରୀ ସତୀ ହେବା ନିୟମ ବିରୁଦ୍ଧ କାର୍ଯ୍ୟ । କିନ୍ତୁ ଗର୍ଭାସ୍ତିନୀ ନିଜ ପତିଙ୍କ ଅବର୍ତ୍ତମାନରେ କ୍ଷଣେ ମାତ୍ର ଜୀବନ ଧାରଣ କରିବା କଷ୍ଟକର । ଗର୍ଭର କାଳ ପୂର୍ଣ୍ଣ ହୋଇ ଯାଇଥିଲେ ମଧ୍ୟ ପ୍ରସବ କାଳ ଆସି ନାହିଁ । ତେଣୁ ସେ ନିଜେ ନିଜର ପେଟକୁ ଚିରି ଦଧୀଚ ମୁନିଙ୍କ ଅନୁରୂପ ରୂପ, ରଙ୍ଗ ଓ ତେଜସ୍ୱୀ ପୁତ୍ରକୁ ବାହାର କଲେ । ତାକୁ କୋଳରେ ଧରି ବାରମ୍ବାର ତାର ମୁଖ ଚୁମ୍ବନ କଲେ । ବନର ଦେବଦେବୀ ଓ ଦଶ ଦିଗପାଳଙ୍କୁ ଶୁଣାଇ ଗର୍ଭାସ୍ତିନୀ ଗଦ୍‌ଗଦ୍ କଣ୍ଠରେ କହିଲେ—ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ନକ୍ଷତ୍ର ଓ ବନ ଦେବଦେବୀଗଣ, ମୃଗ, ପଶୁ, ପକ୍ଷୀ ବୃକ୍ଷର ଅଧିଷ୍ଠାତ୍ରୀ ଦେବଗଣ ! ସମସ୍ତେ ମୋର କଥା ଶୁଣନ୍ତୁ—ନାରୀ ପକ୍ଷରେ ସ୍ୱାମୀହୀନ ଜୀବନ କେତେ ଦୁର୍ବହ ତାହା କାହାରିକୁ ଅବିଦିତ ନାହିଁ । ପତିଙ୍କ ଦେହାନ୍ତ ପରେ କ୍ଷଣେ ମାତ୍ର ଏ ସଂସାରରେ ଜୀବିତ ରହିବା ପାଇଁ ମୋର ଇଚ୍ଛା ନାହିଁ । ମୁଁ ପତିଙ୍କ ପଥ ଅନୁସରଣ କରୁଛି । ଏ ବାଳକ ଏବେ ଅନାଥ, ମାତୃହୀନ, ଏହାର ଅନ୍ୟ କେହି ଆତ୍ମୀୟ, ସ୍ୱଜନ, ବନ୍ଧୁ, କୁଟୁମ୍ବ ନାହାନ୍ତି । ତେଣୁ ଏହି ଅନାଥ ବାଳକକୁ ତୁମ୍ଭେମାନେ ରକ୍ଷା କର । ନିରାଶ୍ରୟକୁ ରକ୍ଷା କରିବା ଶ୍ରେଷ୍ଠ ଧର୍ମ । ମୁଁ ଏହି ଅବୋଧ, ଅନାଥ ଶିଶୁକୁ ତା'ର ଭାଗ୍ୟ ଉପରେ ନ୍ୟସ୍ତ କରି ପତିଙ୍କୁ ଅନୁଗମନ କରୁଛି ।

ଗର୍ଭାସ୍ତିନୀଙ୍କ ଏପରି କରୁଣ ନିବେଦନରେ ଆଶ୍ରମର ପଶୁପକ୍ଷୀଗଣ କାନ୍ଦିବାକୁ ଲାଗିଲେ । ଯେଉଁ ପଶୁପକ୍ଷୀଙ୍କୁ ମୁନି ଓ ମୁନିପତ୍ନୀ ନିଜ ପୁଅ ପରି ଲାଳନ ପାଳନ କରିଥିଲେ, ନୀବାର ଶସ୍ୟ ଖୁଆଇ ଯେଉଁମାନଙ୍କ ପ୍ରାଣ ରକ୍ଷା କରିଥିଲେ, ଯେଉଁ ବୃକ୍ଷଗୁଡ଼ିକୁ ଆଦର ଯତ୍ନରେ ବଢ଼ାଇଥିଲେ, ସେମାନେ ଆଜି ପିତାମାତାଙ୍କ ସଦୃଶ ଦଧୀଚ ଓ ଗର୍ଭାସ୍ତିନୀଙ୍କୁ ହରାଇ

କାନ୍ଦିବାକୁ ଲାଗିଲେ । ମା'ର ବିଚ୍ଛେଦରେ ସମସ୍ତେ ସଙ୍କେଇ ସଙ୍କେଇ କାନ୍ଦୁଥିବାର ବାତାବରଣ ଖେଳି ଯାଇଥିଲା । ଗର୍ଭାପ୍ତିନୀ ସେହି ସଦ୍ୟ ପ୍ରସୂତ ଅବୋଧ ଶିଶୁକୁ ଏକ ଅଶ୍ୱତ୍ଥ ବୃକ୍ଷର କୋଟରରେ ରଖିଦେଇ ପତିଙ୍କ ଦେହାବଶେଷ ସହିତ ଅଗ୍ନିରେ ପ୍ରବେଶ କଲେ । ଗର୍ଭାପ୍ତିନୀ ସତୀ ହୋଇଗଲେ । ଆଶ୍ରମସ୍ଥ ବୃକ୍ଷର ଅଧିଷ୍ଠାତ୍ରୀ ଦେବଦେବୀଗଣଙ୍କ ଅନୁରୋଧରେ ଚନ୍ଦ୍ର ଦେବତା ଅମୃତ କିରଣ ବର୍ଷା କରି ଶିଶୁର ଜୀବନ ରକ୍ଷା କଲେ । ଶିଶୁଟି ଧୀରେ ଧୀରେ ବଡ଼ ହେବାକୁ ଲାଗିଲା । ବାଳକ ଅବସ୍ଥାରେ ସେ ସେହି ଅଶ୍ୱତ୍ଥ ବୃକ୍ଷ ମୂଳରେ ରହି ଅଶ୍ୱତ୍ଥ ଫଳ ଖାଇ ଜୀବନ ଧାରଣ କଲା । ପରେ ସେହି ବାଳକ ମହର୍ଷି ପିପ୍ପଳାଦ ନାମରେ ପରିଚିତ ହେଲେ ।

ବଡ଼ ହେବା ପରେ ପିପ୍ପଳାଦ ନିଜ ମାତାପିତାଙ୍କ ମୃତ୍ୟୁ କଥା ଶୁଣି ଦେବତାମାନଙ୍କ ଉପରେ ଖୁବ୍ ରାଗିଗଲେ । ସେ ଭାବିଲେ—ଏହି ଦେବତାମାନେ ନିଜର ସ୍ୱାର୍ଥସିଦ୍ଧି ପାଇଁ ମୋର ପିତାଙ୍କ ଜୀବନକୁ ନଷ୍ଟ କରିଦେଲେ । ଜନ୍ମରୁ ମୋତେ ମାତୃପିତୃହୀନ କଲେ । ମୁଁ ନିଶ୍ଚୟ ଏହାର ପ୍ରତିଶୋଧ ନେବି । ଏ ପ୍ରକାର କ୍ରୂର କାର୍ଯ୍ୟର ଫଳ ଦେବଗଣଙ୍କୁ ଭୋଗ କରିବାକୁ ପଡ଼ିବ । ମୁଁ ସେମାନଙ୍କୁ ଯମଲୋକକୁ ପଠାଇ ମୋ' ପିତାମାତାଙ୍କ ପ୍ରତି ଦେଖାଇଥିବା ନିଷ୍ଠୁର ଆଚରଣର ପ୍ରତିକାର କରିବି । ଏହି ସିଦ୍ଧାନ୍ତରେ ଉପନୀତ ହୋଇ ପିପ୍ପଳାଦ ଭଗବାନ୍ ଆଶୁତୋଷଙ୍କ ଆରାଧନାରେ ମନୋନିବେଶ କଲେ । ଭୋଳାନାଥ ସ୍ୱଭାବତଃ ଆଶୁତୋଷ ଓ ମହାଦାନୀ । ଅନାଥ ବାଳକ ପିପ୍ପଳାଦଙ୍କ କରୁଣ ନିବେଦନରେ ଶୀଘ୍ର ଦ୍ରବୀଭୂତ ହୋଇ ଦେବଦେବ ମହାଦେବ ସ୍ୱୟଂ ଆବିର୍ଭୂତ ହେଲେ ଏବଂ ବର ମାଗିବା ପାଇଁ କହିଲେ ।

ପିପ୍ପଳାଦ କହିଲେ—ପ୍ରଭୋ ! ଯେଉଁ ଦେବଗଣ ଅନ୍ୟାୟରେ ମୋର ବାପାଙ୍କୁ ମାରି ଦେଇଛନ୍ତି ସେମାନଙ୍କୁ ମାରିଦେବା ପାଇଁ ମୋତେ ଶକ୍ତି ଦିଅନ୍ତୁ !

ଭୋଳାନାଥ କହିଲେ— ତଥାସ୍ତୁ । ତୁମର ଅଭିଳାଷ ପୂରଣ ହେଉ । ଏହା କହି ଶିବ ଏକ ଭୟଙ୍କର କୃତ୍ୟାକୁ ସୃଷ୍ଟି କଲେ । ସେହି କୃତ୍ୟା ପିପ୍ପଳାଦ ମୁନିଙ୍କୁ ପଚାରିଲା— ଆଦେଶ ଦିଅନ୍ତୁ, ମୁଁ ଆପଣଙ୍କର କି କାମ କରିବି ?

ଏହା ଶୁଣି ପିପ୍ପଳାଦ କହିଲେ—ଯେଉଁ ଦେବତାମାନେ ମିଶି ନିଜର ସ୍ୱାର୍ଥସିଦ୍ଧି ପାଇଁ ମୋର ପିତାଙ୍କୁ ହତ୍ୟା କରିଛନ୍ତି ତୁ ସେମାନଙ୍କୁ ହତ୍ୟା କର । ଏହା ଶୁଣିବା ମାତ୍ରେ କୃତ୍ୟା ଦେବଗଣଙ୍କ ଉଦ୍ଦେଶ୍ୟରେ ଦୌଡ଼ିଲା । ଦେବତାମାନେ ବ୍ୟସ୍ତ ହୋଇ ପଡ଼ିଲେ । ଚାରିଆଡ଼େ ହାହାକାର ଖେଳିଗଲା । ସେମାନେ ଭୟରେ ଦୌଡ଼ି ଦୌଡ଼ି ଭବାନୀପତି ଶଙ୍କରଙ୍କ ପାଖକୁ ଆସିଲେ ଏବଂ ଅନୁନୟ ବିନୟ ହୋଇ କହିଲେ—ପ୍ରଭୋ ! ଆପଣ ପିପ୍ପଳାଦଙ୍କୁ ବୁଝାଇ ଦିଅନ୍ତୁ, ନୋହିଲେ ଆମ ସମସ୍ତଙ୍କର ବିନାଶ ଘଟିବ ।

ମହାଦେବ ମଧ୍ୟ ଚିନ୍ତା କଲେ, କଥାଟା ଅଧିକ ବଢ଼ାଇବା ଉଚିତ ହେବ ନାହିଁ । ସେ ପିପ୍ପଳାଦଙ୍କୁ ପରୋପକାର ବିଷୟରେ ବୁଝାଇଦେଲେ, ଯେଉଁ କାର୍ଯ୍ୟ ପାଇଁ ଦଧୀଚି

ହସି ହସି ଅଭ୍ୟୋଧୂର୍ଗ କରୁଛନ୍ତି । ଶିବଙ୍କ ଆଶ୍ୱାସନାରେ ମୁନି ପିପ୍‌ପଲାଦ ଶାନ୍ତ ହେଲେ । ଦେବଗଣ ଆନନ୍ଦିତ ହେଲେ । ଦିବ୍ୟ ବିମାନରେ ବସି ପିପ୍‌ପଲାଦଙ୍କ ମାତା-ପିତା ନିଜର ଯଶସ୍ୱୀ ପୁତ୍ରକୁ ଆଶୀର୍ବାଦ ଦେବା ପାଇଁ ଆସିଲେ । ପିପ୍‌ପଲାଦଙ୍କ କୃପାରୁ ସେଠାରେ ପିପ୍‌ପଲେଶ୍ୱର ଶିବଲିଙ୍ଗ ପ୍ରତିଷ୍ଠା ହେଲା । ସେହି ଦିନରୁ ଗଙ୍ଗା ତୀରବର୍ତ୍ତୀ ପିପ୍‌ପଲେଶ୍ୱର ସ୍ଥାନଟି ପବିତ୍ର ତୀର୍ଥର ମର୍ଯ୍ୟାଦା ଲାଭ କଲା ।

ମହର୍ଷି ସୂତ କହିଲେ — ମୁନିଗଣ ! ସଂକ୍ଷେପରେ ଦଧୀଚ ମୁନିଙ୍କ ପତ୍ନୀ ଓ ତାଙ୍କ ପୁତ୍ର ପିପ୍‌ପଲାଦଙ୍କ ଇତିବୃତ୍ତି କହିଲି । ବର୍ତ୍ତମାନ, ବୃତ୍ରକୁ ହତ୍ୟା କରିବାରୁ ଇନ୍ଦ୍ର ପୁନର୍ବାର କପରି ବ୍ରହ୍ମହତ୍ୟା ଦୋଷରେ ଦୋଷୀ ହେଲେ ସେକଥା କହୁଛି, ଆପଣମାନେ ଶୁଣନ୍ତୁ ।

## ଛପ୍‌ପୟ

ଲୈ ଦଧୀଚ କ ଅସ୍ଥି ଗୟେ ସୁର ଅତି ହରଷାଇ ।
ଇତ ମୁନି ପତ୍ନୀ ହ୍ନାଇ-ଧୋଇ ଆଶ୍ରମ ମହଁ ଆଇ ॥
ସବ ସୁନି କାଟ୍ୟୋ ପେଟ, ପୁତ୍ର ତଜି ସତୀ ଭଈ ପୁନି ।
ପୀପଲ ପାଲେ ପୁତ୍ର ଭୟେ ତେ ପିପ୍‌ପଲାଦ-ମୁନି ॥
ପିପ୍‌ପଲାଦ-ମୁନି ସୁରନି ପୈ, କୋପ ଶମ୍ଭୁ ବର ତେଂ କୟୋ ।
ସୁରନି ସରନ ଶିବ କୀ ଲଈ, ରୁଦ୍ର ଶାନ୍ତ ମୁନି କରି ଦୟୋ ॥



# ଇନ୍ଦ୍ରଙ୍କ ବ୍ରହ୍ମହତ୍ୟା ଦୋଷ

ତାଂ ଦଦର୍ଶାନୁଧାବନ୍ତୀଂ ଚଣ୍ଡାଲୀମିବ ରୂପିଣୀମ୍ ।
ଜରୟା ବେପମାନାଙ୍ଗୀଂ ଯକ୍ଷ୍ମଗ୍ରସ୍ତାମସୃକ୍‌ପଟାମ୍ ॥
(ଶ୍ରୀମଦ୍ଭାଗବତ—୬ସ୍କନ୍ଧ-୧୩ଅ-୧୨ଶ୍ଳୋ)

## ଛପ୍‌ପୟ

ତ୍ୱଷ୍ଟା ଦୁହର-ତନୟ ବୃତ୍ର ଯେବେଁ ମାର୍‌ୟୋ ସୁରପତି ।
ବୃତ୍ରାସୁର କେ ମରତ ଭୟେ ମୁନି ଦେବ ସୁଖୀ ଅତି ॥
ମାରୟୋ ବ୍ରାହ୍ମଣ-ପୁତ୍ର ବ୍ରହ୍ମହତ୍ୟା ପୁନି ଆଈ ।
ଚଣ୍ଡାଲନି ଅତି ମଲିନ ଇନ୍ଦ୍ର କେ ଉପର ଧାଈ ॥
ତବେ ଇନ୍ଦ୍ର ତହିଁ ତେଂ ଭଗେ, ଅତି ବ୍ୟାକୁଲ ମନ ମହିଁ ଭୟେ ।
ମିଲୀ ସରନ ଜବ କହୁଁ ନହିଁ, ମାନସ-ସର ମହିଁ ଘୁସି ଗୟେ ॥

ପାପ ଓ ପୁଣ୍ୟ ପ୍ରକାଶ କରିଦେଲେ କିଛିକାଳ ପରେ ତାହା ଭୁଲି ହୋଇଯାଏ । ଆମେ କୌଣସି ଯଜ୍ଞ, ଦାନ, ବ୍ରତ ବା ଶୁଭକର୍ମ କରି ଯଦି ନିଜ ମୁହଁରେ ଘୂରିଆଡ଼େ ସେକଥା ପ୍ରକାଶ କଲୁ, ନିଜର ପ୍ରଶଂସା ଗାଇବୁଲିଲୁ ବା ଆମେ ଏହା କରିଛୁ କି ତାହା କରିଛୁ ବୋଲି କହି ବୁଲିଲୁ, ତେବେ ସେସବୁ ଭଲକାମର କୌଣସି ଫଳ ପରଲୋକରେ ମିଳେ ନାହିଁ । ଇହ ଲୋକରେ ପ୍ରଚରିତ ପ୍ରଶଂସାର ଫଳ ମଧ୍ୟ ବେଶିକାଳ ରହେ ନାହିଁ । ମନ୍ଦ କାମର ମଧ୍ୟ ସେହି ଫଳ ଘଟେ । କୌଣସି ଅପରାଧ ବା ପାପକାମ କରିଥିଲେ ତାହା ଶୀଘ୍ର ପ୍ରକାଶ କରିଦେବା ଉଚିତ । ସେଥିପାଇଁ ଲଜ୍ଜା ଅନୁଭବ ଓ ଅନୁତାପ କରିବା ଉଚିତ । ପଶ୍ଚାତ୍ତାପ ହେତୁ କାହାରିକୁ ମୁହଁ ଦେଖାଇବାରେ ଲଜ୍ଜା ଅନୁଭବ କରିବା ବିଧେୟ । ଅକାର୍ଯ୍ୟ କରିଥିବା ହେତୁ ପଶ୍ଚାତ୍ତାପ ସହିତ ମନେ ମନେ ଭଗବାନ୍‌ଙ୍କ ପାଖରେ କ୍ଷମା ପ୍ରାର୍ଥନା କରିବା ଆବଶ୍ୟକ । ପାପୀକୁ ଯେଉଁମାନେ ନିନ୍ଦା କରନ୍ତି ସେମାନେ ତା'ର ପାପକାମକୁ ବଜେଇ ଚୁନେଇ ବଢ଼େଇ କୁଢ଼େଇ କହନ୍ତି । ସେହି ନିନ୍ଦାକାରୀଙ୍କ ପ୍ରଚାରରେ ପାପୀର ପାପ ଦୂର ହୁଏ । ତେଣୁ ପାପ କରିଥିଲେ ତାହା ଶୀଘ୍ର ପ୍ରକାଶ କରିବା ଉଚିତ ।

କେବେ ଭୁଲ୍‌ରେ ମଧ୍ଯ କାହାରି ନିନ୍ଦା କରିବା ଉଚିତ ନୁହେଁ । ଅକାରଣ କାହାର ମନରେ କଷ୍ଟ ଦେଲାଭଳି କଥା କହିବା ବା ଅସୌଜନ୍ୟ ଆଚରଣ ପ୍ରଦର୍ଶନ କରିବା ଉଚିତ ନୁହେଁ ।

ମହର୍ଷି ଶୁକ କହିଲେ—ରାଜନ୍ ! ବୃତ୍ରାସୁରର ମୃତ୍ୟୁ ପରେ ଦେବତା, ଗନ୍ଧର୍ବ, ଲୋକପାଳ, ମାନବ, ପଶୁପକ୍ଷୀ ସମସ୍ତେ ଆନନ୍ଦିତ ହେଲେ, କେବଳ ଦେବରାଜ ଇନ୍ଦ୍ରଙ୍କ ବ୍ୟତୀତ । ଇନ୍ଦ୍ର ଓ ବୃତ୍ରାସୁରଙ୍କ ଯୁଦ୍ଧ ଦେଖିବା ପାଇଁ ମୁନିଋଷି, ଦେବତା, ପିତୃଗଣ, ସାଧ୍ଯ, ଗୁହ୍ୟକ, ଦୈତ୍ୟ ଦାନବ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ବିରାଜମାନ କରିଥିଲେ । ବୃତ୍ରାସୁରର ନିଧନ ପରେ ସମସ୍ତେ ନିଜ ନିଜ ଲୋକକୁ ଫେରିଯାଇଥିଲେ । କିନ୍ତୁ ଇନ୍ଦ୍ରଙ୍କ ମନରେ ଶାନ୍ତି ନଥିଲା । ସେ ଖୁବ୍ ଦୁଃଖିତ ଓ ଚିନ୍ତିତ ହୋଇପଡ଼ିଲେ ।

ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ ରାଜା ପରୀକ୍ଷିତ ପଚାରିଲେ—ପ୍ରଭୋ ! ଆପଣ ଏପରି କଣ କହୁଛନ୍ତି ? ବୃତ୍ରାସୁରର ମୃତ୍ୟୁରେ ଇନ୍ଦ୍ର ସବୁଠୁ ଅଧିକ ଖୁସି ହେବା କଥା । ସେ ଥିଲା ଇନ୍ଦ୍ରଙ୍କର ପ୍ରଧାନ ଶତ୍ରୁ । ତ୍ୱଷ୍ଟା ଋଷିଗଣ ଇନ୍ଦ୍ରଙ୍କୁ ନିଧନ କରିବା ପାଇଁ ବୃତ୍ରାସୁରକୁ ସୃଷ୍ଟି କରିଥିଲେ । ଦୈବବଶତଃ ଅବସ୍ଥା ବଦଳିଗଲା । ଇନ୍ଦ୍ରଙ୍କୁ ହତ୍ୟା କରିବା ବ୍ୟକ୍ତି ଇନ୍ଦ୍ରଙ୍କ ଦ୍ୱାରା ନିଧନ ହେବା ନିମିତ୍ତ ଏକ ଅସୁର ରୂପେ ଜନ୍ମ ହେଲା । ତଥାପି ଯୁଦ୍ଧରେ ସେ ଇନ୍ଦ୍ରଙ୍କୁ ଅସ୍ତବ୍ୟସ୍ତ କରିପକାଇଲା ଏବଂ ତାଙ୍କୁ ସିଂହାସନଚ୍ୟୁତ କରି ନିରାଶ୍ରୟ କରିଦେଲା । ଏପରି ଏକ ପ୍ରବଳ ପରାକ୍ରମଶାଳୀ ଶତ୍ରୁକୁ ସଂହାର କରି ଇନ୍ଦ୍ର ଦୁଃଖିତ ହେବାର କାରଣ କଣ ? ବୃତ୍ରାସୁରକୁ ବଧ କରି ସେ କାହିଁକି ଆନନ୍ଦିତ ହୋଇପାରିଲେ ନାହିଁ ।

ଶୁକଦେବ କହିଲେ—ରାଜନ୍ ! ଇନ୍ଦ୍ର ଭାବିଲେ, ଯାହାହେଲେ ବି ବୃତ୍ର ଥିଲା ବ୍ରାହ୍ମଣ ସନ୍ତାନ । ଅସୁର ହେଲେ ବି ସେ ଥିଲା ବ୍ରହ୍ମଜ୍ଞାନୀ । ବ୍ରହ୍ମଜ୍ଞାନୀ ବ୍ରାହ୍ମଣକୁ ହତ୍ୟା କରିବା ପାପ । ଏଇ ଚିନ୍ତାରେ ଇନ୍ଦ୍ରଙ୍କ ମନ ଅସ୍ଥିର ହେଉଥିଲା ।

ମହାରାଜା ପରୀକ୍ଷିତ ପଚାରିଲେ—ଯଦି ଦେବରାଜ ଇନ୍ଦ୍ର ଜାଣିଥିଲେ ବୃତ୍ର ଜଣେ ବ୍ରହ୍ମଜ୍ଞାନି ବ୍ରାହ୍ମଣ, ତେବେ ତାକୁ ହତ୍ୟା କଲେ କାହିଁକି ? ତାକୁ କ୍ଷମା କରିଦେଇ ନିଜେ ସନ୍ନ୍ୟାସୀ ହୋଇ ବୁଲିଥାନ୍ତେ । ଅନ୍ତତଃ ବ୍ରହ୍ମହତ୍ୟା ପାପରୁ ସେ ମୁକ୍ତ ରହିଥାନ୍ତେ । ଇନ୍ଦ୍ର ଏପରି ଦୁଃସାହସ କଲେ କାହିଁକି ?

ଶୁକଦେବ କହିଲେ—ମହାରାଜ ! କେତେକ କାର୍ଯ୍ୟ ଅଛି ଯାହାକୁ ଜଣେ ଆଗ୍ରହ ଓ ଉତ୍ସାହର ସହିତ କରେ । ଧର୍ମର ସୁରକ୍ଷା ପାଇଁ ଅନିଚ୍ଛା ସତ୍ତ୍ୱେ କେତେକ କାର୍ଯ୍ୟ ଅନ୍ୟମାନଙ୍କ ଅନୁରୋଧରେ ବା କର୍ତ୍ତବ୍ୟ ସାଧନ ଉଦ୍ଦେଶ୍ୟରେ କରାଯାଇଥାଏ । ମୁନି ଋଷିମାନଙ୍କ ଅନୁରୋଧରେ ହିଁ ଇନ୍ଦ୍ର ବୃତ୍ରାସୁରକୁ ବଧ କରିଥିଲେ ।

'ମୁନିଋଷିମାନେ ଏପରି ଅନୁଚିତ ଅନୁରୋଧ ଇନ୍ଦ୍ରଙ୍କୁ କାହିଁକି କଲେ,' ବୋଲି ରାଜା ପଚାରିବାରୁ ମହର୍ଷି ଶୁକଦେବ କହିଲେ—ମହାରାଜ ! ଉଚିତ ଅନୁଚିତ ନିର୍ଦ୍ଧାରଣ କରିବା

ବଡ଼ କଠିନ କାର୍ଯ୍ୟ । ଜଣକର ମୃତ୍ୟୁରେ ଯଦି ହଜାର ହଜାର ଲୋକଙ୍କ ମଙ୍ଗଳ ହେବ, ତନ୍ଦ୍ବଲୋକ ସୁଖୀ ହେବେ, ତେବେ ତାଙ୍କୁ ହତ୍ୟା କରିବା ଅନୁଚିତକାର୍ଯ୍ୟ ହେଲେ ମଧ୍ୟ ଲୋକହିତ ପାଇଁ ତାହା ଉଚିତ କାର୍ଯ୍ୟ ବୋଲି ବିବେଚିତ ହୁଏ । ଧର୍ମର ଗତି ଅତି ସୂକ୍ଷ୍ମ । ବାହାରୁ ଦେଖିଲେ କେତେକ ଧର୍ମକାର୍ଯ୍ୟ ଅଧର୍ମରୂପେ ଏବଂ ଅଧର୍ମ କାର୍ଯ୍ୟ ଧର୍ମକାର୍ଯ୍ୟ ରୂପେ ପ୍ରତୀତ ହୁଏ । କଥା ହେଉଛି, ବୃତ୍ରାସୁର ଯେତେବେଳେ କାୟା ବିସ୍ତାର କରି ତିନି ଲୋକର ଅଧିବାସୀଙ୍କୁ ଭୟଭୀତ କଲା, ସେତେବେଳେ ମୁନିଋଷିଗଣ ଇନ୍ଦ୍ରଙ୍କ ପାଖକୁ ଯାଇ ସ୍ତୁତି କରି କହିଲେ—ହେ ତ୍ରିଲୋକେଶ ! ବୃତ୍ରାସୁର ବର୍ତ୍ତମାନ ଦେବ, ଋଷି, ମାନବଙ୍କୁ ବହୁ ଦୁଃଖ ଯନ୍ତ୍ରଣା ଦେଉଛି । ସେ ଅତି ପରାକ୍ରମଶାଳୀ, ତାଙ୍କୁ ଆପଣଙ୍କ ବ୍ୟତୀତ ଅନ୍ୟ କେହି ମାରିପାରିବେ ନାହିଁ । ଆପଣ କାଳବିଳମ୍ବ ନକରି ବୃତ୍ରାସୁର ବଧ ପାଇଁ ଉଦ୍ୟମଶୀଳ ହୁଅନ୍ତୁ ।

ଦେବରାଜ ଇନ୍ଦ୍ର ବିନୀତଭାବେ ନିବେଦନ କଲେ—ଋଷିଗଣ ! ମୋ'ଦ୍ୱାରା ଏପରି ଅନୁଚିତ କାର୍ଯ୍ୟ ସମ୍ଭବ ନୁହେଁ । ଭଗବାନ୍ ତ୍ୱଷ୍ଟାଙ୍କ ଅଗ୍ନିହୋତ୍ର ଯଜ୍ଞ, ଅଗ୍ନିରୁ ବୃତ୍ର ଜନ୍ମ ଗ୍ରହଣ କରିଛି । ସେ ଅଯୋନିଜ ପୁତ୍ର, ମୁଁ ଧର୍ମର ରକ୍ଷକ । ମୁଁ ଜାଣି ଜାଣି ବ୍ରାହ୍ମଣଙ୍କର ଅଯୋନିଜ ପୁତ୍ର ବୃତ୍ରକୁ କିପରି ହତ୍ୟା କରିବି ?

ଋଷିଗଣ ହସି ହସି କହିଲେ—ଦେବରାଜ ! ବ୍ରାହ୍ମଣ ଥିଲା ବିଶ୍ୱରୂପ, ତା'ର ବଡ଼ଭାଇ ଆପଣଙ୍କ ଗୁରୁ, ପୁରୋହିତ ଓ ପୂଜନୀୟ ଥିଲେ । କେବଳ ଆପଣଙ୍କର ନୁହେଁ ସମଗ୍ର ଦେବପରିବାରର ଗୁରୁଙ୍କ ଭାଇକୁ ଆପଣ ହତ୍ୟା କଲେ କିପରି ?

ଦେବରାଜ ଉତ୍ତର ଦେଲେ—ମୁନିଗଣ ! ତାକୁ ମାରିବା ମଧ୍ୟ ଉଚିତ ହୋଇନାହିଁ । କିନ୍ତୁ ଦେବତାମାନଙ୍କ କଲ୍ୟାଣ ପାଇଁ ତାକୁ ହତ୍ୟା କରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ନିରୁପାୟ ହୋଇ ମୁଁ ତାକୁ ମାରିବା ପାଇଁ ବାଧ୍ୟ ହେଲି । ତାକୁ ସିନା ହତ୍ୟା କଲି; କିନ୍ତୁ ସେଥିପାଇଁ ମୋତେ କିପ୍ରକାର ଦୁଃଖ, ଯନ୍ତ୍ରଣା, ଅନୁଶୋଚନା ଭୋଗ କରିବାକୁ ପଡ଼ିଛି, ତାହା ମୁଁ ଜାଣେ । ଯଦି ବୃକ୍ଷ, ପୃଥିବୀ, ଜଳ ଓ ନାରୀଗଣ ମୋର ହତ୍ୟା ଅପରାଧକୁ ବାଣ୍ଟି ନେଇ ନ ଥାନ୍ତେ ତେବେ ଏପର୍ଯ୍ୟନ୍ତ ମୁଁ ସେହି ହତ୍ୟାକାରୀ ହୋଇ ରହିଥାନ୍ତି । ସେତେବେଳେ ମୁଁ ତିନିଲୋକର ସମସ୍ତଙ୍କୁ ମୋର ପାପକୁ ଭାଗ କରି ନେବାପାଇଁ ବିନୀତ ଭାବେ କେତେ ଅନୁରୋଧ କରିଛି । କିନ୍ତୁ ଏହି ଚାରିଜଣଙ୍କ ବ୍ୟତୀତ ଅନ୍ୟ ସମସ୍ତେ ମୋତେ ନିରାଶ କରିଥିଲେ । ଯାହାହେଉ, ସେତେବେଳେ ମୋର ହତ୍ୟା ଦୋଷ ବାଣ୍ଟି ହୋଇ ଯାଇଥିଲା । କିନ୍ତୁ ଏବେ ଆଉଥରେ ବ୍ରହ୍ମହତ୍ୟା କଲେ ସେ ଦୋଷର ଭାଗ ନେବ କିଏ ? ମୁଁ କିପରି ବ୍ରହ୍ମହତ୍ୟା ଦୋଷରୁ ମୁକ୍ତ ହେବି ?

ଦେବରାଜଙ୍କ କଥା ଶୁଣି ଋଷିଗଣ କହିଲେ—ହେ ଅମରାଧିପ ! ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ଆମେ ଆପଣଙ୍କଦ୍ୱାରା ଅଶ୍ୱମେଧ ଯଜ୍ଞ କରାଇବୁ । ଅଶ୍ୱମେଧ ଯଜ୍ଞ ଦ୍ୱାରା ରାଜା ସମସ୍ତ ପ୍ରକାର ହତ୍ୟା ଅପରାଧରୁ ମୁକ୍ତ ହୁଅନ୍ତି । ସମସ୍ତ ପାପ ଦୂର

ହୋଇଯାଏ । ଅଶ୍ୱମେଧ ଯଜ୍ଞରେ ଯଜ୍ଞପତି ସର୍ବାନ୍ତର୍ଯ୍ୟାମୀ ପ୍ରଭୁ ଶ୍ରୀହରିଙ୍କୁ ଆରାଧନା କରାଯାଏ । ସେହି ଶ୍ରୀହରିଙ୍କ ନାମ ସଂକୀର୍ତ୍ତନ କରି ମାନବ ପାପମୁକ୍ତ ହୁଏ । ଅଜ୍ଞାନତାବଶତଃ ଯଦି ଗୁରୁହତ୍ୟା ପାପ ଘଟିଥାଏ, ତେବେ ବ୍ରାହ୍ମଣଙ୍କଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତେ ସେହି ନାମ କୀର୍ତ୍ତନ କରି ତତ୍କାଳ ଶୁଦ୍ଧ ହୋଇଥାନ୍ତି । ସେହି ପ୍ରଭୁଙ୍କ ଆରାଧନା କରାଇ ଆମେ ଆପଣଙ୍କୁ ବ୍ରହ୍ମହତ୍ୟା ପାପରୁ ମୁକ୍ତ କରିବୁ । ଏବେ ଆପଣଙ୍କ ବ୍ରହ୍ମହତ୍ୟା ପାପକୁ ଭୋଗ କରିବାର ପ୍ରଶ୍ନ ଉଠୁନାହିଁ ।

ଏହା ଶୁଣି ଦେବରାଜ ପଚାରିଲେ—ମୁନିଗଣ ! ଅଜ୍ଞାନକୃତ ପାପ ପାଇଁ ପ୍ରାୟଶ୍ଚିତ୍ତ ଅଛି । କିନ୍ତୁ ଜାଣିଶୁଣି ସଂକଳ୍ପ କରି ଯେ ଯେଉଁପ୍ରକାର ପାପକାର୍ଯ୍ୟ କରେ ସେ ମହାପାପୀ । ତା'ର ପ୍ରାୟଶ୍ଚିତ୍ତ ନାହିଁ । ତଥାପି ଲୋକ ନିନ୍ଦିତ ସେହି ମହାପାପ କରିବାପାଇଁ ଆପଣମାନେ ମୋତେ ଅନୁରୋଧ କରୁଛନ୍ତି କିପରି ?

ଦେବରାଜ ଇନ୍ଦ୍ରଙ୍କ କଥା ଶୁଣି ଋଷିଗଣ କହିଲେ—ଦେବେନ୍ଦ୍ର ! ଆମେ ଆମର ଶକ୍ତି ଉପରେ ନିର୍ଭର କରି ଆପଣଙ୍କୁ ଏକଥା କହୁଛୁ । ଭଗବାନ୍‌ଙ୍କ ନାମକୀର୍ତ୍ତନ ପ୍ରଭାବରେ ଆମେ ଆପଣଙ୍କୁ ପାପମୁକ୍ତ କରିପାରିବୁ । ବୃତ୍ର ଏକ ଅସୁର, ଲୋକମାନେ ତା'ର ଅତ୍ୟାଚାରରେ ଭୀତତ୍ରସ୍ତ ହୋଇ ରହିଛନ୍ତି । ତାକୁ ହତ୍ୟା କରିବାଦ୍ୱାରା ଯେଉଁ ପାପ ହେବ ତାହା ଅତି ନଗଣ୍ୟ ।

ଋଷିମାନେ ଯେତେବେଳେ ପୃଷ୍ଠରେ ହାତ ଦେଇ ଦେବରାଜ ଇନ୍ଦ୍ରଙ୍କୁ ସମସ୍ତ ପ୍ରକାର ଆଶ୍ୱାସନାରେ ସନ୍ତୁଷ୍ଟ କଲେ ସେତେବେଳେ ସେ ବୃତ୍ରାସୁରକୁ ବଧ କରିଥିଲେ । ବ୍ରାହ୍ମଣ ବଧ କରିଥିବାରୁ ବ୍ରହ୍ମହତ୍ୟା ଦୋଷ ତାଙ୍କୁ ଘୋଟିଗଲା । ଚତୁର୍ଦ୍ଦିଗରୁ ବ୍ରହ୍ମହତ୍ୟାର ଭୟ ନିଜ ଆଡ଼କୁ ମାଡ଼ି ଆସୁଥିବାର ଦେଖି ଇନ୍ଦ୍ର ଦୁଃଖରେ ଭାଙ୍ଗିପଡ଼ିଲେ । ଯେ ତ୍ରିଲୋକର ପ୍ରଭୁ, ସେ ଆଜି ବ୍ରହ୍ମହତ୍ୟାର ଉତ୍ପୀଡ଼ନରେ ଉତ୍ପୀଡ଼ିତ ।

ରାଜନ୍ ! ଜଣେ ବଡ଼ ନ୍ୟାୟାଧୀଶ, ଯାହାର ସମାଜରେ ପ୍ରତିଷ୍ଠା ଅଛି, ସମ୍ମାନ ଅଛି, ଯାହାକୁ ସମସ୍ତେ ଭୟ ଓ ଭକ୍ତି କରନ୍ତି, ସେ ଯଦି କୌଣସି କାରଣରୁ ରାଜାଙ୍କ ଆଦେଶରେ ବନ୍ଦୀ ହୁଅନ୍ତି, ତାଙ୍କ ହାତରେ ହାତକଡ଼ି ପଡ଼େ ତେବେ ସେ ଯେପରି ଅତ୍ୟନ୍ତ ଲଜ୍ଜିତ ହୁଅନ୍ତି—ସେହିପରି ଇନ୍ଦ୍ର ବଡ଼ ସନ୍ତପ୍ତ ହେଲେ । ଆତ୍ମଗ୍ଲାନି ହେତୁ ସେ ଅସ୍ଥିର ହୋଇ ପଡ଼ୁଥିଲେ । ଯେତେବଡ଼ ସହିଷ୍ଣୁ, ଧୈର୍ଯ୍ୟଶୀଳ ପୁରୁଷ ହେଲେ ମଧ୍ୟ ଅପକୀର୍ତ୍ତି ପ୍ରଚାରିତ ହୋଇଗଲେ ସେ ବିଚଳିତ ହୋଇଯାଆନ୍ତି ।

ଭୟଙ୍କର ରୂପ ଧରି ବ୍ରହ୍ମହତ୍ୟା ଇନ୍ଦ୍ରଙ୍କୁ ଗୋଡ଼ାଇଲା । ସେ ଠିକ୍ ଏକ ଚଣ୍ଡାଳ ପରି ଦେଖାଯାଉଥିଲା । କଜ୍ଜଳ କଳା ଦେହ, ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ରୁକ୍ଷ ଓ କଠୋର, ମୋଟା ଓ ଖୁବ୍ ବଡ଼ ଓଠ, କଳା କଳା ଦାନ୍ତକୁ ବାହାର କରିଥିଲା । ବୃଦ୍ଧାବସ୍ଥା ହେତୁ ଦେହ ତା'ର ବାଙ୍କି ଯାଇଥିଲା । ରାଜଯକ୍ଷ୍ମା ରୋଗଗ୍ରସ୍ତା ନାରୀ ପରି ସେ ଦୁର୍ବଳ ଓ କ୍ଷୀଣ ରୂପ ଧାରଣ କରିଥିଲା । ଦେହରୁ ତା'ର ପଚା ମାଛଗନ୍ଧ ବାହାରୁଥିଲା । ବିକୃତ ବଦନରୁ

ସଡ଼ିଯାଇଥିବା ଶବର ଦୁର୍ଗନ୍ଧ ଭୁସି ଆସୁଥିଲା । ଜୀର୍ଣ୍ଣଶୀର୍ଣ୍ଣ ହୋଇଯାଇଥିଲା ତା'ର ପିନ୍ଧିଥିବା ଲୁଗାଖଣ୍ଡିକ । ରୁକ୍ଷ ଓ ବିକ୍ଷିପ୍ତ କେଶରାଶି ହେତୁ ଅତି ଭୟଙ୍କର ଦିଶୁଥିଲା । ସାରା ଦେହରେ ମାଛି ଭଣ ଭଣ ହେଉଥିଲେ । ସେ ଇନ୍ଦ୍ରଙ୍କ ଆଡ଼କୁ ଲକ୍ଷ୍ୟକରି ଆସୁଥିଲା ଆଉ ବାରମ୍ବାର କହୁଥିଲା—ରେ ଇନ୍ଦ୍ର ! ରହ, ରହ । ମୁଁ ତୋ' ମୁଣ୍ଡ ଉପରେ ବସିବି ।

ବ୍ରହ୍ମହତ୍ୟାର କୁତ୍ସିତ, ଭୟଙ୍କର ରୂପ ଦେଖି ଇନ୍ଦ୍ର ବିବ୍ରତ ହୋଇ ପଡ଼ିଲେ । ଋଷିମାନେ ତାଙ୍କୁ ଠକିଦେଲେ । ଗଛ ଉପରେ ଚଢ଼ାଇ ଦେଇ ସେମାନେ ଯେ ଯୁଆଡ଼େ ଗଲେ । ଏବେ କେହି ଯଜ୍ଞ କରାଇବା କଥା ଦୂରେ ଥାଉ, ଭଲମନ୍ଦ ପଦେ କହିବା ପାଇଁ ଆସୁ ନାହାନ୍ତି । ଯମଲୋକ, ବରୁଣଲୋକ, କୁବେରଲୋକ, ବ୍ରହ୍ମଲୋକ, ଶିବଲୋକ ସବୁଠି ସେ ବୁଲିଆସିଲେଣି; କିନ୍ତୁ କେହି ତାଙ୍କୁ ଆଶ୍ରୟ ଦେଲେ ନାହିଁ । ବର୍ତ୍ତମାନ କଣ କରିବେ ? ଯାହା ପାଖକୁ ଗଲେ ସମସ୍ତେ ପୁରୁଷ, ବଜ୍ର ପରି କଠୋର ସେମାନଙ୍କର ହୃଦୟ । ହଠାତ୍ ମା କମଳାଙ୍କ କଥା ତାଙ୍କ ମନେ ପଡ଼ିଗଲା । ଏହି ବିପଦରୁ କେବଳ ମା'ହିଁ ରକ୍ଷା କରିପାରିବେ । ଏହା ଭାବି ଇନ୍ଦ୍ର ମା' ଲକ୍ଷ୍ମୀଙ୍କ ପାଖକୁ ଆଶ୍ରୟ ପ୍ରାର୍ଥନା ପାଇଁ ଗଲେ ।

ତ୍ରିଲୋକ ଜନନୀ କମଳା ଉତ୍ତର ଦିଗରେ ଥିବା ମାନସ ସରୋବରରେ ରହୁଥିବାର ଶୁଣାଯାଏ । ତାହା ଜାଣି ଇନ୍ଦ୍ର ମାନସ ସରୋବର ପାଖରେ ଯାଇ ପହଞ୍ଚିଲେ । ସେଠାରେ ଥିବା ଏକ ପଦ୍ମନାଡ଼ ଭିତରେ ଇନ୍ଦ୍ର ପଶିଗଲେ । ଇନ୍ଦ୍ରଙ୍କ ମନରେ ଚିନ୍ତା ପଶିଲା । ବାହାରକୁ ଆସିଲେ ବ୍ରହ୍ମହତ୍ୟା ମାଡ଼ିବସିବ । ପଦ୍ମନାଡ଼ରେ ଲୁଚି ରହିଲେ କଣ ଖାଇ ଜୀବନ ଧାରଣ କରିବେ ? ଅଗ୍ନି ଦେବତାମାନଙ୍କର ମୁଖ ସ୍ୱରୂପ । ଯଜ୍ଞରେ ଦିଆଯାଉଥିବା ଆହୁତି ଗ୍ରହଣ କରି ଅଗ୍ନିଦେବତା ପ୍ରତ୍ୟେକ ଦେବତାଙ୍କର ପ୍ରାପ୍ୟ ତାଙ୍କ ପାଖରେ ପହଞ୍ଚାଇ ଦିଅନ୍ତି । କିନ୍ତୁ ଏଠାରେ ଅଗ୍ନିଦେବ ପାଣି ଭିତରକୁ କିପରି ଆସିବେ ? ତେଣୁ ଇନ୍ଦ୍ରଙ୍କୁ କିଛି ଖାଇବାକୁ ମିଳିଲା ନାହିଁ । ସେ କିଛି ନ ଖାଇ ନ ପିଇ ହଜାରେ ବର୍ଷ ସେହି କମଳ ନାଳରେ ଲୁଚି ରହିଲେ ।

ମହାରାଜ ପରୀକ୍ଷିତ ପଚାରିଲେ—ଭଗବନ୍ ! ଇନ୍ଦ୍ର ଯଦି ହଜାରେ ବର୍ଷ ପର୍ଯ୍ୟନ୍ତ ସମସ୍ତଙ୍କ ଅଲକ୍ଷ୍ୟରେ ପଦ୍ମନାଡ଼ରେ ଲୁଚି ରହିଲେ, ତେବେ ସେହି ସମୟରେ ଇନ୍ଦ୍ରପଦ କଣ ଶୂନ୍ୟ ରହିଲା ? ତ୍ରିଲୋକର ପାଳନ ପୋଷଣ କିଏ କଲା ? ଇନ୍ଦ୍ରଙ୍କ ଅନୁପସ୍ଥିତିରେ ଯଜ୍ଞର ହବିର୍ଭାଗ କିଏ ଗ୍ରହଣ କଲା ଏବଂ ଯଥା ସମୟରେ ବୃଷ୍ଟି କରିବାର ଦାୟିତ୍ୱ କିଏ ନେଲା ?

ରାଜାଙ୍କ ପ୍ରଶ୍ନ ଶୁଣି ଶୁକଦେବ କହିଲେ—ମହାରାଜ ! ଇନ୍ଦ୍ର ପଦ କେବେ ହେଲେ ଖାଲି ରହେ ନାହିଁ କି ରହିପାରିବ ନାହିଁ । ଦେବେନ୍ଦ୍ରଙ୍କ ଅନୁପସ୍ଥିତିରେ ରାଜା ନହୁଷ ସ୍ଥାନାପନ୍ନ ଇନ୍ଦ୍ରରୂପେ ଦାୟିତ୍ୱ ଗ୍ରହଣ କଲେ । ଇନ୍ଦ୍ରାସନରେ ରହି ତ୍ରିଲୋକର ଭଲମନ୍ଦ

ଭୁଞ୍ଜୁଥିଲେ । କିନ୍ତୁ ପରେ ନିଜର କୁକର୍ମ ହେତୁ ରାଜା ନହୁଷ ଇନ୍ଦ୍ରପଦରୁ ବହିଷ୍କୃତ ହୋଇଥିଲେ ।

ମୁନି ଶୌନକ ପଚାରିଲେ—ହେ ସୂତ ମହର୍ଷି ! ମହାରାଜ ନହୁଷ କି କି ପାପ ଓ ପୁଣ୍ୟ କାର୍ଯ୍ୟ କରିଥିଲେ ତାହା ଆମ୍ଭମାନଙ୍କୁ ଦୟାକରି କହନ୍ତୁ ।

ମହର୍ଷି ସୂତ କହିଲେ—ମୁନିଗଣ ! ମୁଁ ଏବେ ମହାରାଜା ନହୁଷଙ୍କ କଥା କହୁଛି, ଆପଣମାନେ ଅବହିତ ଚିତ୍ତ ହୋଇ ଶୁଣନ୍ତୁ ।

## ଛପ୍ପୟ

କମଳ ନାଳ ମଧ୍ୟେ ରହେ ବ୍ରହ୍ମ-ହତ୍ୟାରେ ଶଚୀ-ପତି ।
ମିଳେ ନ ତହିଁ ଆହାର ଭଇ ସୁରପତି କୀ ଦୁର୍ଗତି ॥
ସ୍ୱର୍ଗ ଇନ୍ଦ୍ର ବିନୁ ଭୟୋ ନହୁଷ ସୁର-ଇନ୍ଦ୍ର ବନାୟୋ ।
ପାଇ ସ୍ୱର୍ଗ ସମ୍ପତ୍ତି ମନୁଜ-ଭୂପତି ବୌରାୟୋ ॥
ଇନ୍ଦ୍ରାନୀ ତେଁ କହେଁ ନୃପ, ପୌଲୋମୀ ଅବ ହଠ ତଜୋ ।
ମୈଁ ଶାସକ ହୂଁ ସ୍ୱର୍ଗପତି, ଇନ୍ଦ୍ର ମାନ ମୋ କୂଁ ଭଜୋ ॥



# ନହୁଷଙ୍କ ଅଧଃପତନ

**ତାବତ୍ ତ୍ରିଣାକଂ ନହୁଷଃ ଶଶାସ ବିଦ୍ୟାତପୋ ଯୋଗ ବଲାନୁଭାବଃ**
**ସ ସମ୍ପଦୈଶ୍ୱର୍ଯ୍ୟମଦାନ୍ଧବୁଦ୍ଧିର୍ନୀତସ୍ତିରଶ୍ଚାଂ ଗତିମିନ୍ଦ୍ରପତ୍ନ୍ୟା ।।**

(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୩ଅ-୧୬ ଶ୍ଳୋ)

**ଛପ୍ପୟ**

**ନହୁଷ ଇନ୍ଦ୍ର କୀ ବାତ ଶଚୀ ସୁନି ଅତି ଘବରାଈ ।**
**ଚିନ୍ତିତ, ବ୍ୟାକୁଲ, ଦୁଃଖୀ, ଡରୀ, ସୁରଗୁରୁ ଢିଁଗ ଆଈ ।।**
**ଗୁରୁ ପ୍ରସନ୍ନ ହ୍ୱୈ ଯୁକ୍ତି ଅନୌଖୀ ତାହି ବତାଈ ।**
**କାମୀ-ବିଷୟାସକ୍ତ-ନୃପତି ପୈ ବାତ ପଠାଈ ।।**
**ଋଷି-କନ୍ଧନି ଶିବିକା ଧରେଁ ଚଢ଼ି ମମ ଢିଂଗ ଆୱେଁ ଅବସି ।**
**ତୋ ନିଜ-ପତି କେଈ ସରିସ, ବରନ କରୂଁ ତିନକୂଁ ହରଷି ।।**

ଧନ, ଐଶ୍ୱର୍ଯ୍ୟ, ଯୌବନ ଓ ପ୍ରଭୁତ୍ୱ ପାଇ ମଧ୍ୟ ଯାହାର ଇନ୍ଦ୍ରିୟଗଣ ସଂଯତ ଓ ଆତ୍ମାଧୀନ, ସେ ଭଗବାନ୍‌ଙ୍କ କୃପାପାତ୍ର ବୋଲି ବୁଝିବାକୁ ହେବ । ସଂସାରରେ ଏପରି ବ୍ୟକ୍ତି ବିରଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଧିକାର ବା କ୍ଷମତା ଓ ଐଶ୍ୱର୍ଯ୍ୟ ଗୋଟିଏ ଏପରି ଉପାଦାନ ଯେ, ଏହାଦ୍ୱାରା ମଣିଷର ବିବେକ ପୁରାପୁରି ନଷ୍ଟ ହୋଇଯାଏ । ଅଧିକାର ପାଇଗଲା ପରେ ମଣିଷ ଭାବେ—ମୋତେ ଆଉ କିଏ ପାରିବ ? ବର୍ତ୍ତମାନ ମନଇଚ୍ଛା କାର୍ଯ୍ୟ ମୁଁ କରିପାରିବ । ମୁଁ ପ୍ରଭୁ, ସ୍ୱାମୀ ଆଉ ସମସ୍ତେ ମୋର ସେବକ । ସମସ୍ତଙ୍କୁ ମୋର ଆଦେଶ ପାଳନ କରିବାକୁ ପଡ଼ିବ । ମୋର ସବୁକଥାରେ ହଁ ମାରିବା ବ୍ୟତୀତ ସେମାନଙ୍କର ଅନ୍ୟ ଉପାୟ ନାହିଁ । ମୋର ଆଦେଶ ଅକ୍ଷରେ ପାଳିତ ହେବା ଉଚିତ । ମୁଁ ଯାହା କରୁଛି ସବୁ ଠିକ୍ । ମୋଦ୍ୱାରା ଭୁଲ୍‌କାମ ହୋଇପାରିବ ନାହିଁ । ମୋତେ ନିନ୍ଦା କରୁଥିବା, ମୋର ଆଦେଶକୁ ଅବଜ୍ଞା କରୁଥିବା ବ୍ୟକ୍ତି ମୋର ଶତ୍ରୁ । ତାକୁ ସମୂଳେ ବିନାଶ କର । ଯେ ରହିବାକୁ ଚାହେଁ ସେ ମୋ' ଇଚ୍ଛା ଅନୁସାରେ ରହିବ । ଏପ୍ରକାର ବିଚାର ଅବିବେକତା ଓ ଅହଙ୍କାରରୁ ସୃଷ୍ଟି ହୁଏ ଏବଂ ଏହାଦ୍ୱାରା ମାନବର ଅଧଃପତନ ଘଟେ ।

ନୈମିଷାରଣ୍ୟରେ ମହର୍ଷି ସୂତ ମୁନିମାନଙ୍କୁ କହୁଥାନ୍ତି—ମୁନିଗଣ ! ବୃତ୍ରାସୁର ବଧ ପରେ ବ୍ରହ୍ମହତ୍ୟା ଭୟରେ ଇନ୍ଦ୍ର ଯେତେବେଳେ ମାନସ ସରୋବରରେ ଏକ ପଦ୍ମନାଳ ଭିତରେ ଲୁଚି ରହିଲେ ସେତେବେଳେ ଇନ୍ଦ୍ରାସନ ଖାଲି ପଡ଼ିରହିଲା । ତ୍ରିଲୋକର କାର୍ଯ୍ୟ ପରିଚାଳନା କିପରି ହେବ ? ଇନ୍ଦ୍ରଙ୍କ ବିନା ଯାଗ, ଯଜ୍ଞ, ବର୍ଷା ଆଦି କାର୍ଯ୍ୟ କିଏ କରିବ ? ଅସୁରଗଣ ପରାଜିତ ହୋଇ ସାରିଥିଲେ । ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ରପଦ ପାଇଁ କୌଣସି ଯୋଗ୍ୟ ବ୍ୟକ୍ତି ନ ଥିଲେ । ଋଷିମାନେ ଚିନ୍ତା କଲେ—ମର୍ତ୍ତ୍ୟଲୋକର କୌଣସି ବିଖ୍ୟାତ ରାଜର୍ଷିଙ୍କୁ ଇନ୍ଦ୍ରଙ୍କ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଦାୟିତ୍ୱରେ ରଖିବା ଆବଶ୍ୟକ । ଏହା ସ୍ଥିର କରି ଦେବଗଣ ଓ ଋଷିଗଣ ମିଳିତଭାବେ ପୃଥିବୀକୁ ଆସିଲେ । ସେତେବେଳେ ଚନ୍ଦ୍ରବଂଶୀୟ ପରମ ଯଶସ୍ୱୀ ରାଜା ଆୟୁଙ୍କ ପୁତ୍ର ରାଜର୍ଷି ନହୁଷ ରାଜତ୍ୱ କରୁଥିଲେ । ସେ ଥିଲେ ଧାର୍ମିକ, ଯଶସ୍ୱୀ ଓ ତେଜସ୍ୱୀ ପୁରୁଷ । ଦାନଧର୍ମରେ ସେ ସର୍ବଦା ବ୍ୟସ୍ତ ରହୁଥିଲେ । ସେ ଅନେକ ଯଜ୍ଞ କରିଥିଲେ । ଋଷିଗଣ ତାଙ୍କର ପାଖକୁ ଯାଇ କହିଲେ—ରାଜନ୍ ! ଆପଣ ଦୟାକରି ଇନ୍ଦ୍ରଙ୍କ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ସ୍ୱର୍ଗର ରାଜପଦ ଗ୍ରହଣ କରନ୍ତୁ ।

ମୁନିଋଷିମାନଙ୍କର ଯଥାବିଧି ସତ୍କାର କରିବା ପରେ ରାଜର୍ଷି ନହୁଷ କହିଲେ—ମୁନିଗଣ ! ଆପଣମାନେ ମୋ'ପ୍ରତି ବିଶେଷ ଦୟା ପ୍ରଦର୍ଶନ କରିଛନ୍ତି । କାରଣ ମୋ'ପରି ଜଣେ ମରଣଶୀଳ ବ୍ୟକ୍ତି ଉପରେ ଦେବତାମାନଙ୍କ ଆଧିପତ୍ୟ ଭାର ଅର୍ପଣ କରିବାଦ୍ୱାରା ମୁଁ କୃତକୃତ୍ୟ ହୋଇଛି । କିନ୍ତୁ, ଇନ୍ଦ୍ରପଦ ପାଇଁ ମୁଁ ଆଦୌ ଯୋଗ୍ୟ ନୁହେଁ । ମୋର ସେପରି ତପସ୍ୟା, ତେଜ ବିଦ୍ୟା ବା ଯୋଗ ନାହିଁ । ମୋର ତଦନୁରୂପ ଶକ୍ତି ମଧ୍ୟ ନାହିଁ । ଏ ଅବସ୍ଥାରେ ମୁଁ ସ୍ୱର୍ଗର ଶାସନଭାର କିପରି ବହନ କରିବି ?

ଋଷିମାନେ କହିଲେ—ଆୟୁଷ୍ମନ୍ ! ଆପଣ ଜଣେ ଧର୍ମାତ୍ମା । ଆପଣ ଇନ୍ଦ୍ରପଦ ପାଇଁ ଏକମାତ୍ର ଯୋଗ୍ୟ ବ୍ୟକ୍ତି । ତପସ୍ୟା, ତେଜ, ବିଦ୍ୟା ଓ ଶକ୍ତି କିଛି ନ ଥିଲେ ମଧ୍ୟ ଆମେ ଆମର ତପସ୍ୟା ବଳ ଓ ତେଜ ଆପଣଙ୍କୁ ଦେବୁ ।

ମହାରାଜ ନହୁଷ କହିଲେ—ଋଷିଗଣ ! ଆପଣମାନେ ମୋତେ ବରପ୍ରଦାନ କରନ୍ତୁ; ଯାହାଦ୍ୱାରା ମୁଁ ଯାହାଙ୍କୁ ଚାହିଁବି ତାଙ୍କ ତପସ୍ୟା ଓ ତେଜର ଅର୍ଦ୍ଧାଂଶ ମୋ' ପାଖକୁ ଚାଲିଆସିବ ଏବଂ ଯେ ମୋ' ଆଗକୁ ଆସିବେ ସେ ତେଜୋହୀନ ହୋଇପଡ଼ିବେ ।

ଦେବତା ଓ ଋଷିମାନେ ନିଜର ଉଦ୍ଦେଶ୍ୟ ସିଦ୍ଧ କରିବା ଲକ୍ଷ୍ୟରେ କହିଲେ—ରାଜନ୍ ! ତାହାହିଁ ହେଉ । ଆପଣ ଯାଇ ଇନ୍ଦ୍ରପଦକୁ ଅଲଙ୍କୃତ କରନ୍ତୁ । ଏହା ଶୁଣି ମହାରାଜ ନହୁଷ ଖୁସି ହୋଇଗଲେ । ସେ ପୃଥିବୀରୁ ସ୍ୱର୍ଗକୁ ଗଲେ । ମୁନିଋଷିମାନେ ଦେବଦେବୀଙ୍କ ଉପସ୍ଥିତିରେ ନହୁଷଙ୍କୁ ଇନ୍ଦ୍ର ପଦରେ ଅଭିଷିକ୍ତ କଲେ । ନିଜକୁ ଅପମାନ କରିଥିବା ଇନ୍ଦ୍ର ପଦଚ୍ୟୁତ ହୋଇଥିବାର ଜାଣି ଦେବଗୁରୁ ବୃହସ୍ପତି ମଧ୍ୟ ଅଭିଷେକ ଉତ୍ସବରେ ଭାଗ ନେଲେ । ଖୁବ୍ ଆଡ଼ମ୍ବର ସହକାରେ ନହୁଷ ଇନ୍ଦ୍ର ପଦରେ ବସିଲେ ।

ସୂତ ମହର୍ଷି କହିଲେ—ହେ ମୁନିଗଣ ! ଶ୍ରେଷ୍ଠ ଲୋକ ବଡ଼ ପଦପଦବୀ ପାଇବା ପରେ ନିଜର ପୂର୍ବସ୍ଥିତିକୁ ଭୁଲିଯିବାର ସାଧାରଣତଃ ଦେଖାଯାଏ । ସେ ବଡ଼ ଅହଙ୍କାରୀ ହୋଇପଡ଼େ । ସେହି ଅହଙ୍କାର ହେତୁ, ମଧ୍ୟାହ୍ନ ସୂର୍ଯ୍ୟ ସନ୍ଧ୍ୟାକାଳରେ ହୀନପ୍ରଭ ହୋଇ ଅସ୍ତାଚଳରେ ନିପତିତ ହେଲା ପରି ତା'ର ଅଧୋଗତି ଘଟେ । ନହୁଷ କିଛିକାଳ ଯଥାରୀତି ଶାସନକାର୍ଯ୍ୟ ପରିଚାଳନା କଲେ । କିନ୍ତୁ ମର୍ତ୍ତ୍ୟଲୋକର କ୍ଷଣଭଙ୍ଗୁର ବିଷୟ ସୁଖରେ ସୁଖୀ ହୋଇଥିବା ବ୍ୟକ୍ତି ପକ୍ଷରେ ସ୍ୱର୍ଗର ଦିବ୍ୟ ଐଶ୍ୱର୍ଯ୍ୟର ମହତ୍ତ୍ୱ ବୁଝିବା କଷ୍ଟକର । ଅମୃତପାନ ସହିତ ଅନ୍ନଭୋଜନର ତୁଳନା ଅସମ୍ଭବ । ନହୁଷଙ୍କର ଇନ୍ଦ୍ରପଦ ପ୍ରାପ୍ତି ପରେ ଅଭିମାନ ଅତ୍ୟଧିକ ମାତ୍ରାରେ ବଢ଼ିଗଲା । ସେ ସାଧାରଣ କଥାରେ ବିରକ୍ତ ହୋଇ, ହିତାହିତ ଜ୍ଞାନଶୂନ୍ୟ ହୋଇ ଯାହା ଇଚ୍ଛା ତା' କହିଲେ । ମୁନିମାନେ ନୀରବ ରହିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ସେମାନେ ପ୍ରଥମରୁହିଁ ଭୁଲ୍ କରିଛନ୍ତି । ନହୁଷଙ୍କ ଆଗକୁ ଯେ ଆସୁଥିଲେ ଲବ୍ଧ ବର ପ୍ରଭାବରେ ତାଙ୍କର ସମସ୍ତ ତେଜ ଓ ତପୋବଳ କ୍ଷୀଣ ହୋଇଯାଉଥିଲା । ଫଳରେ ସମସ୍ତେ ନୂଆ ଇନ୍ଦ୍ରଙ୍କର ବିରୋଧୀ ହୋଇଗଲେ । ଋଷିମାନେ ନିରୁପାୟ ହୋଇ ଦେବଗୁରୁ ବୃହସ୍ପତିଙ୍କୁ ସବୁକଥା ଜଣାଇଲେ । ବୃହସ୍ପତି ସବୁ ଶୁଣିବା ପରେ କହିଲେ—ଦେଖ, ତୁମର ବର୍ତ୍ତମାନ ଆଉ କିଛି କରିବାର କ୍ଷମତା ନାହିଁ । ତୁମେ ତ ନହୁଷକୁ ବର ଦେଇ ସାରିଛ । ମଣିଷ ଯେତେବେଳେ ଗୁରୁ ସ୍ଥାନୀୟ ଲୋକମାନଙ୍କୁ ଅପମାନିତ କରେ, ନରନାରୀଙ୍କୁ ଖରାପ ଦୃଷ୍ଟିରେ ଦେଖେ ସେତେବେଳେ ତା'ର ପତନ ଘଟେ । ତେଣୁ ନହୁଷ ଯେବେ ଏପରି କାର୍ଯ୍ୟଦ୍ୱାରା ଧର୍ମଚ୍ୟୁତ ହେବ ସେତେବେଳେ ତାର ସ୍ୱତଃ ପତନ ଘଟିବ ।

ନୂତନ ଇନ୍ଦ୍ର ନହୁଷଙ୍କ କଥାରେ ଋଷିମାନେ ଖୁବ୍ କଷ୍ଟ ଅନୁଭବ କରୁଥିଲେ । ଋଷିମାନେ ଗୋପନରେ ମିଳିତ ହୋଇ ସ୍ଥିର କଲେ ଯେ, ଏହି ଉଦ୍ଧତ ରାଜା ନହୁଷକୁ ଯେ କୌଣସି ଉପାୟରେ ଇନ୍ଦ୍ରପଦରୁ ବିଚ୍ୟୁତ କରିବାକୁ ହେବ । ଜଣେ ଋଷି କହିଲେ—ଏହି ସମିତିର ଜଣେ ସଭାପତି ହୁଅନ୍ତୁ । ଅଗସ୍ତ୍ୟ ମୁନି ସେଥିପାଇଁ ଉପଯୁକ୍ତ ହେବେ ବୋଲି ଭାବୁଛି । ସେ ବିନ୍ଧ୍ୟାଚଳକୁ ଉଚିତ ଶିକ୍ଷା ଦେଇଛନ୍ତି ଏବଂ ଆତାପି ଅସୁରକୁ ଖାଇ ହଜମ କରି ଦେଇଛନ୍ତି । ସେ ପୁଣି ସମୁଦ୍ରକୁ ଚଳୁ କରିଥିଲେ । ସେ ହିଁ କେବଳ ଏହି ଅବ୍ରହ୍ମଣ୍ୟ ଦୁଷ୍ଟ ରାଜାକୁ ଇନ୍ଦ୍ରପଦରୁ ବିଚ୍ୟୁତ କରିପାରିବେ ।

ସମସ୍ତେ ପ୍ରସ୍ତାବଟିକୁ ସମର୍ଥନ କଲେ ଏବଂ ଅନୁକୂଳ ସମୟ ଅପେକ୍ଷାରେ ରହିଲେ । ଯେଉଁ ଅପ୍ସରାମାନେ ନହୁଷଙ୍କ ରାଜସଭାରେ ନୃତ୍ୟ କରୁଥିଲେ ସେମାନେ ଗୀତ ମାଧ୍ୟମରେ ପୌଲୋମୀ ଇନ୍ଦ୍ରାଣୀଙ୍କ ରୂପ ଗୁଣର ଉଚ୍ଚ ପ୍ରଶଂସା ଗାନ କରୁଥିଲେ । ଅପ୍ସରାମାନେ କାହାରି ପ୍ରରୋଚନାରେ ଏହା କରୁଥିବାର ମନେ ହେଉଥିଲା । ଇନ୍ଦ୍ରାଣୀଙ୍କ ଅପୂର୍ବ ରୂପଲାବଣ୍ୟର ପ୍ରଶଂସା ଶୁଣି ନହୁଷଙ୍କ ମନ ବ୍ୟାକୁଳ ହେଲା । ସେ ଇନ୍ଦ୍ରାଣୀଙ୍କୁ କିପରି ପାଇବେ ତାହା ଭାବିବାକୁ ଲାଗିଲେ । ଦିନେ ସେ ଶଚୀ ରହୁଥିବା ସୁନ୍ଦର ପ୍ରାସାଦ ଆଡ଼େ ଚାହିଁ ଗନ୍ଧର୍ବମାନଙ୍କୁ ପଚାରିଲେ—ଏହି ସୁନ୍ଦର ଭବନଟି କାହାର ?

ଗନ୍ଧର୍ବଗଣ ହାତଯୋଡ଼ି କହିଲେ—ପ୍ରଭୋ ! ଏହା ଇନ୍ଦ୍ରପତ୍ନୀ ଭଗବତୀ ଶଚୀଦେବୀଙ୍କ ଅନ୍ତଃପୁର । ଏଠାରେ କେହି ପ୍ରବେଶ କରିପାରିବେ ନାହିଁ ।

ରାଜା ନହୁଷ ଐଶ୍ୱର୍ଯ୍ୟ ମଦରେ ମଦାନ୍ଧ ହୋଇ ପଡ଼ିଥିବାରୁ ପୁଣି କହିଲେ—ମୁଁ ଯେତେବେଳେ ଇନ୍ଦ୍ର ହୋଇଛି ଇନ୍ଦ୍ରାଣୀ ମୋ'ର ସେବା କରିବା ଉଚିତ । ସେ ମୋ' ପାଖକୁ ଆସୁ ନାହାନ୍ତି କାହିଁକି ? ଏହାଦ୍ୱାରା ମୋତେ ଜାଣି ଜାଣି ଅପମାନିତ କରାଯାଉ-ଥିବାର ଅନୁଭବ କରୁଛି । ଏହା ଭାବି ସେ ବାୟୁଦେବଙ୍କୁ ଡକାଇ କହିଲେ—ତୁମେ ସର୍ବଗ, ତୁମେ ସବୁଆଡ଼େ ଯାଇପାରିବ । ମୋ' ଆଦେଶରେ ତୁମେ ଇନ୍ଦ୍ରାଣୀଙ୍କ ପାଖକୁ ଯାଅ । ମୋ' ପକ୍ଷରୁ ତାଙ୍କୁ ଜଣାଇଦିଅ ମୁଁ ହେଉଛି ଇନ୍ଦ୍ର । ତେଣୁ ସେ ମୋତେ ବରଣ କରନ୍ତୁ । ନ୍ୟାୟତଃ ଯେ ଇନ୍ଦ୍ର ପଦରେ ପ୍ରତିଷ୍ଠିତ, ଇନ୍ଦ୍ରାଣୀ ତାଙ୍କର ପତ୍ନୀ ହେବେ । ସେ ମୋର ସେବା କରିବା ଉଚିତ ।

ବିଚରା ବାୟୁଦେବତା କରିବେ କଣ ? କଥାଟା ତାଙ୍କୁ ଖରାପ ଲାଗିଲେ ମଧ୍ୟ ଇନ୍ଦ୍ରଙ୍କ ଆଦେଶ ପାଳନ କରିବାକୁ ପଡ଼ିବ । ସେ ଶଚୀଦେବୀଙ୍କ ପାଖକୁ ଯାଇ ସବୁକଥା କହିଲେ । ନହୁଷଙ୍କ ପ୍ରସ୍ତାବ ଶୁଣି ଶଚୀଦେବୀ ବ୍ୟସ୍ତ ହୋଇପଡ଼ିଲେ । ତାଙ୍କ ମନରେ ପ୍ରଚଣ୍ଡ ଆଘାତ ଲାଗିଲା । ଦୁଷ୍ଟ କାଳେ ତାଙ୍କ ପ୍ରତି ବଳାତ୍କାର କରିବ ଏ ଭାବନା ତାଙ୍କୁ ଘାରିଲା । ସେ ଯଦି ବଳପୂର୍ବକ ମୋର ସତୀତ୍ୱ ନଷ୍ଟ କରିବ, ତେବେ ମୋର ଅବସ୍ଥା କଣ ହେବ ? ଏସବୁ ଭାବି ଶଚୀ ଖୁବ୍ ଡରିଗଲେ । ଭୟଭୀତ ହୋଇ ସେ ମନେ ମନେ ଶ୍ରୀହରିଙ୍କୁ ସ୍ମରଣ କଲେ । ଶେଷରେ ତାଙ୍କୁ ଏକ ଉପାୟ ଦେଖାଗଲା । କୁଳଗୁରୁ ବୃହସ୍ପତିଙ୍କ ପାଖକୁ ଯାଇ ଶଚୀଦେବୀ କାନ୍ଦିବାକୁ ଲାଗିଲେ ।

ତ୍ରିଲୋକର ଅଧିପତି ଇନ୍ଦ୍ରଙ୍କ ପତ୍ନୀଙ୍କୁ ଦୀନହୀନ ଅବସ୍ଥାରେ କାନ୍ଦୁଥିବାର ଦେଖି ବୃହସ୍ପତିଙ୍କ ମନରେ ଦୟା ଆସିଲା । ସେ କହିଲେ—ଝିଅ, ତୁ କାନ୍ଦୁଛୁ କାହିଁକି ? ତୋର କି ଅସୁବିଧା ହେଲା ? କିଏ ତୋର ଅନିଷ୍ଟ କଲା ?

ଶଚୀଦେବୀ ଧଡ଼କିଇ ହୋଇ କହିଲେ—ପ୍ରଭୋ ! କିଏ କାହାର ଅନିଷ୍ଟ କରି-ପାରିବ ? ସବୁକିଛି ଭାଗ୍ୟର ଫଳ । ମୋର ଦୁର୍ଭାଗ୍ୟହିଁ ସବୁର କାରଣ । ଆମେ କରିଥିବା ଅପରାଧର ଫଳ ଭୋଗ କରୁଛୁ । ଗୁରୁ ଅପମାନ କରିବାର ଫଳ ମିଳିଗଲାଣି । ଆମର ରାଜ୍ୟ ନଷ୍ଟ ହେଲା । ଶତ୍ରୁମାନେ ଆମକୁ ଗୃହହୀନ କରିଦେଲେ । ଅନାଥଙ୍କ ପରି ଏଣେ-ତେଣେ ବୁଲିଲୁ । ସମସ୍ତ ଐଶ୍ୱର୍ଯ୍ୟ ଚାଲିଗଲା । ବ୍ରହ୍ମହତ୍ୟା ଆମ ମୁଣ୍ଡ ଉପରେ ବସିଲା । ଆଜି ମୁଁ ପତିଙ୍କଠାରୁ ଦୂରରେ ରହି ଦିନ କାଟୁଛି । କିଏ ଅନୁମାନ କରିଥିଲା ଯେ ତ୍ରୈଲୋକ୍ୟପତି ଇନ୍ଦ୍ରଙ୍କ ପତ୍ନୀ ଏପରି ଦୁଃଖ ଦୁର୍ଦ୍ଦଶାରେ କାଳଯାପନ କରିବେ । ଗୁରୁଦେବ ! ଏବେ ଶୂକରୀ, କୁକ୍କୁରୀ ମୋଠାରୁ ଲକ୍ଷେ ଗୁଣରେ ସୁଖୀ ବୋଲି ଭାବୁଛି, କାରଣ ସେମାନେ ତାଙ୍କ ସ୍ୱାମୀଙ୍କ ପାଖରେ ଅଛନ୍ତି । ମୁଁ ବଡ଼ କଷ୍ଟରେ ପତିଙ୍କ ବିୟୋଗ ଦୁଃଖ ସହ୍ୟ କରୁଛି । ଏବେ ମୋ' ଆଗରେ ଏକ ନୂଆ ବିପଦ ଦେଖାଦେଇଛି । ଏପର୍ଯ୍ୟନ୍ତ

ମୋର ସତୀତ୍ୱକୁ ମୁଁ କୌଣସିମତେ ବଜାୟ ରଖିଥିଲି, କିନ୍ତୁ ଆଉ ସତୀତ୍ୱ ରଖିବା ପ୍ରାୟ ସମ୍ଭବ ନୁହେଁ ।

ଏହା ଶୁଣି ଭଗବାନ୍ ବୃହସ୍ପତି ଦୁଃଖିତ ହୋଇ ସହାନୁଭୂତିର ସହିତ ପଚାରିଲେ— "ଦେବି ! କିଏ ତୁମକୁ ଅପମାନ କଲା ? ତୁମକୁ ଖରାପ ଦୃଷ୍ଟିରେ ଦେଖିବାପାଇଁ କିଏ ସାହସ କଲା ? ତୁମେ ମୋତେ ତା'ର ନାମ କୁହ, ମୁଁ ତାକୁ ସାଙ୍ଗେ ସାଙ୍ଗେ ଭସ୍ମ କରିଦେବି ।"

ଅଞ୍ଜଳିବଦ୍ଧ ହୋଇ କମ୍ପିତ ସ୍ୱରରେ ଶଚୀଦେବୀ କହିଲେ—"ପ୍ରଭୋ ! ଯାହାକୁ ଆପଣ ନୂତନ ଇନ୍ଦ୍ରରୂପେ ଅଭିଷିକ୍ତ କରିଛନ୍ତି ସେ ଆଜି ବାୟୁଦେବତାଙ୍କ ହାତରେ ଏକ ଅନୁଚିତ ପ୍ରସ୍ତାବ ପଠାଇ କହିଛନ୍ତି ଯେ, ମୁଁ ନିୟମାନୁସାରେ ଇନ୍ଦ୍ର ହୋଇଛି, ତୁମେ ମୋର ସେବା କର ଓ ମୋର ଇନ୍ଦ୍ରାଣୀ ହୁଅ ।"

ଶଚୀଦେବୀଙ୍କ କଥା ଶୁଣି ଦେବଗୁରୁ ବୃହସ୍ପତି ଗମ୍ଭୀର ହୋଇଗଲେ । କିଛି ସମୟ ନୀରବ ରହିବା ପରେ କହିଲେ—"ଝିଅ, ଏହାତ ଏକ ବଡ଼ କଠିନ ସମସ୍ୟା । ଋଷିମାନେ ତା'ର ସ୍ୱଭାବ ଜାଣି ନପାରି ତାକୁ ବର ଦେଇଦେଲେ । ଯେ ତା' ଆଗକୁ ଯାଉଛି ବର ପ୍ରଭାବରେ ସେ ନିସ୍ତେଜ ହୋଇଯାଉଛି । ତଥାପି ଚିନ୍ତା କରିବାର କିଛି ନାହିଁ । ଖୁବ୍ ସମ୍ଭବତଃ ତାର ପୁଣ୍ୟବଳ କ୍ଷୀଣ ହେବାକୁ ବସିଲାଣି । ସେ ଖୁବ୍ ଶୀଘ୍ର ନିଜ ପଦରୁ ବିଚ୍ୟୁତ ହେବ । ସେଥିପାଇଁ ତୋ'ପରି ସତୀ ସାଧ୍ୱୀ ନାରୀ ପ୍ରତି ତା'ର ପାପବୁଦ୍ଧି ଜାତ ହୋଇଛି । କିଛି ଚିନ୍ତା ନାହିଁ । ତୁ ତା' ପାଖକୁ ଖବର ପଠାଇଦେବୁ ଯେ ହଜାରେ ମୁନିଙ୍କୁ ପାଲିଙ୍କି କାନ୍ଧେଇବାରେ ନିଯୁକ୍ତ କରି ସେଇ ପାଲିଙ୍କିରେ ବସି ସେ କୌଣସି ଦିନ ତୋ' ପାଖକୁ ଆସିଲେ ତୁ ତା'ର ସେବା କରିବୁ ।"

ବୃହସ୍ପତିଙ୍କଠାରୁ ଫେରି ଆସି ଶଚୀଦେବୀ ଗୁରୁଙ୍କ କହିବା ପ୍ରକାରେ ନହୁଷଙ୍କ ପାଖକୁ ଖବର ପଠାଇଦେଲେ । ଇନ୍ଦ୍ରାଣୀ ସମ୍ବାଦ ପାଇ ନହୁଷ ସବୁ ମୁନିଋଷିଙ୍କୁ ଡକାଇ କହିଲେ—"ଆଜି ତୁମ୍ଭେମାନେ ମୋ' ପାଲିଙ୍କି କାନ୍ଧେଇବ । ବୁଝିଲ ତ ? ଯେ ଅସ୍ୱୀକାର କରିବ ତାକୁ କଠୋର ଦଣ୍ଡ ଦିଆଯିବ ।"

ମୁନିମାନେ କଣ ବା କରିବେ ? ସମସ୍ତଙ୍କ ଆଡ଼କୁ ଚାହିଁ ଚାହିଁ ନହୁଷ ସେମାନଙ୍କୁ ତେଜୋହୀନ କରିଦେଲେ । ତେଣୁ ମୁହେଁ ମୁହେଁ ନହୁଷଙ୍କ ଆଦେଶ ଅସ୍ୱୀକାର କରିବାକୁ କାହାରି ସାହସ ହେଲା ନାହିଁ । ସମସ୍ତେ ଏକ ସ୍ୱରରେ କହିଲେ—"ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ ।"

ନହୁଷ ସେବକମାନଙ୍କୁ ପାଲିଙ୍କି ସଜାଇବାକୁ ଆଦେଶ ଦେଲେ । ସେବକମାନେ ପାଲିଙ୍କି ସଜାଇବାରେ ଲାଗିଗଲେ । ନହୁଷ ନିଜେ ନିଜର ଶୃଙ୍ଗାର ରଚନା କଲେ । ଆଜି ମନଦେଇ ସେ ନିଜକୁ ସଜାଇଲେ । ସେ ମନେ ମନେ ଭାବୁଥିଲେ ଆଜି ଶଚୀଦେବୀ ତାଙ୍କୁ ଦେଖି ମୁଗ୍ଧ ହୋଇଯିବେ ଏବଂ ଆନନ୍ଦରେ ତାଙ୍କୁ ନିଜର ପତିରୂପେ ବରଣ କରିବେ । ନିଜକୁ ସଜେଇବାରେ ବହୁତ ସମୟ କଟିଗଲା । ଶୀଘ୍ର ବାହାରି ଆସି ସେ ପାଲିଙ୍କିରେ ବସି ପଡ଼ିଲେ ଆଉ ଋଷିମାନଙ୍କୁ କହିଲେ ଯଥାଶୀଘ୍ର ମୋର ପାଲିଙ୍କି ନେଇ ଶଚୀଙ୍କ

ଶୟନାଗାର ପାଖକୁ ଚାଲ । ଋଷିମାନେ ପାଲଙ୍କି ଉଠାଇ ଚାଲିଲେ । ଶଚୀଦେବୀ ଯେଉଁ ସମୟ ଦେଇଥିଲେ ତାହା ନିକଟତମ ହୋଇଯିବାରୁ ନହୁଷ ବାରମ୍ବାର ଋଷିମାନଙ୍କୁ କହିଲେ—ଶୀଘ୍ରମେବ ସର୍ପ ସର୍ପ ଅର୍ଥାତ୍ ଶୀଘ୍ର ଶୀଘ୍ର ଚାଲ । କିନ୍ତୁ ଋଷିମାନେ ଯେପରି ଚାଲୁଥିଲେ ସେହିପରି ଚାଲିଲେ । ଯାଗଯଜ୍ଞ କଥା ହୋଇଥିଲେ, ପ୍ରସାଦସେବନ ବା ସେହିପରି ଅନ୍ୟ କଥା ହୋଇଥିଲେ ସେମାନେ ହୁଏତ ଅଧିକ ଦ୍ରୁତଗାମୀ ହୋଇଥାନ୍ତେ । କିନ୍ତୁ ଏବେ ସେମାନଙ୍କୁ ଏକ ଅନଭ୍ୟସ୍ତ କାର୍ଯ୍ୟରେ ବଳପୂର୍ବକ ନିଯୁକ୍ତ କରାଯାଇଛି । ସାଧାରଣତଃ ସେମାନେ ସ୍ଥୂଳଶରୀରଧାରୀ ଋଷି । କେବେ କାହାର ଏପ୍ରକାର ଅନୁଚିତ ଆଦେଶ ସହିବା ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ତଥାପି ସେମାନେ ଦ୍ରୁତଗତିରେ ଚାଲିଲେ ।

ଯେତେ ଚଞ୍ଚଳ ଚଲେ ମଧ୍ୟ ନହୁଷଙ୍କର ସନ୍ତୋଷ ହେଲା ନାହିଁ । ସେ ଋଷିମାନଙ୍କୁ ଗୋଇଠା ମାରିବାକୁ ଲାଗିଲେ ଏବଂ ବାରମ୍ବାର ସର୍ପ ସର୍ପ ବୋଲି କହିଲେ । ଚାଲ ଚାଲ ବୋଲି ଚିତ୍କାର କଲେ । ଏହା ସହି ନ ପାରି ଜଣେ ମୁନିଙ୍କ କକ୍ଷରେ ଲୁଚିରହିଥିବା ଅଗସ୍ତ୍ୟମୁନି ନହୁଷଙ୍କୁ ଅଭିଶାପ ଦେଇ କହିଲେ—"ରେ ଦୁଷ୍ଟ ! ବାରମ୍ବାର ଋଷିମାନଙ୍କୁ ସର୍ପ ସର୍ପ ବୋଲି କହୁଛୁ, ତୁ ସର୍ପ ହୋଇଯା ।"

ଏହା ଶୁଣିବାମାତ୍ରେ ନହୁଷ ପାଲଙ୍କିରୁ ତଳମୁହାଁ ହୋଇ ଗଡ଼ିପଡ଼ିଲେ ଓ ସର୍ପ ପାଲଟିଗଲେ । ଇନ୍ଦ୍ରାସନ ପୁଣି ଖାଲି ପଡ଼ିଲା । ପୁନର୍ବାର ଋଷିମାନେ ଇନ୍ଦ୍ରପଦ ବିଷୟରେ ଚିନ୍ତା କରିବାକୁ ଲାଗିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ନହୁଷଙ୍କର ସ୍ୱର୍ଗରୁ ପତନ କଥା ସଂକ୍ଷେପରେ କହିଲି । ଆପଣମାନେ ଆଉ କଣ ଶୁଣିବାକୁ ଇଚ୍ଛା କରୁଛନ୍ତି ?"

ଶୌନକ ପଚାରିଲେ—"ହେ ମହର୍ଷେ ! ଏହାପରେ କଣ ଘଟିଲା ତାହା ଶୁଣିବାକୁ ଆମ୍ଭେମାନେ ଇଚ୍ଛୁକ । ଇନ୍ଦ୍ରଙ୍କର କଣ ହେଲା ? ଇନ୍ଦ୍ର ପଦରେ କିଏ ଅଧିଷ୍ଠିତ ହେଲେ ? ଦେବେନ୍ଦ୍ରଙ୍କର ତ୍ରିଶିରବଧର ବ୍ରହ୍ମହତ୍ୟା ଦୋଷ କଟିଲା କି ନାହିଁ ? ଏସବୁ କଥା ବିସ୍ତାରିତ ଭାବେ କହନ୍ତୁ । ମହର୍ଷି ସୂତ ଋଷିମାନଙ୍କ ନିବେଦନ ସ୍ୱୀକାର କଲେ ।"

## ଛପ୍‌ପୟ

ଚଢ଼୍ୟୋ ପାଲକୀ ନହୁଷ ସହସ ମୁନି ତାହି ଉଠାୱେଁ ।
'ସର୍ପ ସର୍ପ' ନୃପ କହେ ଅନସୁନୀ ଋଷି କର ଜାୱେଁ ।।
ଅତି ଜବ କରୱାୱେଁ ଲଗ୍ୟୋ କୋପ କୁମ୍ଭଜ ମୁନି କୀନ୍ହୋ ।
ଦୁଷ୍ଟ ହୋଇ ତୂ ଶାପ ମୁନିବର ନେ ଦୀନ୍ହୋ ।।
ଝଟପଟ ଅଜଗର ଭୟୋ, ଔଁଧେ ମୁହ ତେ ଗିର ପର୍‌ୟୋ ।
ତୁରତ ପାୟକୋ ଫଲ ଚଖ୍ୟୋ, ଇନ୍ଦ୍ରାଣୀ ପ୍ରତ ଜସ କର୍‌ୟୋ ।।

# ଇନ୍ଦ୍ରଙ୍କର ପୁନଃ ଇନ୍ଦ୍ର ପଦପ୍ରାପ୍ତି

ସ ବାଜିମେଧେନ ଯଥୋଦିତେନ ବିତାୟମାନେନ ମରୀଚିମିଶ୍ରୈଃ ।
ଇଷ୍ଟ୍ୱାଧିଯଜ୍ଞଂ ପୁରୁଷଂ ପୁରାଣମିନ୍ଦ୍ରୋ ମହାନାସ ବିଧୂତପାପଃ ॥

(ଶ୍ରୀମଦ୍ଭାଗବତ – ୬ସ୍କନ୍ଧ-୧୩ଅ-୨୧ଶ୍ଳୋ)

**ଛପ୍ପୟ**

ଭୟୋ ପାପ କୋ ଅନ୍ତ ଗୟେ ସବ ମିଲକେ ରଷି ମୁନି ।
ଦେବରାଜ କଁ ଲୟେ କରାୟୋ ଅଶ୍ୱମେଧ ପୁନି ॥
ଜେଁୟା କୁହରି ନସି ଜାଇ ଉଦିତ ଦିନକେ ହେ୍ୱଁଓ୍ୱ ତେଁ ।
ପାପ ପୁଞ୍ଜ ତେଁୟା ନସେ ନାମ ହରିକୋ ଲେଓ୍ୱ ତେଁ ॥
ଇନ୍ଦ୍ର ନାକପତି ପୁନି ଭୟେ, ତ୍ରିଭୁବନ ଅତି ହର୍ଷିତ ଭୟୋ ।
ଜ୍ୟୋଁ ଦଧୀଚି କୋ ତ୍ୟାଗ ଅରୁ, ବୃତ୍ରାସୁର କୋ ବଧ କହ୍ୟୋ ।

ମନରେ ଯେ ପର୍ଯ୍ୟନ୍ତ ଅତ୍ୟଧିକ ପାପ ସଞ୍ଚିତ ହୋଇ ରହିଛି ସେ ପର୍ଯ୍ୟନ୍ତ ଶୁଭକର୍ମ କରିବାକୁ ଆଦୌ ଇଚ୍ଛା ହୁଏ ନାହିଁ । ପାପାତ୍ମାମାନଙ୍କର ପାପ କାର୍ଯ୍ୟରେ ଏବଂ ପୁଣ୍ୟାତ୍ମା-ମାନଙ୍କର ପୁଣ୍ୟ କାର୍ଯ୍ୟ କରିବାରେ ସ୍ୱତଃ ପ୍ରବୃତ୍ତି ଜାତ ହୁଏ । ଭଗବାନଙ୍କ ଦୟାରୁ ଯେତେବେଳେ ପାପର କ୍ଷୟ ସମୟ ଆସେ, ସେତେବେଳେ ଏପରି ଘଟଣାମାନ ଘଟେ । ଯେଉଁଥିରେ ଶତ୍ରୁ ମଧ୍ୟ ମିତ୍ର ପାଲଟିଯାଏ ଏବଂ ଚର ଅପକାଙ୍କ୍ଷୀ ଉପକାର କରିବା ପାଇଁ ଆଗେଇ ଆସେ । ପ୍ରତିକୂଳ ପରିସ୍ଥିତି ଅନୁକୂଳ ହୁଏ । ଦୁର୍ଭାଗ୍ୟ କ୍ରମେ ଅପସରିଯାଏ ଓ ସୌଭାଗ୍ୟ ପଦାର୍ପଣ କରେ । ଏହାକୁ କାଳର ପ୍ରଭାବ କହନ୍ତି ।

ମହର୍ଷି ଶୁକଦେବ କହିଲେ ରାଜନ୍ ! ବୃତ୍ରାସୁରକୁ ବଧ କରିଥିବାରୁ ଇନ୍ଦ୍ରଙ୍କୁ ଯେଉଁ ବ୍ରହ୍ମହତ୍ୟା ଦୋଷ ଲାଗିଥିଲା ତାହା ଶେଷ ହେବାର ସମୟ ଆସିଗଲା । ହଜାରେ ବର୍ଷ ଧରି ନଳଦ୍ୱାର ରନ୍ଧ୍ର ଜଳ ଭିତରେ ଲୁଚି ଇନ୍ଦ୍ର ଯେଉଁ ଯେଉଁ ତପସ୍ୟା କଲେ, ଭଗବାନଙ୍କ ନାମ ସ୍ମରଣ କଲେ ସେଥିରେ ତାଙ୍କର ସମସ୍ତ ପାପ କ୍ଷୟ ହୋଇଗଲା । ଏଣେ ହଜାରେବର୍ଷ ଇନ୍ଦ୍ର ହେବା ନିମିତ୍ତ ନହୁଷ ଯେଉଁ ପୁଣ୍ୟ ଅର୍ଜନ କରିଥିଲେ ତାହା ଶେଷ ହୋଇଯାଇଥିଲା । ପୁଣ୍ୟ ଶେଷ ହେବାରୁ ନହୁଷ ଅଜଗର ସର୍ପ ରୂପ ଧରି ପୃଥିବୀକୁ ଖସି ପଡ଼ିଲେ ।

ମୁନି, ଋଷି, ଦେବତା, ଗନ୍ଧର୍ବଗଣ ଇନ୍ଦ୍ରପଦ ପୂରଣ ନିମିତ୍ତ ଚିନ୍ତିତ ହେଲେ । ଋଷିମାନଙ୍କ ସଭା ବସିଲା । ସଭାରେ ପ୍ରଥମ ଇନ୍ଦ୍ରଙ୍କୁ ଖୋଜିବା ପାଇଁ ସିଦ୍ଧାନ୍ତ ନିଆଗଲା । ଅଗ୍ନିଦେବତା ଦୂତ ହୋଇଗଲେ । ସେ କୌଣସିମତେ ଇନ୍ଦ୍ରଙ୍କୁ ପାଇ ଋଷିମାନଙ୍କ ସିଦ୍ଧାନ୍ତ ତାଙ୍କୁ ଜଣାଇଲେ । ଋଷିମାନେ ତାଙ୍କ ଉପରେ ପ୍ରସନ୍ନ ହୋଇଥିବାର ଜାଣି ଇନ୍ଦ୍ର ଆନନ୍ଦିତ ହେଲେ । ସେ ମର୍ତ୍ତ୍ୟ ଆସି ଋଷିମାନଙ୍କ ପାଖରେ ପହଞ୍ଚିଲେ । ଋଷିମାନଙ୍କ ଆଶୀର୍ବାଦ ଲାଭ କରି ଭଗବାନ୍ ପୁରୁଷୋତ୍ତମଙ୍କ ଆରାଧନା ନିମିତ୍ତ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ନିମିତ୍ତ ଦୀକ୍ଷା ଗ୍ରହଣ କଲେ । ଅଶ୍ୱମେଧ ଯଜ୍ଞରେ ଭଗବାନ୍‌ଙ୍କ ନାମ ଭଜନ କରି ଇନ୍ଦ୍ର ବୃତ୍ରବଧ ଜନିତ ମହାପାପରୁ ମୁକ୍ତ ହେଲେ । ଅଗ୍ନିରେ ତପ୍ତ ବିଶୁଦ୍ଧ ସ୍ୱର୍ଣ୍ଣ, ନିର୍ମଳୀକୃତ ବର୍ଷାଜଳ, ମାସିକ ଧର୍ମ ବିଶୁଦ୍ଧା ନାରୀ, ଗ୍ରହଣ ମୁକ୍ତ ସୂର୍ଯ୍ୟ ଚନ୍ଦ୍ର, ଉତ୍ତପ୍ତ ଘୃତ, ସ୍ନାନ ବିଶୁଦ୍ଧ ଶରୀର, ସଂସ୍କାର ଦ୍ୱାରା ଶୁଦ୍ଧ ଦ୍ୱିଜ, ତପସ୍ୟାଦ୍ୱାରା ଶୁଦ୍ଧ ମନ ଓ ଇନ୍ଦ୍ରିୟ, ଦାନ ଦ୍ୱାରା ଶୁଦ୍ଧ ଧନ, ସନ୍ତୋଷ ଦ୍ୱାରା ଶୁଦ୍ଧ ଚିତ୍ତ ପରି ଭଗବତ୍ ନାମ ଭଜନଦ୍ୱାରା ଇନ୍ଦ୍ର ଦୋଷମୁକ୍ତ ହେଲେ । ସେ ପୁଣି ତିନି ଲୋକରେ ପୂର୍ବପରି ପୂଜନୀୟ, ବନ୍ଦନୀୟ, ମାନନୀୟ, ଅର୍ଚ୍ଚନୀୟ ଓ ଆଦରଣୀୟ ସ୍ଥାନ ଲାଭ କଲେ । ବହୁକାଳ ବିଚ୍ଛେଦ ପରେ ନିଜ ପତିଙ୍କୁ ପାଇ ଇନ୍ଦ୍ରାଣୀ ଖୁସି ହେଲେ । ଇନ୍ଦ୍ର ଗୁରୁଙ୍କ ପାଖକୁ ଯାଇ ବିନୀତଭାବେ ତାଙ୍କର ପାଦ ବନ୍ଦନା କଲେ । ତାଙ୍କଠାରେ ନିଜକୃତ ଦୁର୍ବ୍ୟବହାର ପାଇଁ ଇନ୍ଦ୍ର କ୍ଷମା ମାଗିଲେ ।

ବୃହସ୍ପତି ଆନନ୍ଦିତ ହୋଇ କହିଲେ—"ଦେବେନ୍ଦ୍ର ! ତୁମର ଏହି ଦୁର୍ଗତି ପାଇଁ ତୁମେ ନିଜକୁ ଦୋଷୀ ବୋଲି ଭାବନାହିଁ କି ମୋତେ ଦୋଷ ଦିଅନାହିଁ । ସୁଖ ଦୁଃଖ କେହି କାହାକୁ ଦିଏନାହିଁ । ଏସବୁ କାଳ ହିଁ କରାଉଛି । ଯେତେବେଳେ ଯେଉଁ ସମୟ ଆସେ ସେତେବେଳେ ଲୋକର ସେହିପରି ବୁଦ୍ଧି ଜାତ ହୁଏ । ସେ ସେହିପରି କାର୍ଯ୍ୟ କରେ ଏବଂ ସେ ପ୍ରକାର କର୍ମ କରିବାପାଇଁ ହୃଦୟରୁ ପ୍ରେରଣା ଜାତ ହୁଏ । ଭବିତବ୍ୟତା ଅନୁଯାରେ ଅନୁରୂପ ଘଟଣାବଳୀ ଘଟିଯାଏ । ସେହି ସମୟର ପ୍ରଭାବରେ ପଡ଼ି ମୁନିଋଷି-ମାନେ ଅଭିଶାପ ବା ବର ଦିଅନ୍ତି । ତୁମର ପ୍ରାରବ୍ଧ ସେହିପରି ଥିଲା । ହୁଏତ ଅନିଷ୍ଟ ଗ୍ରହର ସଂଯୋଗ ଥିଲା । ଯାହା ହୋଇଛି, ତାହା ଠିକ୍ ହୋଇଛି । ଦୁର୍ଗତି ଭୋଗ ସରିଗଲା । ପ୍ରାରବ୍ଧ କର୍ମର ଫଳ ସମସ୍ତଙ୍କୁ ଦିନେ ନା ଦିନେ ଭୋଗିବାକୁ ପଡ଼େ । କିନ୍ତୁ ବୁଦ୍ଧିମାନ୍ ଲୋକ ବିବେକ ଜଗାଇ ସୁଖ ଦୁଃଖକୁ ସମଦୃଷ୍ଟିରେ ଅବଶ୍ୟମ୍ଭାବି ବୋଲି ବୁଝି ସେସବୁ ନିର୍ଲିପ୍ତଭାବେ ଭୋଗ କରିଯାଏ । ମାତ୍ର ଯେ ଅଜ୍ଞାନୀ ସେ ବହୁ କଷ୍ଟ ଭୋଗ କରେ, କାନ୍ଦି କାନ୍ଦି ତା'ର ସମୟ କଟିଯାଏ । ସମସ୍ତଙ୍କୁ ତ ଭୋଗିବାକୁ ପଡ଼ିବ । ଏବେ ତୁମେ ବିଶୁଦ୍ଧ ମନରେ ତିନି ଲୋକକୁ ନ୍ୟାୟମାର୍ଗରେ ପାଳନ କର । ମଙ୍ଗଳମୟ ଶ୍ରୀହରି ତୁମର ମଙ୍ଗଳ କରିବେ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଆପଣଙ୍କୁ ବୃତ୍ରାସୁର ବଧର ପବିତ୍ର ଆଖ୍ୟାନ ଶୁଣାଇଲି । ଏଥିରେ ଇନ୍ଦ୍ରଙ୍କ ଐଶ୍ୱର୍ଯ୍ୟ ଗର୍ବ, ଦେବ ଗୁରୁ ବୃହସ୍ପତିଙ୍କ ଅନ୍ତର୍ଦ୍ଧାନ ହେବା,

ଦେବଗଣଙ୍କ ଉପରେ ଅସୁରମାନଙ୍କ ଆକ୍ରମଣ, ଅସୁରଗୁରୁ ଶୁକ୍ରାଚାର୍ଯ୍ୟଙ୍କ ସାହାଯ୍ୟରେ ଅସୁରମାନଙ୍କ ବିଜୟଲାଭ, ପରାଜିତ ଦେବତାମାନଙ୍କର ବ୍ରହ୍ମାଙ୍କଠାରେ ଶରଣ ପ୍ରାର୍ଥନା, ବ୍ରହ୍ମାଙ୍କ ପରାମର୍ଶରେ ଦେବତାମାନେ ବିଶ୍ୱରୂପଙ୍କୁ ଗୁରୁ କରିବା, ଅସୁରଙ୍କ ପକ୍ଷ ନେବାରୁ ବିଶ୍ୱରୂପ ଇନ୍ଦ୍ରଙ୍କଦ୍ୱାରା ନିହତ ହେବା, କ୍ରୋଧାନ୍ୱିତ ହୋଇ ତ୍ୱଷ୍ଟାଙ୍କଦ୍ୱାରା ବୃତ୍ରାସୁରର ଜନ୍ମ ବୃତ୍ରାସୁରର ଅତ୍ୟାଚାରରେ ଦେବଗଣଙ୍କର ଭଗବାନ୍‌ଙ୍କୁ ପ୍ରାର୍ଥନା ଓ ତାଙ୍କର ପରାମର୍ଶରେ ଦଧୀଚି ମୁନିଙ୍କ ଅସ୍ଥି ସଂଗ୍ରହ, ବିଶ୍ୱକର୍ମାଙ୍କ ଦ୍ୱାରା ସେହି ଅସ୍ଥିରେ ବଜ୍ରନିର୍ମାଣ, ବୃତ୍ରାସୁରର ଅଦ୍‌ଭୁତ ଭଗବଦ୍‌ଭକ୍ତି ପ୍ରଦର୍ଶନ ଏବଂ ଇନ୍ଦ୍ରଙ୍କଦ୍ୱାରା ବୃତ୍ରାସୁରର ନିଧନ କଥା କହିଲି । ଇନ୍ଦ୍ରଙ୍କ ବ୍ରହ୍ମହତ୍ୟା ଦୋଷ ଓ ଋଷିମାନଙ୍କ ଦ୍ୱାରା ଅଶ୍ୱମେଧ ଯଜ୍ଞ ମାଧ୍ୟମରେ ଇନ୍ଦ୍ରଙ୍କ ପାପମୁକ୍ତି ବିଷୟ ମଧ୍ୟ ବର୍ଣ୍ଣନା କଲି ।

ଏହା ଏକ ପବିତ୍ର ଆଖ୍ୟାନ । ଏହାର ପଠନ, ଶ୍ରବଣରେ ସମସ୍ତ ପାପ ଦୂର ହୁଏ । ଏଥିରେ ଭଗବାନ୍‌ଙ୍କ ନାମ, ଗୁଣ, କୀର୍ତ୍ତନ ମହିମା, ଭକ୍ତମାନଙ୍କ ବିଶୁଦ୍ଧ ଚରିତ୍ର ଓ ଅନନ୍ୟ ଭକ୍ତିର ବିବରଣୀ ରହିଛି । ତେଣୁ ଏହି ଆଖ୍ୟାନକୁ ବାରମ୍ବାର ପଠନ ଓ ମନନ କରିବା ଉଚିତ । ମୃତ୍ୟୁକାଳ ଉପସ୍ଥିତ ହେଲେ, ତୀର୍ଥଯାତ୍ରା ସମୟରେ, ମିତ୍ରମାନଙ୍କ ଗହଣରେ, ଶ୍ରାଦ୍ଧ ସମୟରେ, ପୁଣ୍ୟକ୍ଷେତ୍ରରେ ଭକ୍ତିପୂର୍ବକ ଏହି ଆଖ୍ୟାନ ପାଠ କଲେ ମନ ପବିତ୍ର ହୁଏ, ଚିତ୍ତରେ ଶାନ୍ତି ଆସେ ଓ ଅନ୍ତଃକରଣରେ ଆନନ୍ଦ ଉତ୍ପନ୍ନ ହୁଏ । ଇହଲୋକରେ ଧନ, ଯଶ, ବିଜୟ, ଦୀର୍ଘାୟୁଷ ଲାଭ ଓ ପରଲୋକରେ ଅଭିଳାଷିତ ସୁଖ ମିଳେ ।"

ଶ୍ରୀ ସୂତ କହିଲେ—"ହେ ମୁନିଗଣ ! ଏହା କହି ମୋର ଗୁରୁଦେବ ଭଗବାନ୍ ଶୁକଦେବ ନୀରବ ହେଲେ ।"

ଶୌନକ ପଚାରିଲେ—"ମହର୍ଷେ ! ଏହି ପୁଣ୍ୟପ୍ରଦ କଥା ଶୁଣି ଆମ୍ଭେମାନେ ସୁଖୀ ହେଲୁ । ଆପଣ ଯେତେ କଥା କହିଲେ ସେସବୁ ମାର୍ମିକ ଓ ହୃଦୟସ୍ପର୍ଶୀ ହୋଇଛି । ଦଧୀଚି ମୁନିଙ୍କ ତ୍ୟାଗ ଓ ବୃତ୍ରାସୁର ପରି ଦୁର୍ଦ୍ଦାନ୍ତ ଅସୁରଠାରେ ଭଗବତ୍ ପ୍ରୀତି ଓ ଅହୈତୁକୀ ଭକ୍ତି ପ୍ରସଙ୍ଗ ଆଗରୁ ଶୁଣା ନ ଥିଲା । ପୁଣି ସଂଗ୍ରାମ ଭୂମିରେ ଯେଉଁଠି ଯୋଦ୍ଧା କ୍ରୋଧାନ୍ଧ ଓ ରକ୍ତପିପାସୁ ହେବା ସ୍ୱାଭାବିକ, ସେଠାରେ ସମଚିତ୍ତରେ ରହି ଭଗବାନ୍‌ଙ୍କୁ ସ୍ନେହ ଓ ସ୍ତୁତି କରିବା ବୃତ୍ରାସୁର ପାଖରେ ଯେପରି ପ୍ରତିପାଦିତ ହୋଇଛି ତାହାର ଦୃଷ୍ଟାନ୍ତ ବିରଳ । ମୁନିଋଷିମାନଙ୍କଠାରୁ ବଳି ବୃତ୍ରାସୁରଠାରେ ଏପରି ଭଗବଦ୍‌ଭକ୍ତି କିପରି ସମ୍ଭବ ହେଲା ଏବଂ ଏତେ ବଡ଼ ଭକ୍ତ ଅସୁର ଯୋନିରେ କାହିଁକି ଜନ୍ମ ଗ୍ରହଣ କଲା ତାହା ଜାଣିବା ପାଇଁ ମନ ବ୍ୟାକୁଳ ହେଉଛି । ଆପଣ ଯଦି ଉଚିତ ମନେ କରୁଛନ୍ତି ତେବେ ସେକଥା ଆମକୁ କହନ୍ତୁ ।"

ଏହା ଶୁଣି ଶ୍ରୀ ସୂତ ମୁନି କିଛିକାଳ ଗମ୍ଭୀର ରହିବା ପରେ କହିଲେ—"ମୁନିଗଣ ! ଭଗବଦ୍ ଭକ୍ତି ଗୋଟିଏ ଜନ୍ମର ଫଳ ନୁହେଁ । ଏହା ସାଧନା ଦ୍ୱାରା ସାଧ୍ୟ ହୁଏ ନାହିଁ, କେବଳ ପରମେଶ୍ୱରଙ୍କ କୃପା ଦ୍ୱାରା ସାଧ୍ୟ ହୋଇପାରେ । ଭଗବାନ୍ ସଦୟ ହୋଇ ଯେ

କୌଣସି ବିଶୁଦ୍ଧମନା ମହାପୁରୁଷଙ୍କ ହୃଦୟରେ ଭକ୍ତିବୀଜ ବପନ କରିଥାନ୍ତି । ଲକ୍ଷ ଲକ୍ଷ ଜନ୍ମର ତପସ୍ୟାଦ୍ୱାରା, ଶୁଭକର୍ମ ଅନୁଷ୍ଠାନଦ୍ୱାରା ଅନ୍ତଃକରଣ ବିଶୁଦ୍ଧ ହୁଏ, ମନ ଶୁଦ୍ଧ ହୁଏ । ଏହିପରି ଶୁଦ୍ଧାନ୍ତଃକରଣ ପୁରୁଷମାନଙ୍କ ମଧ୍ୟରୁ ଖୁବ୍ ଅଳ୍ପ ସଂଖ୍ୟକ ମହାପୁରୁଷଙ୍କ ହୃଦୟରେ ଭଗବଦ୍ ଭକ୍ତିର ପ୍ରାଦୁର୍ଭାବ ଘଟେ । ତେଣୁ ହେ ମୁନିଗଣ ! ଯାହାକିଛି ଘଟିଲା ସେ ସମସ୍ତ ବୃତ୍ରାସୁରର ପୂର୍ବ ଜନ୍ମର ସୁକୃତଫଳରୁ ସମ୍ଭବ ହେଲା । ଆସୁରୀ ଯୋନିରେ ଜନ୍ମ ଗ୍ରହଣ କରିବା କଥା ମଧ୍ୟ ସେହିପରି ଲକ୍ଷ ଲକ୍ଷ ଜନ୍ମର କୁକର୍ମ ଫଳରୁ ଘଟେ । ପ୍ରକୃତ ଭକ୍ତ ଏ ଦେହ ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ । ଏ ଦେହ ହେଉଛି ଆତ୍ମାର ଅବତରଣ କ୍ଷେତ୍ର । ରଜା ଯେ କୌଣସି ବସ୍ତ୍ର ପରିଧାନ କଲେ ବି ରଜା ରୂପେ ପରିଚିତ ହୁଅନ୍ତି । ସେହିପରି ଭଗବଦ୍ ଭକ୍ତ, ପଶୁପକ୍ଷୀ, କୀଟପତଙ୍ଗ, ବୃକ୍ଷଲତା, ସ୍ତ୍ରୀପୁରୁଷ, ଧନୀ-ଦରିଦ୍ର, ସମସ୍ତଙ୍କଠାରେ ଦେଖାଯାନ୍ତି । ଏ ବିଷୟରେ ସନ୍ଦେହ କରିବାର କିଛି ନାହିଁ । ବୃତ୍ରାସୁର ପୂର୍ବ ଜନ୍ମରେ ଭଗବାନ୍ ସଙ୍କର୍ଷଣଙ୍କ ଉପାସନା କରିଥିଲା । ସେଥିପାଇଁ ଅସୁର ଯୋନିରେ ଜନ୍ମ ହୋଇ ମଧ୍ୟ ପ୍ରଭୁଙ୍କ ପାଦପଦ୍ମରେ ତା'ର ଦୃଢ଼ ଅନୁରକ୍ତି ଥିଲା ।''

ଶୌନକ ବିନୀତ ଭାବେ ଅନୁରୋଧ କରି କହିଲେ—''ମହାଭାଗ ! ଆପଣ, ଦୟା କରି ଆମକୁ ବୃତ୍ରାସୁରର ପୂର୍ବଜନ୍ମ କଥା କୁହନ୍ତୁ । ସେ କଥା ଶୁଣିବା ପାଇଁ ଆମର କୌତୂହଳ ଜାତ ହୋଇଛି ।''

ଶ୍ରୀ ସୂତ କହିଲେ—ମୁନିଗଣ ! ବୃତ୍ରାସୁରର ପୂର୍ବଜନ୍ମ କଥା ମୁଁ ନିଶ୍ଚୟ ଆପଣମାନଙ୍କୁ କହିବି । ମହାରାଜ ପରୀକ୍ଷିତ ମଧ୍ୟ ମୋର ଗୁରୁଦେବଙ୍କୁ ଏହି ପ୍ରଶ୍ନ ପଚାରିଥିଲେ । ଆପଣ-ମାନେ ଧୀରସ୍ଥିର ହୋଇ ଶୁଣନ୍ତୁ । ମନ ଚଞ୍ଚଳ ହେଲେ 'ଗୋବିନ୍ଦାୟ ନମୋ ନମଃ' ମନେ ମନେ ସ୍ମରଣ କରନ୍ତୁ । କାରଣ ମନ ଚଞ୍ଚଳ ହେଲେ ଉପାଦେୟ ଓ ଶିକ୍ଷଣୀୟ କଥାର ମହତ୍ତ୍ୱ ନଷ୍ଟ ହୋଇଯାଏ ।

ଶୌନକ ପଚାରିଲେ—''ମହର୍ଷେ ! ଆପଣ ବାରମ୍ବାର ଆମକୁ ସାବଧାନ କରୁଛନ୍ତି । ଧୀରସ୍ଥିର ହୋଇ ଶୁଣ, ମନ ଦେଇ ଶୁଣ, ଚିତ୍ତକୁ ଚଞ୍ଚଳ କରନାହିଁ । ଏପରି ବାରମ୍ବାର କହୁଛନ୍ତି । ଆମ୍ଭେମାନେ ତ ମନଦେଇ ଆପଣଙ୍କ କଥା ଶୁଣୁଛୁ । ତଥାପି ଆପଣ ବାରମ୍ବାର ଆମକୁ ଚେତାବନୀ ଦେଉଛନ୍ତି, ଏହାର କାରଣ କଣ ?''

ଶୌନକଙ୍କ ପ୍ରଶ୍ନରେ ହସି ହସି ମହର୍ଷି ସୂତ କହିଲେ -''ମୁନିଗଣ ! ଆପଣମାନଙ୍କୁ କଣ କହିବି, ଏହା ମୋର ଏକ ଅଭ୍ୟାସ । ଆପଣମାନେ ସାବଧାନ ହୋଇ ଶୁଣୁ ନାହାନ୍ତି ବୋଲି ମୁଁ କହୁନାହିଁ । କାରଣ ସାବଧାନ ହୋଇ ଶୁଣୁ ନ ଥିଲେ ମୁଁ ବି କିଛି କହନ୍ତି ନାହିଁ । ତଥାପି ମୁଁ ଯେଉଁ ଚେତାବନୀ ଦେଉଛି, ତାହା ଅଭ୍ୟାସବଶତଃ କହିଦେଉଛି । କଥା କହିବା ଲୋକର ଏ ପ୍ରକାର କିଛି ନା କିଛି ଅଭ୍ୟାସ ଥାଏ । ତେଣୁ କେତେକ କହନ୍ତି 'ବୁଝିଲେ' ଆଉ କେତେକ କହନ୍ତି 'କଣ ବୁଝିଲେ ତ ।' ପୁଣି କିଏ କହେ 'କଣ, ଠିକ୍ ନୁହେଁ', ଆଉ କେହି କହେ 'କୁହ, ଠିକ୍ କହିଲି କି ନାହିଁ ।' ଆଉ କେତେକ

'ଗୋପାଳଙ୍କ ଇଚ୍ଛା', 'ସୀତାରାମଙ୍କ ଇଚ୍ଛା', 'ମା'ଙ୍କ ଇଚ୍ଛା ବୋଲି କଥା ମଝିରେ, ଆରମ୍ଭରେ ବା ଶେଷରେ କହନ୍ତି । ଏହା ପାଦପୂରଣ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ । ସେହିପରି ମୋର ଏପରି କହିବା ଏକ ଅଭ୍ୟାସ । ବର୍ତ୍ତମାନ ବୃତ୍ରାସୁରର ପୂର୍ବଜନ୍ମ କଥା କହୁଛି, ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।"

## ଛପ୍ପୟ

ସୁନ୍ଦ ଅତି ସୁଖଦ ପବିତ୍ର ଚରିତ ଶିକ୍ଷାପ୍ରଦ ଭାରୀ ।
ପଢ଼େଁ ସୁନେଁ ନର ନାରୀ ହୋହିଁ ତେ ଅବସି ସୁଖାରୀ ॥
ମୁନି-ଦଧୀଚି କୋ ତ୍ୟାଗ ବୃତ୍ର କୀ ଭକ୍ତି ଅନୂଠୀ ।
ସ୍ୟୋଁ ହୀ ଦ୍ୱୈ ହୈଁ ସାର ଔର ଜଗ ଚର୍ଚା ଝୂଠୀ ॥
ଶୌନକ ବୋଲେ ସୂତ ! କସ, ବୃତ୍ର ଅସୁର ଦେହୀ ଲହୀ ।
ସୂତ କହେଁ—ଶୁକ ନେ କଥା, ନୃପତି ପ୍ରଶ୍ନ ପୈ ସବ କହୀ ॥



# ବୃତ୍ରାସୁରର ପୂର୍ବଜନ୍ମ ବୃତ୍ତାନ୍ତ

ଆସୀଦ୍ ରାଜା ସାର୍ବଭୌମଃ ଶୂରସେନେଷୁ ବୈ ନୃପଃ ।
ଚିତ୍ରକେତୁରିତି ଖ୍ୟାତୋ ଯସ୍ୟାସୀତ୍ କାମଧୁଙ୍ମହୀ ॥
ତସ୍ୟ ଭାର୍ଯ୍ୟାସହସ୍ରାଣାଂ ସହସ୍ରାଣି ଦଶାଭବନ୍ ।
ସାନ୍ତାନିକଶ୍ଚାପି ନୃପୋ ନ ଲେଭେ ତାସୁ ସନ୍ତତିମ୍ ॥

(ଶ୍ରୀମଦ୍ଭାଗବତ-୬ଷ୍ଠ-୧୪ଅ-୧୦, ୧୧ଶ୍ଳୋ)

## ଛପ୍ପୟ

କହେଁ ପରୀକ୍ଷିତ ପ୍ରଭୋ ! ବୃତ୍ର କୋ ପୂର୍ବଜନମ ମହଁ ।
କସ ଅସ ହରି ପଦ ଭକ୍ତି ରହେଂୟା କସ ଅଟଲ ଧରମ ମହଁ ॥
ଶୁକ ବୋଲେ—ସୁନୁ ଭୂପ ! ନୃପତି ଇକ ଚିତ୍ରକେତୁ ବର ।
ଶୂରସେନ କୋ ଈଶ ସାଧୁସେବୀ ସୁଠି ସୁନ୍ଦର ॥
ବିଦ୍ୟା ରୂପ ଉଦାରତା, ସମ୍ପତ୍ତି ସବ ଅଗନିତ ଭରୀ ।
ନୃପ କୀ ରାନୀ ଦସ ଅୟୁତ, ହତୀ କୁଲବତୀ ସୁନ୍ଦରୀ ॥

ଗର୍ଭସ୍ଥ ବାଳକ 'ଜରା' ନାମକ ଝିଲ୍ଲୀ ସହିତ ଯେପରି ଓତଃପ୍ରୋତଭାବେ ଜଡ଼ିତ ରହେ ସେହିପରି ପୂର୍ବସଂସ୍କାର ମଣିଷ ସହିତ ସଂଶ୍ଳିଷ୍ଟ ଥାଏ । ଯେ କୌଣସି ଦେଶ, ଯେ କୌଣସି ବର୍ଣ୍ଣ, ଯେ କୌଣସି ଜାତିର ନାରୀର ଗର୍ଭରେ ଥିବା ଶିଶୁ 'ଜରା' ସହିତ ଜଡ଼ିତ ହୋଇ ଜନ୍ମ ଗ୍ରହଣ କରେ । ତେଣୁ ଜୀବ ଯେଉଁ ଯୋନିରେ ଜନ୍ମ ହେଲେ ମଧ୍ୟ ପୂର୍ବକୃତ ପାପ ପୁଣ୍ୟ ତା ସହିତ ଲାଗିରହେ । ପୂର୍ବଜନ୍ମକୁ ନ ମାନି ସଂସାରର ବିଷମତାକୁ କୌଣସି ଉପାୟରେ ସମାଧାନ କରିହେବ ନାହିଁ । ପୂର୍ବଜନ୍ମରେ ଯାହାକୁ ଆମେ ଦୁଃଖ ଦେଇଥିବା, ଇହଜନ୍ମରେ ସେ ଆମକୁ ଅକାରଣ ଦୁଃଖ ଦେବ । ଆକାଶରେ କେତେ କେତେ ପକ୍ଷୀ ଉଡ଼ିଯାଆନ୍ତି, କିନ୍ତୁ ବାଜପକ୍ଷୀ ସେଥିରୁ ଗୋଟିଏ ଦୁଇଟି ମାରେ କାହିଁକି ? ଅନ୍ୟଗୁଡ଼ିକ କିପରି ଛଞ୍ଚାଣ କବଳରୁ ବଞ୍ଚିଯାଆନ୍ତି । ଏକ ଜାଗାରେ ଅନେକ ଲୋକ ରହନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଦୁଇଜଣଙ୍କ ସହିତ ଆମର ମିତ୍ରତା ବଢ଼େ କିପରି ? ଗୋଟିଏ ବାଳିକା ବିଦ୍ୟାଳୟରେ ଶହ ଶହ ବାଳିକା ପାଠ ପଢ଼ନ୍ତି । କିନ୍ତୁ ବିଷ୍ଣୁ ମିତ୍ରଙ୍କ ବିବାହ

କେବଳ ଶୀଳା ସହିତ କାହିଁକି ହେଲା ? ଅନ୍ୟମାନଙ୍କୁ ଯେ ଦେଖୁଥିଲେ ମଧ୍ଯ କାହିଁକି ଶୀଳା ପ୍ରତି ଅଧିକ ଆକର୍ଷିତ ହେଲେ ? ଆପଣ ଏଗୁଡ଼ିକୁ ଆକସ୍ମିକ ଘଟଣା ବୋଲି କହିବେ, ଦୈବାତ୍ ଏହା ଘଟିଲା ବୋଲି କହିବେ । କିନ୍ତୁ ଏ ବିଷୟରେ ଆମର ଉତ୍ତର ହେଉଛି, ସଂସାରର କୌଣସି କାର୍ଯ୍ୟ ବିନା କାରଣରେ ଘଟେ ନାହିଁ । ଅକସ୍ମାତ୍ ଘଟଣା ବୋଲି ସଂସାରରେ କିଛି ନାହିଁ । ପୂର୍ବଜନ୍ମରେ ଆମେ ଯାହା କରିଥାଉଁ ଇହଜନ୍ମରେ ତାହାର ଫଳାଫଳ ଆମକୁ ଭୋଗ କରିବାକୁ ପଡ଼େ ।

ବୃତ୍ରାସୁରର ବୃତ୍ତାନ୍ତ ଶୁଣି, ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ତା'ର ଅନନ୍ୟ ଭକ୍ତିକଥା ସ୍ମରଣ କରି ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ ପଚାରିଲେ––"ମହାଭାଗ ! ଏହା ତ ବଡ଼ ଆଶ୍ଚର୍ଯ୍ୟର କଥା, ଘୋର ରଜୋଗୁଣୀ ଓ ତମୋଗୁଣୀ ହୋଇ ମଧ୍ୟ ବୃତ୍ରାସୁରର ଏପରି ଅଚଳା-ଭକ୍ତି କିପରି ଆସିଲା ? ଭୟଙ୍କର ସଂଗ୍ରାମ କାଳରେ ସେ ଧୀରସ୍ଥିର ରହି ଭଗବାନ୍‌ଙ୍କୁ ସ୍ତୁତି କଲା କିପରି ? ଆଉ ଏପରି ଉଗ୍ରସ୍ୱଭାବର ଅସୁର ସହସା କିପରି ମୁକ୍ତିଲାଭ କଲା ?"

ମହାରାଜ ପରୀକ୍ଷିତଙ୍କ ବିସ୍ମୟ ସୂଚକ ପ୍ରଶ୍ନାବଳୀ ଶୁଣି ହସି ହସି ଶୁକଦେବ କହିଲେ—"ମହାରାଜ ! ମୁକ୍ତି ଆଉ ଭଗବଦ୍ ଭକ୍ତିକୁ କିଏ କଣ ଠିକା ନେଇଛି କି ?"

ମହାରାଜ ପରୀକ୍ଷିତ ଉତ୍ତର ଦେଲେ—"ଆଜ୍ଞା, ନାଁ । ଠିକା ନେବା କଥା କହୁନାହିଁ । ମୋ' କହିବାର ଅଭିପ୍ରାୟ ହେଉଛି, ବ୍ୟତିକ୍ରମ ତ ସବୁଠି ଅଛି । କିନ୍ତୁ ପ୍ରାୟଶଃ ଶୁଦ୍ଧାନ୍ତଃ-କରଣ, ସତ୍ତ୍ୱଗୁଣସମ୍ପନ୍ନ, ପବିତ୍ର ଆଚରଣଶୀଳ ବ୍ୟକ୍ତିମାନଙ୍କ ହୃଦୟରେ ଭଗବଦ୍ ଭକ୍ତିର ସଞ୍ଚାର ଘଟେ । ସାତ୍ତ୍ୱିକ ଗୁଣସମ୍ପନ୍ନ ସବୁ ଲୋକ ଯେ ଭଗବଦ୍ ଭକ୍ତ ହେବେ, ସେପରି କିଛି ନାହିଁ । ଅନେକ ସଦ୍‌ଗୁଣୀ ଦେବତା, ପବିତ୍ରମନା ମୁନିଋଷିଙ୍କ ହୃଦୟରେ ମଧ୍ୟ ଭଗବଦ୍ ଭକ୍ତି ଉତ୍ପନ୍ନ ହୁଏ ନାହିଁ । କିନ୍ତୁ ମହାପାପୀ ବୃତ୍ରାସୁର ହୃଦୟରେ ଏପରି ଗମ୍ଭୀର ପ୍ରଭୁଭକ୍ତି କିପରି ସମ୍ଭବ ହେଲା ?"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଆପଣ ସେକଥା କଣ କହୁଛନ୍ତି ? ଭଗବାନ୍‌ଙ୍କ ହାତରେ ଯେଉଁ କ୍ରୂର ସ୍ୱଭାବ, ପାପୀ, ଦୁଷ୍ଟଚରିତ୍ର ଅସୁରମାନେ ମୃତ୍ୟୁବରଣ କରିଛନ୍ତି ସେମାନେ ସମସ୍ତେ ମୁକ୍ତ ହୋଇଛନ୍ତି । ତେଣୁ ବୃତ୍ରାସୁର ଭଗବାନ୍‌ଙ୍କ ତେଜୋମୟ ବଜ୍ର ଦ୍ୱାରା ମୃତ୍ୟୁବରଣ କରି ମୁକ୍ତ ହୋଇଗଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?"

ମହାରାଜ ପରୀକ୍ଷିତ ପୁଣି ପଚାରିଲେ—"ଭଗବନ୍ ! ମୁକ୍ତ ହୋଇଯିବା କଥା ଅଲଗା । କିନ୍ତୁ ଭକ୍ତିଠାରୁ ମୁଁ ମୁକ୍ତିକୁ ଅଧିକ ଗୁରୁତ୍ୱ ଦେଉନାହିଁ । ଅନେକ ମୁକ୍ତ ହୋଇ-ଯାଉଛନ୍ତି । ବହୁ ଅସୁର, ରାକ୍ଷସ ମୁକ୍ତ ହୋଇଛନ୍ତି । କିନ୍ତୁ, କେବଳ ଭାଗ୍ୟଶାଳୀ ଲୋକଙ୍କ ପାଖରେ ଭକ୍ତିଭାବ ପ୍ରକାଶ ପାଇଥାଏ ।"

ଶ୍ରୀ ଶୁକଦେବ ହସି ହସି କହିଲେ—"ରାଜନ୍ ! ଆପଣ ମୁକ୍ତିକୁ ଗୁଡ଼ମୁଆଁ ବୋଲି ଭାବୁଛନ୍ତି କି ଯାହାକୁ ଚଟ୍‌କରି ପାଟିରେ ପକାଇଦେବେ ଓ ତାହା ସଙ୍ଗେ ସଙ୍ଗେ ମିଳେଇ ଯିବ ? ମୁକ୍ତିକୁ ଆପଣ ଏପରି ସହଜ, ସୁଲଭ ବୋଲି କିପରି ଭାବୁଛନ୍ତି ?"

ମହାରାଜ ପରୀକ୍ଷିତ ଶୀଘ୍ର ଉତ୍ତର ଦେବାକୁ ଯାଇ କହିଲେ—"ନାଁ ନାଁ ଭଗବାନ୍ ! ମୁକ୍ତି ସୁଲଭ ବୋଲି କହିବା ମୋର ଅଭିପ୍ରାୟ ନୁହେଁ । ମୁକ୍ତିର ମାର୍ଗ ତ କ୍ଷୁର ଧାର ପରି ଅତି ତୀକ୍ଷ୍ଣ । ଏ ଜଗତରେ ମୁକ୍ତି ପାଇ ସମସ୍ତେ ଯତ୍ନଶୀଳ । କିଏ ରୋଗମୁକ୍ତ, କିଏ ଦୁଃଖମୁକ୍ତ, କିଏ କାମବାସନାରୁ ମୁକ୍ତି ପାଇଁ ଚେଷ୍ଟା କରୁଛି ତ ଆଉ କେହି କ୍ଷୁଧା, ତୃଷା, ଶୀତ, ଗ୍ରୀଷ୍ମ, କଳହରୁ ମୁକ୍ତିପାଇଁ ଚିନ୍ତା କରୁଛି । ଅନ୍ୟ କେହି ପୁ ନାମକ ନରକରୁ ମୁକ୍ତି ପାଇବା ପାଇଁ ଯତ୍ନ କରୁଛି । ଏହିପରି ସମସ୍ତେ କିଛି ନା କିଛି ଅଭାବର ପୂର୍ତ୍ତି ନିମିତ୍ତ ପ୍ରଯତ୍ନ କରୁଛନ୍ତି । ଏ ସଂସାରରେ ଅସଂଖ୍ୟ ଜୀବ ଅଛନ୍ତି । ପୃଥିବୀର ସମସ୍ତ ଧୂଳିକଣାକୁ ଗଣିବା ସମ୍ଭବ ହୋଇପାରେ, ମାତ୍ର ଜୀବମାନଙ୍କୁ ଗଣନା କରିବା ସମ୍ଭବ ନୁହେଁ । ଉଦ୍‌ଭିଜ, ସ୍ୱେଦଜ, ଅଣ୍ଡଜ, ଜରାୟୁଜ ଆଦି ଜୀବଗୋଷ୍ଠୀ ଏ ସଂସାରରେ ଅଛନ୍ତି । ପ୍ରତ୍ୟେକ ଗୋଷ୍ଠୀର ଅସଂଖ୍ୟ ଜୀବ ଅଛନ୍ତି । ଚଉଦଭୁବନକୁ ନେଇ ଗୋଟିଏ ବ୍ରହ୍ମାଣ୍ଡ ଥିଲେ ହିଁଅନ୍ତା; କିନ୍ତୁ ବ୍ରହ୍ମାଣ୍ଡର ସଂଖ୍ୟା ଯେ ଅସଂଖ୍ୟ । ପ୍ରତ୍ୟେକ ବ୍ରହ୍ମାଣ୍ଡରେ ବ୍ରହ୍ମା, ବିଷ୍ଣୁ, ଶିବ, ଦେବତା, ମୁନି, ପ୍ରଜାପତି ଆଦି ଅଲଗା ଅଲଗା ଅଛନ୍ତି । ଅସଂଖ୍ୟ ଜୀବ ମଧ୍ୟରେ କେବଳ ମନୁଷ୍ୟ ସଂସାର ସାଗରକୁ ପାରି ହେବା ପାଇଁ ଚିନ୍ତା କରିପାରୁଛି । ଏପରି ଚିନ୍ତା କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଅଳ୍ପ ସଂଖ୍ୟକ ଲୋକ ମୁକ୍ତି ପାଇଁ ଯତ୍ନ କରୁଛନ୍ତି । ସବୁ ମୁକ୍ତିକାମୀ ଯଦି ମୁକ୍ତ ହୋଇଯିବେ, ତେବେ କିଛି କହିବାର ନାହିଁ । କିନ୍ତୁ ସେମାନଙ୍କ ମଧ୍ୟରୁ ଅଳ୍ପ କେତେକ ଭାଗ୍ୟବାନ୍ ସିଦ୍ଧି ଲାଭ କରି ମୋକ୍ଷର ଅଧିକାରୀ ହୁଅନ୍ତି । କୋଟି କୋଟି ଜୀବନ୍ମୁକ୍ତ ସିଦ୍ଧ ପୁରୁଷମାନଙ୍କ ମଧ୍ୟରେ ଶାନ୍ତଚିତ୍ତ, ନାରାୟଣ ପରାୟଣ ମହାପୁରୁଷ ଖୁବ୍ କମ୍ । ଭାଗବତ ହେବା ସହଜ କଥା ନୁହେ । ଟିକା ଚିତାନ, ମାଳା ଓ ବେଶ ସଜାଇଲେ କେହି ପ୍ରଭୁପରାୟଣ ହୁଏ ନାହିଁ । ଆପଣ କହୁଥିଲେ—ବୃତ୍ରାସୁର ନାରାୟଣ-ପରାୟଣ ଥିଲା । ଯୁଦ୍ଧଭୂମିରେ ମଧ୍ୟ ସେ ନାରାୟଣଙ୍କ ପାଦପଦ୍ମରେ ଦୃଢ଼ମତି ରଖିପାରିଥିଲା । କିନ୍ତୁ ଏହା କିପରି ସମ୍ଭବ ହେଲା ? ଏହା ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ବୃତ୍ରାସୁର ଥିଲା ଅସାଧାରଣ ବୀର । ନିଜର ବୀରତ୍ୱରେ ସେ ଇନ୍ଦ୍ରଙ୍କୁ ମଧ୍ୟ ସନ୍ତୁଷ୍ଟ କରିଥିଲା । ଏସବୁ କିପରି ହେଲା ? ତା'ର ପୂର୍ବଜନ୍ମର ସଂସ୍କାର କଣ ଥିଲା, ତାହା ମୋତେ ଦୟାକରି ବୁଝାଇ ଦେବାକୁ ବିନୀତ ନିବେଦନ କରୁଛି ।"

ମହର୍ଷି ସୂତ କହିଲେ—"ମୁନିଗଣ ! ମହାରାଜ ପରୀକ୍ଷିତ ଯେଉଁ ପ୍ରଶ୍ନ ସବୁ ପଚାରିଲେ ମୋର ଗୁରୁ ଶ୍ରୀ ଶୁକଦେବ ସମସ୍ତ ପ୍ରଶ୍ନର ଉତ୍ତର ଦେଇଥିଲେ । ସେ କହିଥିଲେ—ରାଜନ୍ ! ଏହା ଅତି ପ୍ରାଚୀନ ଓ ଇତିହାସ ପ୍ରସିଦ୍ଧ ବୃତ୍ତାନ୍ତ । ପ୍ରଥମେ ଏ ବୃତ୍ତାନ୍ତ ମୋର ପିତା ବ୍ୟାସଦେବଙ୍କ ପାଖରୁ ଶୁଣିଥିଲି । ପରେ ମହର୍ଷି ଦେବଳଙ୍କ ସହିତ ମୋର ସାକ୍ଷାତ ହେଲା । ସେ ମଧ୍ୟ କଥାବାର୍ତ୍ତାବେଳେ ପୁନର୍ଜନ୍ମ ପ୍ରସଙ୍ଗ ବିଷୟରେ କେତେ କଥା କହିଥିଲେ । ସେହି ପ୍ରସଙ୍ଗରେ ସେ ଏହି ବୃତ୍ତାନ୍ତର ଅବତାରଣା କରିଥିଲେ । ଆଉ ପରେ ଦେବର୍ଷି ନାରଦଙ୍କ ସହିତ ମୋର ସାକ୍ଷାତ ହୋଇଥିଲା । ମୁଁ ତାଙ୍କୁ ପଚାରିଥିଲି—ଭଗବଦ୍ ଭକ୍ତ

କାହା ହୃଦୟରେ ଜାତ ହୁଏ ? ମୋ' ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ—"ଭଗବାନ୍ କେତେବେଳେ କାହା ଉପରେ ସଦୟ ହେବେ ତାହା କହିହେବ ନାହିଁ । ଦେଖ, ବୃତ୍ର କେଡ଼େ ପରାକ୍ରମଶାଳୀ ଅସୁର ଥିଲା । ଦେବତାମାନେ ତାକୁ ଭୟ କରୁଥିଲେ । କିନ୍ତୁ ତା'ର ପ୍ରଭୁଙ୍କ ପ୍ରତି ଅଚଳା ଭକ୍ତି ଥିଲା ।" ଏ ପ୍ରସଙ୍ଗରେ ସେ ମୋତେ ବୃତ୍ରାସୁରର ପୂର୍ବଜନ୍ମ କଥା କହିଥିଲେ ।

ଶ୍ରୀ ଶୁକଦେବଙ୍କଠାରୁ ଏହା ଶୁଣି ମହାରାଜ ପରୀକ୍ଷିତ ପୁଣି ପଚାରିଲେ—ମହାରାଜ ! ଏହା ଏକ ପ୍ରାଚୀନତମ ଐତିହାସିକ ଘଟଣା ବୋଲି ମନେ ହେଉଛି । ଆପଣ ଦୟାକରି ତାହା ପ୍ରକାଶ କରନ୍ତୁ ।

ଏହା ଶୁଣି ଶୁକଦେବ ହସି ହସି କହିଲେ—ରାଜନ୍ ! ଶୁଣନ୍ତୁ । ମୁଁ ଆପଣଙ୍କୁ ସେହି ସବିଶେଷ କାହାଣୀ କହୁଛି । ପୂର୍ବକାଳରେ ଶୂରସେନ ଦେଶରେ ଜଣେ ପ୍ରବଳ ପ୍ରତାପୀ ରାଜା ରାଜତ୍ୱ କରୁଥିଲେ । ଯମୁନା କୂଳରେ ଆଜି ଯେଉଁଠି ବଟେଶ୍ୱର ଶିବ ମନ୍ଦିର ଅଛି, ସେହିସ୍ଥାନ ଓ ତା'ର ଆଖପାଖ ଅଞ୍ଚଳ ଶୂରସେନ ରାଜ୍ୟ ନାମରେ ପରିଚିତ ଥିଲା । ସେ ଦେଶର ରାଜାଙ୍କ ନାମ ଥିଲା ଚିତ୍ରକେତୁ । ସେ ଥିଲେ ଜଣେ ପୁଣ୍ୟାତ୍ମା । ପୁଣ୍ୟ ପ୍ରଭାବରେ ସେ ଯେତେବେଳେ ଯାହା ଇଚ୍ଛା କରୁଥିଲେ ତାହା କାମଧେନୁ ତୁଲ୍ୟା ପୃଥିବୀଠାରୁ ପାଉଥିଲେ । ରାଜନ୍ ! ଯେତେବେଳେ ମଣିଷଠାରେ ଅବିଶ୍ୱାସର ମାତ୍ରା ବଢ଼ିଯାଏ, ସେତେବେଳେ ଅଧର୍ମ ପ୍ରବଳ ହୋଇଉଠେ । ଅଧର୍ମ ବଢ଼ିଲେ ପୃଥିବୀ ନିଜ ଭିତରେ ସବୁକିଛି ଲୁଚାଇ ରଖେ । ଉପାଦେୟ ବସ୍ତୁ ଦୁର୍ଲଭ ହୁଏ । ଜୀବନର ପରିପୋଷକ ଶସ୍ୟ ଉତ୍ପନ୍ନ ହୁଏ ନାହିଁ । ଔଷଧିମାନ ପ୍ରଭାବଶୂନ୍ୟ ହୋଇପଡ଼ନ୍ତି । ଦୁଷ୍ଟ ରାଜାମାନଙ୍କ ଶାସନ ଫଳରେ ପୃଥିବୀ ନିର୍ଜୀବ ପାଲଟିଯାଏ । କିନ୍ତୁ ଧାର୍ମିକ ରାଜା ରାଜତ୍ୱ କଲେ ପୃଥିବୀରେ ସୁନା ଫଳେ । ସ୍ଥାନେ ସ୍ଥାନେ ମୂଲ୍ୟବାନ୍ ମଣିମାଣିକ୍ୟ ବାହାରେ । ମହାରାଜ ଚିତ୍ରକେତୁ ଥିଲେ ସେହିପରି ଜଣେ ଧାର୍ମିକ ରାଜା । ତାଙ୍କ ରାଜ୍ୟରେ କାହାରି କିଛି ଅଭାବ ନ ଥିଲା । ଅନ୍ନ, ବସ୍ତ୍ର ଯଥେଷ୍ଟ ପରିମାଣରେ ଉତ୍ପାଦିତ ହେଉଥିଲା ।

ମହାରାଜ ଚିତ୍ରକେତୁ କନ୍ଦର୍ପ ପରି ସୁନ୍ଦର ଥିଲେ । ସେ ଥିଲେ ଅତି ଉଦାର ସ୍ୱଭାବର । ଯେତେବେଳେ ଯେ ଯାହା ମାଗୁଥିଲା ସେ ଆଦରର ସହିତ ପ୍ରସନ୍ନ ମନରେ ସଙ୍ଗେ ସଙ୍ଗେ ଯାଚକର ଅଭିଳାଷ ପୂରଣ କରୁଥିଲେ । କେହି କେବେ ତାଙ୍କଠାରୁ ବିମୁଖ ହୋଇ ଫେରୁ ନ ଥିଲା । ବଂଶପରମ୍ପରାକ୍ରମେ ସେ ରାଜା ହୋଇଥିଲେ । ସଦ୍‌ବଂଶରେ ତାଙ୍କର ଜନ୍ମ ହୋଇଥିଲା । ପିତା, ପିତାମହ ଓ ପ୍ରପିତାମହ ଅମଳରୁ ଚାଲିଆସିଥିବା ପରମ୍ପରା ଅନୁସାରେ ସେ ରାଜା ହୋଇଥିଲେ । ସମସ୍ତ ବିଦ୍ୟାରେ ତାଙ୍କର ଦକ୍ଷତା ଥିଲା । ସେ ଥିଲେ ଜଣେ ଐଶ୍ୱର୍ଯ୍ୟଶାଳୀ ରାଜା । ତାଙ୍କ ଧନ-ସମ୍ପଦର କୌଣସି ସୀମା ନ ଥିଲା । ମୋଟାମୋଟି ଦେଖିବାକୁ ଗଲେ ତାଙ୍କଠାରେ ସମସ୍ତ ସଦ୍‌ଗୁଣ ଠୁଳ ହୋଇ ରହିଥିଲା । ଯଥା ସମୟରେ ସଦ୍‌ବଂଶ ଜାତା ଏକ ସୁନ୍ଦରୀ କନ୍ୟା ସହିତ ତାଙ୍କର ବିବାହ ହେଲା ।

ରାଜା ସନ୍ତାନ ଉତ୍ପାଦନ ସବୁଦୃଷ୍ଟିରୁ ସମର୍ଥ ଥିଲେ ମଧ୍ୟ ତାଙ୍କର କୌଣସି ସନ୍ତାନ ହେଲେ ନାହିଁ । ଫଳରେ ରାଜା ଦ୍ୱିତୀୟ ବିବାହ କଲେ । ଦ୍ୱିତୀୟା ପତ୍ନୀଙ୍କଠାରୁ ମଧ୍ୟ କୌଣସି ସନ୍ତାନ ହେଲେ ନାହିଁ । ତେଣୁ ରାଜା ତୃତୀୟ, ଚତୁର୍ଥ ଏପରିକି ଲକ୍ଷେ କନ୍ୟା ବିବାହ କଲେ ମଧ୍ୟ କାହାରିଠାରୁ ଗୋଟିଏ ହେଲେ ସନ୍ତାନ ଜନ୍ମ ହେଲେ ନାହିଁ ।

ଏହା ଶୁଣି ଶୌନକ ପଚାରିଲେ—"ମହର୍ଷେ ! ଜଣେ ଲୋକ ଲକ୍ଷ୍ୟାଧିକ ପତ୍ନୀଙ୍କର କିପରି ସ୍ୱାମୀ ହୋଇପାରେ । ଏହା ଆମକୁ ଏକ କପୋଳ-କଳ୍ପିତ କାହାଣୀ ପରି ମନେ ହେଉଛି ।"

ଶୌନକଙ୍କ ପ୍ରଶ୍ନ ଶୁଣି ଉପେକ୍ଷା କଲଭଳି ସ୍ୱରରେ ମହର୍ଷି ସୂତ କହିଲେ—"ମହାଭାଗ ! ଲକ୍ଷେ ବା କୋଟିଏ କହିବାର ଅଭିପ୍ରାୟ ହେଉଛି, ତାଙ୍କର ବହୁରାଣୀ ଥିଲେ । ଶତ, ସହସ୍ର, ଅୟୁତ, ଲକ୍ଷ୍ୟ ଏସବୁ ବହୁବାଚକ ଶବ୍ଦ । ସମର୍ଥ ପୁରୁଷ ପକ୍ଷରେ ହଜାରେ ବିବାହ କରିବା କିଛି ବଡ଼କଥା ନୁହେଁ । ବର୍ତ୍ତମାନ କଳିଯୁଗରେ ମଧ୍ୟ ଜଣେ ଜଣେ ରାଜାଙ୍କର ଶହେ ବା ଦୁଇଶହ ପତ୍ନୀ ଥିବାର ଆମେ ଆଖି ଆଗରେ ଦେଖୁଛୁ । ହଁ ଶୁଣନ୍ତୁ ! ତାଙ୍କର ସୁନ୍ଦରୀ ସକୁଲୋପନ୍ନା ଅନେକ ରାଣୀ ଥିଲେ; କିନ୍ତୁ ସମସ୍ତେ ବନ୍ଧ୍ୟା । ପୁଅଟିଏ ବା ଝିଅଟିଏ କାହାରି ହେବଲ ହେଲ ନାହିଁ ।"

ମହାରାଜ ଚିତ୍ରକେତୁ ସବୁଦିଗରୁ ସୁଖୀ ଥିଲେ । ସ୍ୱୟଂ ସଦ୍‌ଗୁଣସମ୍ପନ୍ନ ଥିଲେ । ପୃଥିବୀରେ ସେ ଥିଲେ ସାର୍ବଭୌମରାଜା । ସର୍ବତ୍ର ତାଙ୍କ ଆଦେଶ ପାଳିତ ହେଉଥିଲା । ମନ୍ତ୍ରୀ, ପୁରୋହିତ, ଅମାତ୍ୟ ତଥା ରାଜକର୍ମଚାରୀ ତାଙ୍କ ପ୍ରତି ଅନୁକୂଳ ଥିଲେ । ପ୍ରଜାଗଣ ତାଙ୍କୁ ପ୍ରାଣଠାରୁ ବଳି ଅଧିକ ସ୍ନେହ ଓ ଆଦର କରୁଥିଲେ । ତେଣୁ ସବୁଦୃଷ୍ଟିରୁ ସେ ସୁଖୀ ଥିଲେ ମଧ୍ୟ କୌଣସି ସନ୍ତାନ ନ ଥିବାରୁ ତାଙ୍କ ମନ ବ୍ୟାକୁଳ ହେଉଥିଲା । ସମସ୍ତ ସୁଖଭୋଗ ତାଙ୍କୁ ଅସାର ମନେ ହେଉଥିଲା ।

ମୁନିଗଣ ! ପିଲାଛୁଆଙ୍କ ଗାର୍ହସ୍ଥ୍ୟ ଜୀବନ ସୁନ୍ଦର ଦେଖାଯାଏ ନାହିଁ । ସେ ଜଣେ ଭାଗ୍ୟବାନ୍ ଗୃହସ୍ଥ ଥିଲେ । କିନ୍ତୁ ଯାହା ଘରେ ପିଲାଛୁଆ ବାଳଗୋପାଳ ପରି ଏପାଖ ସେପାଖ ଘୂରି ବୁଲନ୍ତି, ସେମାନଙ୍କ ହସ, କାନ୍ଦ, ଖେଳରେ ଗୃହ ମୁଖରିତ ହୋଇଉଠେ ସେ ପ୍ରକୃତରେ ଭାଗ୍ୟଶାଳୀ ଗୃହସ୍ଥ । କମଳ ହୀନ ସରୋବର, ବିଧବା ନାରୀ, ଛନ୍ଦ, ଚାମର ବିନା ରାଜା, ବିଦ୍ୟାହୀନ ବ୍ରାହ୍ମଣ, ଚନ୍ଦ୍ର ହୀନ ରାତ୍ରି, ଦୀପ ବିନା ଅନ୍ଧାର ଘର ଯେପରି ଶୋଭା ପାଏନାହିଁ, ସେହିପରି ସନ୍ତାନ-ରହିତ ଗାର୍ହସ୍ଥ୍ୟ ଜୀବନ ସୁଖକର ମନେ ହୁଏନାହିଁ । ଯାହାର ପର୍ଯ୍ୟାପ୍ତ ଧନସମ୍ପଦ ଅଛି, ମାତ୍ର ଭୋଗ କରିବାପାଇଁ ଆଗକୁ କେହି ନାହିଁ, ତା'ର ପ୍ରଭୁଙ୍କୁ ପୁତ୍ରରୂପେ ମାନି ଉନବ୍ରତ ତାଙ୍କରି ସେବାରେ ଲାଗି ରହିବା ଉଚିତ । ନଚେତ୍ ଦାନଧର୍ମରେ ଧନସମ୍ପଦ ବ୍ୟୟ କରିବା ବାଞ୍ଛନୀୟ । କିନ୍ତୁ ଏହି ଦୁଇ କାର୍ଯ୍ୟରୁ ଯେ କୌଣସି କାର୍ଯ୍ୟ କରେ ନାହିଁ, କେବଳ ଧନ ସଂଗ୍ରହରେ ବ୍ୟସ୍ତ ରହେ, ନିଜେ ଖାଏନାହିଁ କି ଅନ୍ୟକୁ ଖାଇବାକୁ ଦିଏ ନାହିଁ, ସେ ବଞ୍ଚିଥିବା ଅବସ୍ଥାରେହିଁ ନରକ ଭୋଗ କରେ । ମରିବା ପରେ

ପ୍ରେତ ହୋଇ ସେହି ଧନସମ୍ପଦର ଗୃହପାଖରେ ଘୂରିବୁଲେ । ଶେଷରେ ନରକର ଅଗ୍ନିରେ ଦହ୍ୟମାନ ହୁଏ । ତେଣୁ ପୁତ୍ର ବିନା ଗତି ନାହିଁ, ଶାନ୍ତି ନାହିଁ କି ସୁଖ ମିଳେ ନାହିଁ ।

ମହାରାଜ ଚିତ୍ରକେତୁ ପୁତ୍ର ପ୍ରାପ୍ତି ନିମିତ୍ତ ବିବିଧ ଉପାୟ ଅବଲମ୍ବନ କଲେ । ଯେ ଯାହା ଉପଦେଶ ଦେଲି ସେ ଅନୁସାରେ ମହାରାଜ ଦାନ, ଧର୍ମ, ବ୍ରତ, ଉପବାସ ସବୁ କଲେ । କିନ୍ତୁ ପୁତ୍ରମୁଖ ଦେଖିବାର ସୌଭାଗ୍ୟ ତାଙ୍କ ଭାଗ୍ୟରେ ଘଟିଲି ନାହିଁ । ତେଣୁ ରାଜା ସବୁବେଳେ ଉଦାସ ରହିଲେ । କୌଣସି କାମରେ ତାଙ୍କ ମନ ଲାଗିଲି ନାହିଁ ।

ମୁନିଗଣ ! ଆପଣମାନେ ସୁଖୀ, କାରଣ ଆପଣମାନେ ସେସବୁ ଜଞ୍ଜାଳରେ ପଡ଼ି ନାହାନ୍ତି । ଥରେ ଏ ଜଞ୍ଜାଳ-ଜାଲରେ ପଡ଼ିଲେ ସେଥିରୁ ଭଗବାନ୍ ହେଲେ ବି ମୁକ୍ତି ପାଇବା କଷ୍ଟକର ହୋଇପଡ଼େ । ପୁତ୍ର ବିନା ଯେଉଁ ଦୁଃଖ ଜାତ ହୁଏ, ତାହା ଘରଦ୍ୱାର ନଥିବା ଆପଣମାନଙ୍କ ପରି ବାବାଜୀମାନେ ଆଦୌ ବୁଝି ପାରିବେ ନାହିଁ । ମୁଁ ମଧ୍ୟ ସେ ବିଷୟରେ ବିଶେଷ କିଛି ବର୍ଣ୍ଣନା କରିପାରିବି ନାହିଁ । ଯଦି ବା କରିବି ତାହା ନିରର୍ଥକ । କାରଣ, 'ଚଉଦ ବର୍ଷର ଝିଅ ପାଖରେ ଶ୍ୱଶୁର-ଘର ସୁଖ ଯେତେ ବଢ଼େଇ କରି କହିଲେ ମଧ୍ୟ ସେ ସେପରି କିଛି ବୁଝି ପାରେନାହିଁ', ସେହିପରି ଆପଣମାନେ କିଛି ଜାଣିପାରିବେ ନାହିଁ । ହେଉ, ଏକଥା ଏଇଠି ଥାଉ, ପରବର୍ତ୍ତୀ କଥା କହୁଛି ଆପଣମାନେ ଶୁଣନ୍ତୁ ।

## ଛପ୍‌ପୟ

କିନ୍ତୁ ନ ତନକେ ପୁତ୍ର ହତୀ ସବ ବନ୍ଧ୍ୟା-ରାନୀ ।
ୟାତେ ନୃପ କେ ଚିତ୍ତ ମାହିଁ ନିତ ରହେ ଗଲାନୀ ॥
ସବ ସୁଖ ବିଷବତ୍ ଲଗେଁ, ଘର ସମ ଶାସନ ଜଗତ ।
ନିଶି ଦିନ ଚିନ୍ତା ରହେ, ଭୂପକୂଁ ସୋବତ-ଜାଗତ ॥
ଦାନ, ଧର୍ମ, ବ୍ରତ, ନିୟମ, ଜପ, କରେ ପୁତ୍ର ହିତ ବହୁ ନୃପତି ।
କିନ୍ତୁ ନ ସନ୍ତତି ମୁଖ ଲଖ୍ୟୋ ତାତେ ଚିନ୍ତିତ ଭୟୋ ଅତି ॥



# ଅଙ୍ଗିରା ଓ ଚିତ୍ରକେତୁ ଆଖ୍ୟାନ

ତସ୍ମୈଏକଦା ତୁ ଭବନମଙ୍ଗିରା ଭଗବାନୃଷିଃ ।
ଲୋକାନନୁଚରନ୍ନେତାନୁପାଗଚ୍ଛଦ୍ ଯଦୃଚ୍ଛୟା ॥

(ଶ୍ରୀମଦ୍ଭାଗବତ— ୬ଷ୍ଠ ସ୍କନ୍ଧ-୧୪ଅ-୧୪ ଶ୍ଳୋ)

**ଛପ୍ପୟ**

ଏକ ଦିନା ନୃପ ଭବନ ଅଙ୍ଗିରା-ମୁନିବର ଆୟେ ।
କରି ସେବା ସତ୍କାର କନକ-ଆସନ ବୈଠାୟେ ॥
ପୁଛୀ ମୁନି କୁଶଲାତି ନୃପତି କୀ ନୀତି ବତାଇ ।
ପୁନି ପୁଛେ—ନୃପ ! ରହେଂୟା କମଲମୁଖ ଚେଁ ୟା ମୁରଝାଇ ॥
ଚିତ୍ରକେତୁ ବୋଲେ ବଚନ ! କହୁଁ କହା ପ୍ରଭୁ ବିଜ୍ଞ ହୋଁ ।
ତପ ସମାଧି ଅରୁ ଯୋଗ ତେଁ ଆପ ନାଥ ସର୍ବଜ୍ଞ ହୋଁ ॥

ସଂସାରରେ ସମସ୍ତ ବସ୍ତୁ ସୁଲଭ ହେଲେ ମଧ୍ୟ ସାଧୁସମାଗମ, ସତ୍ସଙ୍ଗ ଏକମାତ୍ର ଦୁର୍ଲଭ ବସ୍ତୁ । ଏ ସଂସାରରେ ଯାହା ଉପରେ ସାଧୁ ସନ୍ଥଙ୍କ ଦୟା ଅଛି ତା'ର ଜୀବନ ଧନ୍ୟ । ଗାର୍ହସ୍ଥ୍ୟ ରୂପକ ଅନ୍ଧକୂପରେ କେବଳ ଦୁଃଖ ବ୍ୟତୀତ ଆଉ କିଛି ନାହିଁ । ଏହା ବିପଦର ଭଣ୍ଡାର ଓ ଚିନ୍ତାରଶିର-ଘର । ପ୍ରତିଦିନ ନୂଆ ନୂଆ ଚିନ୍ତା ଲାଗିରହେ । ଆଜି ଏହା ନାହିଁ, ଏହା ଭାଙ୍ଗିଗଲା, ନଷ୍ଟ ହୋଇଗଲା, କାଲି ସେଠାକୁ ଯିବାର ଅଛି । ଆଜି ଏହା ଆଣିବାକୁ ପଡ଼ିବ । ଆଜି ସ୍ତ୍ରୀ ଅସୁସ୍ଥ, କାଲି ପିଲାଙ୍କ ସ୍ୱାସ୍ଥ୍ୟ ଖରାପ । ଆଜି ଭୋକ ଲାଗୁନାହିଁ, ଭୀଷଣ ଜ୍ୱର ଆସିଛି, ମୁଣ୍ଡ ବିନ୍ଧୁଛି ଇତ୍ୟାଦି ଇତ୍ୟାଦି । ସାରକଥା ହେଉଛି, ଏମିତି କୌଣସି ଏକ ମୁହୂର୍ତ୍ତ କଟେନାହିଁ ଯେତେବେଳେ କୌଣସି ଚିନ୍ତା ନାହିଁ । ଯେଉଁ ସମୟରେ ସାଧୁ, ସନ୍ଥ ଘରକୁ ଆସନ୍ତି, ସେତିକି ସମୟ ସାର୍ଥକ ହୁଏ । ମହାତ୍ମାମାନଙ୍କ ସଂସର୍ଗରେ ଯେତିକି ସମୟ କଟେ, ସେତିକି ସବୁଠୁ ମୂଲ୍ୟବାନ୍ ସମୟ ଓ ସୁଖକର ସମୟ । ବାକି ସମୟ କେବଳ ଦୁଃଖ ହିଁ ଦୁଃଖ ।

ପୂର୍ବ ଜନ୍ମର ପୁଣ୍ୟ ଫଳରେ, ସୌଭାଗ୍ୟ ଉଦୟ ହେଲେ ସାଧୁସଙ୍ଗ ମିଳେ । କେବେ କେବେ ସାଧୁପୁରୁଷ ଯାହା ଘରକୁ ଆସନ୍ତି, ସେ ଗୃହସ୍ଥ ଭାଗ୍ୟବାନ୍ ବୋଲି ବୁଝିବାକୁ

ହେବ । ଯାହାର ଘର ସାଧୁଙ୍କ ପଦଧୂଳିରେ ପବିତ୍ର ହୋଇଛି, ଯାହା ଘରେ ମହାତ୍ମାଙ୍କ ପାଦଧୂଆ ପାଣି ପଡ଼ିଛି ଏବଂ ଯାହାକୁ ସାଧୁସେବା କରିବାର ସୁଯୋଗ ମିଳିଛି ସେ ପ୍ରକୃତରେ ଭାଗ୍ୟବାନ୍ । ସାଧୁ ସମସ୍ତଙ୍କ ଘରକୁ ଯାଆନ୍ତିନାହିଁ । କେବଳ ଭାଗ୍ୟଶାଳୀ ଲୋକଙ୍କ ଘରକୁ ସେମାନେ ପବିତ୍ର କରିଥାନ୍ତି । ଅଳ୍ପ କେତେକ ପୁଣ୍ୟବାନ୍ ଲୋକଙ୍କୁ ସାଧୁସେବା କରିବାର ସୁଯୋଗ ମିଳେ ।

ଶାସ୍ତ୍ରକାରମାନେ ସାଧୁସେବାକୁ ଭଗବତ୍‌ସେବାଠାରୁ ବଳି ଅଧିକ ବୋଲି କହିଛନ୍ତି । ଭଗବତ୍ ସେବାରେ କେବଳ ଭଗବାନ୍‌ଙ୍କୁ ପୂଜା କରାଯାଏ; କିନ୍ତୁ ଭଗବଦ୍ ଭକ୍ତଙ୍କ ସେବାରେ ଭକ୍ତ ଓ ଭଗବାନ୍ ଉଭୟଙ୍କ ସେବା କରିବାର ସୁଯୋଗ ମିଳେ । ସୌଭାଗ୍ୟ ଉଦୟ ହେଲେ ସାଧୁସନ୍ଥ ଆମ ଘରେ ପଦାର୍ପଣ କରନ୍ତି । ସେମାନେ ନିଜ ପାଇଁ ନିଜେ ଭୋଗ ପ୍ରସ୍ତୁତ କରନ୍ତି । କିନ୍ତୁ ଯେଉଁମାନଙ୍କ ପାଇଁ ହଜାର ହଜାର ଟଙ୍କା ବ୍ୟୟ ହୁଏ, ସେମାନେ ପ୍ରକୃତ ସାଧୁ ନୁହନ୍ତି । ସାଧୁମାନେ ପ୍ରଥମେ ଭଗବାନ୍‌ଙ୍କୁ ଭୋଗ ଲଗାଇ ପରେ ପ୍ରସାଦ ସେବନ କରନ୍ତି । ଅନ୍ନ ଭୋଗ ହେଲେ ବି ତାହା ପ୍ରଥମେ ଭଗବାନ୍‌ଙ୍କୁ ସମର୍ପଣ କରାଯାଏ । ସେଥିପାଇଁ ତାହାକୁ ପ୍ରସାଦ କହନ୍ତି । ସେହି ପ୍ରସାଦର ଭକ୍ତଙ୍କ ଭୁକ୍ତଶେଷ ଅଂଶକୁ ମହାପ୍ରସାଦ କୁହାଯାଏ । ସେହିପରି ସାଧୁସନ୍ଥଙ୍କ ପାଇଁ ନିର୍ମିତ ମାଳା ପ୍ରଥମେ ଭଗବାନ୍‌ଙ୍କୁ ସମର୍ପଣ କରାଯାଏ । ତା'ପରେ ସେହି ମାଳା ସାଧୁମାନେ ଗ୍ରହଣ କରନ୍ତି । ସେହିପରି ବସ୍ତ୍ର, ଚନ୍ଦନ, ଅନୁଲେପନ ଆଦି ଉପଚାର ଦ୍ରବ୍ୟ ସାଧୁମାନଙ୍କୁ ଦିଆଯାଏ । ତେଣୁ ନିଜ ସେବା ଅପେକ୍ଷା ଭକ୍ତର ସେବାରେ ଭଗବାନ୍ ସନ୍ତୁଷ୍ଟ ହୁଅନ୍ତି ।

ଯେଉଁ ଭାଗ୍ୟବାନ୍ ଲୋକ ଘରେ ସାଧୁଲୋକ ରହନ୍ତି ସେ ଘର ଆଉ ସାଧାରଣ ଘର ହୋଇ ରହେ ନାହିଁ, ତାହା ତୀର୍ଥ ପାଲଟିଯାଏ । ସାଧୁଙ୍କ ପଦଧୂଳି ଯେଉଁଠି ପଡ଼ିଥିବ, ଯେଉଁଠି ଭଗବାନ୍‌ଙ୍କୁ ପୂଜା କରାଯାଇଥିବ. ଯେଉଁଠି ଭଗବତ୍ ନାମ କୀର୍ତ୍ତନ ହେଉଥିବ, ତାହା ଦେବଭୂମିରୂପେ ଗ୍ରହଣ ହୁଏ । ସାଧୁହିଁ ଏ ପୃଥିବୀକୁ ପବିତ୍ର କରନ୍ତି । ସାଧୁ ବିନା ସଂସାରର ମୂଲ୍ୟ କିଛି ନାହିଁ । ସାଧୁ ସାଧାରଣତଃ ପାପୀ ଘରକୁ ଯାଆନ୍ତି ନାହିଁ । କିନ୍ତୁ ଯଦି ଯାଆନ୍ତି ତେବେ ପାପୀର ଭାଗ୍ୟ ବଦଳିଯାଏ, ସେ ପୁଣ୍ୟାତ୍ମା ପାଲଟିଯାଏ । ସେ ସମସ୍ତ ଦୁଃଖର ସୀମା ପାରହୋଇ ସଂସାର ବନ୍ଧନରୁ ମୁକ୍ତିଲାଭ କରିଥାଏ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! "ମହାରାଜ ଚିତ୍ରକେତୁ ସନ୍ତାନବିନା ସର୍ବଦା ଉଦାସ ଓ ଚିନ୍ତିତ ରହୁଥିଲେ । ଦୈବବଶତଃ ଦିନେ ମହାମୁନି ଅଙ୍ଗିରା ଆସି ତାଙ୍କ ପାଖରେ ପହଞ୍ଚିଲେ । ମୁନିବର ଅଙ୍ଗିରାଙ୍କୁ ଆସୁଥିବାର ଦେଖି ମହାରାଜ ଚିତ୍ରକେତୁ ଆସନ ତ୍ୟାଗ କରି ଠିଆ ହେଲେ । ଆଗ୍ରହ ଓ ଆଦର ସହକାରେ ଯଥାବିଧି ମୁନିଙ୍କୁ ପୂଜା କଲେ । ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ଫୁଲ, ଫଳ ଦେଇ ମୁନିଙ୍କୁ ସନ୍ତୋଷବିଧାନ କଲେ । ଆତିଥ୍ୟ ଓ ସତ୍କାର ପରେ ମୁନିଙ୍କ ଆଦେଶ ପାଇ ରାଜା ତାଙ୍କ ପାଖରେ ଅପେକ୍ଷାକୃତ ନିମ୍ନ ଆସନରେ ହାତ ଯୋଡ଼ି ବସି ରହିଲେ । ରାଜାଙ୍କୁ ବିନୀତଭାବେ ବସିରହିବାର ଦେଖି

ମୁନିବର ଅଙ୍ଗିରା ତାଙ୍କର କୁଶଳ ପ୍ରଶ୍ନ ପଚାରିବାକୁ ଯାଇ କହିଲେ—ମହାରାଜ ! ଆପଣଙ୍କ ରାଜ୍ୟରେ ସମସ୍ତେ ସୁଖୀ ଅଛନ୍ତି ତ ? ରାଜା ହେଉଛନ୍ତି ବ୍ରହ୍ମାଣ୍ଡର ପ୍ରତୀକ । ବ୍ରହ୍ମାଣ୍ଡ ଯେପରି ପୃଥ୍ୱୀ, ଜଳ, ତେଜ, ବାୟୁ, ଆକାଶ, ଅହଂତତ୍ତ୍ୱ ଓ ମହତତତ୍ତ୍ୱ, ଏହିପରି ସାତୋଟି ଆବରଣରେ ସର୍ବଦା ଆବୃତ ଥାଏ । ସେହିପରି ସ୍ୱାମୀ, ଅମାତ୍ୟ, ଦୁର୍ଗ, ଜନପଦ, କୋଷ, ଦଣ୍ଡ ଓ ମିତ୍ର, ଏ ସାତୋଟି ଆବରଣରୂପେ ଅଭିହିତ । ଏମାନଙ୍କ ବ୍ୟତୀତ ରାଜା ରହି-ପାରନ୍ତି ନାହିଁ । ଏହାକୁ ସପ୍ତାଙ୍ଗ କହନ୍ତି । ଆପଣ ଏମାନଙ୍କ ସହିତ ସୁଖରେ ଅଛନ୍ତି ତ ?

ମହାରାଜ ହାତଯୋଡ଼ି ନମ୍ରତାର ସହିତ କହିଲେ— ଭଗବନ୍ ! ସବୁ କିଛି ଆପଣଙ୍କର ଦୟା । ରାଜ୍ୟ ପ୍ରକୃତି-ରୂପକ ଆବରଣ ମୋର ଅନୁକୂଳ ଅଛନ୍ତି ।

ମହର୍ଷି ଅଙ୍ଗିରା ପଚାରିଲେ—ରାଜ୍ୟ ପ୍ରକୃତି ବା ସପ୍ତାଙ୍ଗ ଯଦି ଆପଣଙ୍କ ଅନୁକୂଳ ଅଛନ୍ତି, ତେବେ ଆପଣଙ୍କ ରାଜ୍ୟରେ ସମ୍ପୂର୍ଣ୍ଣ ସୁଖ ବିରାଜିତ ଥିବ । ଆପଣଙ୍କର କୌଣସି ଚିନ୍ତା ରହିବା କଥା ନୁହେଁ । ନିଶ୍ଚିନ୍ତ ବ୍ୟକ୍ତିର ମୁଖକମଳ ସର୍ବଦା ପ୍ରସନ୍ନ ରହେ । କିନ୍ତୁ, ଆପଣଙ୍କ ମୁଖ କିଛିଟା ମ୍ଳାନ ଥିବାର ଦେଖୁଛୁ । ଆପଣଙ୍କ ହୃଦୟରେ ସନ୍ତୋଷ ନାହିଁ, ଚିତ୍ତରେ ପ୍ରସନ୍ନତା ନାହିଁ ଏବଂ ମୁଖମଣ୍ଡଳରେ କୌଣସି ଏକ ଗଭୀର ଦୁଃଖର ସ୍ପଷ୍ଟ ରେଖା ଅଙ୍କିତ ହୋଇ ରହିଛି ।

ଆଉ ଗୋଟିଏ କଥା, ଆପଣ ପ୍ରକୃତିର ଅନୁକୂଳ ହୋଇ ରହିଲେ ମଧ୍ୟ ଅନ୍ୟ କୌଣସି କାରଣରୁ ପ୍ରତିକୂଳ ଅବସ୍ଥା ସୃଷ୍ଟି ହେଲେ ମନରେ ଶାନ୍ତି ଆସିବ ନାହିଁ । ମୁଁ ଜାଣିବା ପାଇଁ ପଚାରୁଛି—ରାଣୀମାନେ ଆପଣଙ୍କ ପ୍ରତି ଅନୁକୂଳ ଆଚରଣ ପ୍ରଦର୍ଶନ କରୁଛନ୍ତି ତ ? ସେମାନଙ୍କ ମଧ୍ୟରେ କୌଣସି ପ୍ରକାର ଦୁର୍ଭାବନା ଓ ଦୁରାଗ୍ରହ ପ୍ରବେଶ କରି ନାହିଁ ତ ? ଆପଣଙ୍କ ଶାସନ ପଦ୍ଧତିରେ ପ୍ରଜାଗଣ ପ୍ରକୃତରେ ଆତ୍ମସନ୍ତୋଷ ଲାଭ କରୁଛନ୍ତି କି ନାହିଁ ? ଅମାତ୍ୟଗଣ ରାଜ୍ୟର ଆବଶ୍ୟକୀୟ ବ୍ୟବସ୍ଥା ସୁଚାରୁରୂପେ ସମ୍ପାଦନ କରୁଛନ୍ତି ତ ? ସେମାନେ ପ୍ରଜାମାନଙ୍କୁ ଠକିବା ଓ ଅନୁଚିତ ଲାଭ ଉଠାଇବାରେ ଅଭ୍ୟାସୀ ହୋଇଛନ୍ତି କି ନାହିଁ ? ସେବକମାନେ କର୍ତ୍ତବ୍ୟକୁ ଧର୍ମରୂପେ ପାଳନ କରି ଦେଶସେବା ବ୍ରତ ଆଚରଣ କରୁଛନ୍ତି ନା କେବଳ ଲୋଭରେ ଅହଙ୍କାର ସହିତ ଅମନଯୋଗୀ ହୋଇ ଯେନତେନ ପ୍ରକାରେଣ ରାଜକାର୍ଯ୍ୟ କରୁଛନ୍ତି ? ଅଯଥା ଓ ଅନାବଶ୍ୟକ ମିଥ୍ୟା କହି ବ୍ୟବସାୟୀମାନେ ଅଧିକ ଲାଭ ଆଶାରେ ଆବଶ୍ୟକୀୟ ଦ୍ରବ୍ୟ ଶୀଘ୍ର ଶୀଘ୍ର ବିକି କରିବାରେ ବ୍ୟଗ୍ର ହେଉଛନ୍ତି କି ? ସେମାନେ ଯଥାବିଧି ରାଜକର ଦେଉଛନ୍ତି କି ନାହିଁ ? ମନ୍ତ୍ରୀମାନେ ସର୍ବଦା ଉଚିତ ପରାମର୍ଶ ଦେଉଛନ୍ତି କି ନାହିଁ ? ସେମାନେ ରାଜ୍ୟର ଶତ୍ରୁଙ୍କ ସହିତ ଯୋଗାଯୋଗ ରଖିନାହାନ୍ତି ତ ? ଆପଣଙ୍କ ପୁରବାସୀ ତ ଆପଣଙ୍କର ଅନୁକୂଳ ଥିବେ ଓ ଆପଣଙ୍କୁ ଶ୍ରଦ୍ଧା କରୁଥିବେ ? ଦେଶବାସୀ ସମସ୍ତେ ଆପଣଙ୍କ ମଙ୍ଗଳ କାମନା କରୁଛନ୍ତି କି ନାହିଁ ? ରାଜକୁମାରମାନେ ଆପଣଙ୍କ ଆଜ୍ଞାନୁବର୍ତ୍ତୀ ରାଜକାର୍ଯ୍ୟରେ ସାହାଯ୍ୟ କରୁଛନ୍ତି ତ ?

ରାଜକୁମାର ଶବ୍ଦ ଶୁଣିବା ମାତ୍ରେ ରାଜାଙ୍କ ଉଦାସୀନତା ଆହୁରି ବଢ଼ିଗଲା । ସେ ଦୁଃଖିତ ହୋଇ କହିଲେ—"ପ୍ରଭୋ ! ଆପଣ ଯାହା ଯାହା କହିଲେ ସବୁକିଛି ମୋର ଅନୁକୂଳ ଅଛି । କେହି ମୋର ବିରୋଧାଚରଣ କରୁନାହାନ୍ତି । ସମସ୍ତେ ମୋତେ ପ୍ରାଣଠାରୁ ବଳି ଅଧିକ ଆଦର କରୁଛନ୍ତି ।"

ମହର୍ଷି ହଠାତ୍ ପଚାରିଲେ—"ତେବେ ଆପଣ ଏତେ ଚିନ୍ତିତ ଓ ଦୁଃଖୀ ଦେଖା-ଯାଉଛନ୍ତି କାହିଁକି ? ରାଜାଙ୍କ ଦୁଃଖର କାରଣ ମଧ୍ୟରେ ଶତ୍ରୁ ଆକ୍ରମଣ, ଶାସନର ବିରୁଦ୍ଧାଚରଣ, ଅକାଳ ବିପତ୍ତି, ଦୁର୍ଭିକ୍ଷ ଆଦି କିଛି ଆପଣଙ୍କ ରାଜ୍ୟରେ ଘଟିନାହିଁ । ତଥାପି ଆପଣ ସୁଖୀ ମନେ ହେଉନାହାନ୍ତି । ଆପଣ ଚିନ୍ତିତ ଅଛନ୍ତି । ଏଣୁ ଆପଣ ମୋତେ ଦୁଃଖର କାରଣ କ'ଣ କହନ୍ତୁ । ଆପଣଙ୍କ ବିପଦର ମୂଳ କାରଣ କ'ଣ ? ମୋର ଅନୁମାନ ଆପଣଙ୍କର ମନରେ କିଛି ଆଘାତ ଘଟିଛି । କାରଣ, ମନ ଦୁଃଖରେ ଥିଲେ ମଣିଷ ଦୁଃଖୀ ଓ ସୁଖରେ ଥିଲେ ସୁଖୀ ଦେଖାଯାଏ । ଯାହାର ମନ ଆୟତ୍ତରେ ଥାଏ, ତା'ର କୌଣସି ଦୁଃଖ ନ ଥାଏ । ସମସ୍ତେ ସଂଯତମନାର ବଶୀଭୂତ ହୁଅନ୍ତି । ଦେବତା, ଲୋକପାଳ, ଗନ୍ଧର୍ବ, କିନ୍ନର ସମସ୍ତେ ତା'ର ଆଦେଶ ପାଳନ କରନ୍ତି । ନିଜର ବନ୍ଧୁ, ହିତାଭିଳାଷୀ ଓ ଶୁଭଚିନ୍ତକମାନଙ୍କ ପାଖରେ ମନର ଦୁଃଖ ପ୍ରକାଶ କରିଦେଲେ ଦୁଃଖର ଭାର ଲାଘବ ହୁଏ, ମନରେ ଶାନ୍ତି ମିଳେ । ତେଣୁ ମୋ' ଆଗରେ ତୁମର ଦୁଃଖ ପ୍ରକାଶ କର ।"

ଶୁକଦେବ କହିଲେ—"ହେ ଉତ୍ତରା ନନ୍ଦନ ! ମୁନିମାନେ ତ୍ରିକାଳଜ୍ଞ, ସେମାନଙ୍କୁ କୌଣସି କଥା ଅଜଣା ନ ଥାଏ । ତଥାପି ରାଜାଙ୍କ ମୁଖରୁ ପ୍ରକୃତ କଥା ଜାଣିବା ପାଇଁ ସେ ପ୍ରଶ୍ନ କରୁଥିଲେ ।"

ଭଗବାନ୍ ଅଙ୍ଗିରା ମୁନି ପଚାରିବା ପରେ ଅଞ୍ଜଳିବଦ୍ଧ ହୋଇ ମହାରାଜ ଚିତ୍ରକେତୁ ବିନୀତଭାବେ କହିଲେ—"ଭଗବନ୍ ! ଆପଣ ସର୍ବଜ୍ଞ । ଆପଣ ସବୁକଥା ଜାଣି ମଧ୍ୟ ସାଧାରଣ ଲୋକ ପରି ଦୁଃଖର କାରଣ ମୋତେ ପଚାରୁଛନ୍ତି । ଭଗବନ୍ ! ଯେଉଁମାନେ ସମସ୍ତ ବାସନାରୁ ମୁକ୍ତ, ସେପରି ଯୋଗୀମାନଙ୍କଠାରେ ପ୍ରାଣୀର ଭିତର ବା ବାହାରର କୌଣସି କଥା ଏପରି ନାହିଁ ଯାହାକୁ ସେମାନେ ତପସ୍ୟା ବଳରେ ଓ ସମାଧି ପ୍ରଭାବରେ ଜାଣି ପାରନ୍ତି ନାହିଁ । ଆପଣଙ୍କୁ କେଉଁକଥା ଅଜଣା ଅଛି ? ହାତରେ ଥିବା ଅଁଳା କୋଳପରି ଆପଣ ଭୂତ, ଭବିଷ୍ୟ ଓ ବର୍ତ୍ତମାନ ତିନିକାଳର କଥା ଜାଣିପାରୁଛନ୍ତି । ତଥାପି ଆପଣ ମୋତେ ମୋର ମାନସିକ ବ୍ୟଥା କଥା ପଚାରୁଛନ୍ତି । ଆପଣ ତ୍ରିକାଳଜ୍ଞ ଅଟନ୍ତି, ଏ ବିଷୟରେ ମୋର ସନ୍ଦେହ ନାହିଁ; କିନ୍ତୁ ମୁଁ ଭାବୁଛି, ଆପଣ ମୋ' ମୁହଁରୁ ମୋ'ର ବ୍ୟଥା ଜାଣିବା ପାଇଁ ଇଚ୍ଛା କରୁଛନ୍ତି । ଏହା ଆପଣଙ୍କ ଆଦେଶ ବୋଲି ଭାବି ମୁଁ କହୁଛି । ଆପଣଙ୍କୁ କୌଣସି କଥା ଲୁଚାଇବି ନାହିଁ । ତଥାପି ଆପଣ ମୋତେ କହିବା ପାଇଁ ଆଦେଶ ଦେଉଥିବାରୁ ମୁଁ ତାହା ଲଂଘନ କରିବି କିପରି ?"

ମୁନିବର ! ମୁଁ ଏଠାରେ ସମସ୍ତ ପ୍ରକାର ସୁଖର ଅଧିକାରୀ ହୋଇଛି । କେହି କୌଣସି ପ୍ରକାର କଷ୍ଟ ମୋତେ ଦେଇ ନାହାନ୍ତି । ପ୍ରଜା, ପୁରୋହିତ, ଅମାତ୍ୟ, ମନ୍ତ୍ରୀ

ସମସ୍ତେ ମୋର ଅନୁକୂଳ ଅଛନ୍ତି । ମୋର ଏପରି କୌଣସି ଅଭିଳାଷ ନାହିଁ, ଯାହା ସେହି ମୁହୂର୍ତ୍ତିରେ ପୂରଣ ହୋଇନାହିଁ; କିନ୍ତୁ, ପ୍ରଭୋ ! ଏତେକଥା ଥିଲେ ମଧ୍ୟ ମୁଁ ସୁଖୀ ନୁହେଁ, ମନରେ ମୋର ଶାନ୍ତି ନାହିଁ । କ୍ଷୁଧା ତୃଷାରେ ବ୍ୟାକୁଳ ବ୍ୟକ୍ତି ଅନ୍ନ, ଜଳ ବିନା ଯେପରି ଖଟ, ପଲଙ୍କ, ମାଳା, ଚନ୍ଦନ, ସୁଗନ୍ଧ ଦ୍ରବ୍ୟରେ ତୃପ୍ତ ହୁଏନାହିଁ । ସେହିପରି ଏ ରାଜସମ୍ପତ୍ତି ମୋତେ ସୁଖକର ମନେ ହେଉନାହିଁ, ଯୁବତୀ ପତ୍ନୀ ଅଛି । ପତି ତା'ର ଖାଦ୍ୟପେୟ, ବସ୍ତ୍ର, ଆଭୂଷଣର ବ୍ୟବସ୍ଥା କରୁଛି । ଭୋଗ ସାମଗ୍ରୀ ଅଧିକମାତ୍ରାରେ ଯୋଗାଇ ଦିଆଯାଉଛି । ହଜାର ହଜାର ସେବିକା ଅଛନ୍ତି । କିନ୍ତୁ ପତି କେବେହେଲେ ଯୁବତୀ-ପତ୍ନୀ ପାଖକୁ ଯାଉନାହିଁ କି ସାକ୍ଷାତ୍ ବି ଦେଉନାହିଁ । ତେବେ ସୁଖ ଭୋଗର ସମସ୍ତ ସାମଗ୍ରୀ ପାଇ ପତି-ସାନ୍ନିଧ୍ୟ ବିନା ଯୁବତୀ-ପତ୍ନୀ ସୁଖୀ ହୋଇପାରିବ କି ? ସେହିପରି ମୋର ସବୁ ସମ୍ପଦ ଥାଇ ମଧ୍ୟ ପୁତ୍ର ବିନା ଏ ସଂସାର ମୋତେ ଅସାର ମନେ ହେଉଛି । ସନ୍ତାନ ବିନା ଅମୃତୋପମ ବିଷୟ ସୁଖଭୋଗ ମୋତେ ବିଷତୁଲ୍ୟ ମନେ ହେଉଛି ।"

ମହର୍ଷି ରାଜାଙ୍କ କଥା ଶୁଣି ପଚାରିଲେ—"ଆପଣଙ୍କର କେତେ ରାଣୀ ଅଛନ୍ତି ?"

ଦୁଃଖର ସହିତ ରାଜା କହିଲେ—"ଭଗବନ୍ ! ରାଣୀଙ୍କ ସଂଖ୍ୟା ପଚାରନ୍ତୁ ନାହିଁ, ସେମାନଙ୍କ ସଂଖ୍ୟା ଅସଂଖ୍ୟ । ମୋ'ର ଦୁର୍ଭାଗ୍ୟ, ବହୁ ଯତ୍ନର ସହିତ ମୁଁ ଗୋଟିଏ ପରେ ଗୋଟିଏ କରି ଅନେକ କନ୍ୟା ବିବାହ କଲି । କିନ୍ତୁ ମୋ' ଭାଗ୍ୟକୁ ସମସ୍ତେ ବନ୍ଧ୍ୟା ହୋଇଗଲେ । କାହାରି ହେଲେ କୌଣସି ସନ୍ତାନ ହେଲେନାହିଁ । ଆପଣ ଯଦି ମୋ' ପ୍ରତି ସଦୟ ହୋଇଛନ୍ତି, ମୋତେ ଆପଣଙ୍କର ସେବକ ବୋଲି ଭାବି ସୁଖୀ କରିବା ପାଇଁ ଇଚ୍ଛା କରୁଛନ୍ତି, ତେବେ ଅଧିକ ନହେଲେ ବି ଗୋଟିଏ ମାତ୍ର ପୁଅ ଦେବେ ବୋଲି ବିଶ୍ୱାସ କରୁଛି ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ଚିତ୍ରକେତୁଙ୍କ କଥା ଶୁଣି, ମୁନି କିଛି ସମୟ ଚିନ୍ତାଗ୍ରସ୍ତ ହୋଇ ପଡ଼ିଲେ ଏବଂ ରାଜାଙ୍କ କଲ୍ୟାଣ କିପରି ସାଧିତ ହେବ, ତାହା ଭାବିବାକୁ ଲାଗିଲେ ।"

## ଛପ୍ପୟ

ନିଷ୍କିଞ୍ଚନ ହେଂ ସନ୍ତ ଆଚରଣ ତମ ନାହିଁ ତିନକୁଁ ।
ଭୂତ ଭବିଷ୍ୟତ ବର୍ତ୍ତମାନ ଦିଖେ ସବ ଉନକେଁ ।।
ବଡ଼ଭାଗୀ ତେ ଗୃହୀ ସନ୍ତ ଜିନକେ ଘର ଆୱେଁ ।
କରି ପୂଜା ସ୍ୱୀକାର ବିଷ୍ଣୁ ପରସାଦୀ ପାୱେଁ ।।
ହୋହିଁ ଦୁରିତ ଦୁଃଖ ଦୂର ସବ, କରେଂ କୃପା ଯତି ତେ କହିଁ ।
ଘଟ-ଘଟ କୀ ଜାନତ ସକଲ, ଅବିଦିତ ତିନକୁଁ କଛୁ ନହିଁ ।।

●

## ମୁନିଙ୍କୁ ଚିତ୍ରକେତୁଙ୍କ ସନ୍ତାନ ପ୍ରାର୍ଥନା

ଲୋକପାଳୈରପି ପ୍ରାର୍ଥ୍ୟାଃ ସାମ୍ରାଜ୍ୟୈଶ୍ୱର୍ଯ୍ୟ ସମ୍ପଦଃ ।
ନ ନନ୍ଦୟନ୍ତ୍ୟପ୍ରଜଂ ମାଂ କ୍ଷୁତ୍ତୃଟ୍‌କାମମିବାପରେ ॥
ତତଃ ପାହି ମହାଭାଗ ପୂର୍ବୈଃ ସହ ଗତଂ ତମଃ ।
ଯଥା ତରେମ ଦୁସ୍ତାରଂ ପ୍ରଜୟା ତଦ୍‌ବିଧେହି ନଃ ॥

(ଶ୍ରୀମଦ୍ଭାଗବତ-୬ଷ୍ଠ ସ୍କନ୍ଧ-୧୪ଅ-୨୫, ୨୬ଶ୍ଳୋ)

### ଛପ୍‌ପୟ

ତୋତ ଆଜ୍ଞା ମାନ ଦୁଃଖ କୋ ହେତୁ ବତାଊଁ ।
ପ୍ରଜାନାଥ ସମ୍ରାଟ୍ ଜନେଶ୍ୱର ହୌଁ କହଲାଊଁ ॥
ସବ ସୁଖ ମେରେ ୟହାଁ କିନ୍ତୁ ସୁତ ଏକ ନ ସ୍ୱାମୀ ।
ତାଇ ତେଁ ଅତି ଦୁଃଖୀ ରହୁଁ ସୁନି ଅନ୍ତର୍ଯ୍ୟାମୀ ॥
ପ୍ରଭୁ ସର୍ବଜ୍ଞ ସମର୍ଥ ହୋ, କୃପା କୃପାନିଧି କରେ ତୁମ୍ ।
ଦେଉ ଏକ ସୁତ ମନୋହର, ବନେ ଲୋକ ପରଲୋକ ମମ ॥

ସ୍ୱାର୍ଥପର ଲୋକେ ଗୃହସ୍ଥଙ୍କ ଘରକୁ ଯାଆନ୍ତି, କାରଣ ସେମାନେ ସର୍ବଦା ସ୍ୱାର୍ଥରେ ହିଁ ସଂଲଗ୍ନ ଥାଆନ୍ତି । ମଣିଷ ଯେଉଁ ପ୍ରକୃତିର ହେବ, ତା'ର ସମପ୍ରକୃତିର ଲୋକଙ୍କ ସହିତ ସମ୍ବନ୍ଧ ଓ ସଂସର୍ଗ ରହିବ । କୌଣସି ଭାଗ୍ୟବାନ୍, ପୁଣ୍ୟାତ୍ମାଙ୍କ ଘରକୁ ଆସିଲେ ସାଧୁଲୋକ ତା'ର କଲ୍ୟାଣ ସାଧନ କରନ୍ତି । ତା'ର ସେବା ଓ ଉପଚାରକୁ ସ୍ୱୀକାର-ପୂର୍ବକ ତାକୁ କୃତାର୍ଥ କରନ୍ତି । ସାଧୁଙ୍କ ଦର୍ଶନରେ ପାତକ ଦୂର ହୁଏ । ସାଧୁ ସାକ୍ଷାତ୍କାର କେବେ ବୃଥା ହୁଏ ନାହିଁ । ତାହା ସଫଳ ହେବ ହିଁ ହେବ । ସାଧୁମାନେ କେବେହେଲେ ସଂସାରର ଅନିଷ୍ଟ ଚିନ୍ତା କରନ୍ତି ନାହିଁ । ଅକାରଣ ଅପକାର କରୁଥିବା ଲୋକକୁ ମଧ୍ୟ ସେ ଦୟାପ୍ରଦର୍ଶନ କରନ୍ତି । ଶତ୍ରୁତା ଆଚରଣ କରୁଥିବା ଲୋକକୁ ସେ ଆଦର କରନ୍ତି ଏବଂ ନିନ୍ଦୁକ ବ୍ୟକ୍ତିକୁ ସ୍ନେହ କରନ୍ତି । ଉପଦେଶ ଗ୍ରହୀତାକୁ ଯେପରି ଦେଖନ୍ତି ତାକୁ ଉପଯୋଗୀ ହେଲାଭଳି ଉପଦେଶ ଦିଅନ୍ତି । ବିଶେଷ ଅଧିକାରୀର ଦୁଃଖ ଦୂର କରିବା ସଙ୍ଗେ ସଙ୍ଗେ ତାକୁ ପରମାର୍ଥ ସେବାରେ ନିଯୁକ୍ତ କରନ୍ତି । ଅର୍ଥାର୍ଥୀକୁ ଅର୍ଥ, ମୋକ୍ଷାର୍ଥୀକୁ ମୋକ୍ଷ ଏବଂ

ଜ୍ଞାନୀଙ୍କୁ ଭଗବଦ୍‌ଭକ୍ତି ଉପଦେଶ ଦିଅନ୍ତି । ହରି କଥା ଶୁଣାଇ ଭକ୍ତମାନଙ୍କୁ ସୁଖୀ କରନ୍ତି । ସେମାନଙ୍କଦ୍ୱାରା କାହାରି କେବେ କୌଣସି ଅନିଷ୍ଟ ବା ଅହିତ ହୁଏନାହିଁ । ପରୋପକାର ହିଁ ସେମାନଙ୍କର ଏକମାତ୍ର ବ୍ରତ । ପରର କାର୍ଯ୍ୟସାଧନ କରୁଥିବାରୁ ସେମାନଙ୍କୁ ସନ୍ଥ କୁହାଯାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ରାଜା ଚିତ୍ରକେତୁ ଯେତେବେଳେ ପୁତ୍ର ପ୍ରଦାନ ପାଇଁ ମୁନିଙ୍କୁ ପ୍ରାର୍ଥନା କଲେ, ସେତେବେଳେ ମହର୍ଷି ଅଙ୍ଗିରା କହିଲେ—ମହାରାଜ ! ସବୁକିଛି ଭାଗ୍ୟ ଅନୁସାରେ ମିଳେ । ମନେହୁଏ ଆପଣଙ୍କ ଭାଗ୍ୟରେ ପୁତ୍ରସୁଖ ନାହିଁ । ସେଥିପାଇଁ ଏତେ ରାଣୀ ଥିଲେ ମଧ୍ୟ କାହାରି ଗୋଟିଏ ହେଲେ ସନ୍ତାନ ଜନ୍ମ ହେଲେ ନାହିଁ । ତେଣୁ ଆପଣ ଭଗବାନ୍‌ଙ୍କ ନାମ ଭଜନ କରି ପୁତ୍ର-ପୌତ୍ରଙ୍କ ମୋହ ମମତା ପରିତ୍ୟାଗ କରନ୍ତୁ ।"

ମହାରାଜ ଚିତ୍ରକେତୁଙ୍କ ମନ ପୁତ୍ରପ୍ରାପ୍ତି ପାଇଁ ବ୍ୟାକୁଳ ହେଉଥିଲା । ସେ ପ୍ରବଳ ପୁତ୍ର କାମନାରେ ମୁହ୍ୟମାନ ହୋଇ କହିଲେ—ପ୍ରଭୋ ! ମୋର ଆଉ କୌଣସି ଅଭିଳାଷ ନାହିଁ । ପୁତ୍ର ବିନା ମୋତେ ଶାନ୍ତି ମିଳିବ ନାହିଁ କି ମୋର ମନ ଭଗବାନ୍‌ଙ୍କ ସେବାରେ ନିୟୋଜିତ ହୋଇପାରିବ ନାହିଁ । ଯେପରି ହେଉ ମୋତେ ପୁତ୍ରଟିଏ ପ୍ରଦାନ କରନ୍ତୁ । ଭାଗ୍ୟ କଥା ଛାଡ଼ନ୍ତୁ, ଆପଣଙ୍କ ପରି ସାଧୁ ଚାହିଁଲେ ଭାଗ୍ୟ ମୋର ପରିବର୍ତ୍ତନ କରିବା ପାଇଁ ବେଶି ସମୟ ଲାଗିବ ନାହିଁ । ଆପଣ ଇଚ୍ଛା କଲେ ବିଧିର ଲେଖନ ବଦଳିଯିବ । ସନ୍ଥମାନେ ପ୍ରାରବ୍ଧକୁ ମଧ୍ୟ ପରିବର୍ତ୍ତନ କରିପାରନ୍ତି । ମୁଁ ଏ ବିଷୟରେ ସାଧୁଙ୍କଠାରୁ ଏକ କାହାଣୀ ଶୁଣିଛି । ଆପଣ ଆଦେଶ ଦେଲେ କହିବି ।

ରାଜାଙ୍କ ନିବେଦନ ଶୁଣି ମହର୍ଷି ଅଙ୍ଗିରା କହିଲେ—"ରାଜନ୍ ! ସାଧୁଙ୍କ ମହିମା ସମ୍ବନ୍ଧରେ ଆପଣ ନିଶ୍ଚୟ କହିବେ । କାରଣ ସଂସାରରେ ଦୁଇଟି କଥାହିଁ ଶ୍ରବଣୀୟ । ତାହା ହେଉଛି ଶ୍ରୀହରି ଚରିତ୍ର ଓ ହରିଦାସଙ୍କ ଚରିତ୍ର । ହଁ, କେଉଁ ସାଧୁ କିପରି ଭାଗ୍ୟ ଓ ବିଧିର ବିଧାନକୁ ପରିବର୍ତ୍ତନ କରିଥିଲେ ତାହା କହନ୍ତୁ ।"

ମହର୍ଷି ଅଙ୍ଗିରାଙ୍କ ଆଦେଶ ପାଇ ମହାରାଜ ଚିତ୍ରକେତୁ କହିଲେ—"ପ୍ରଭୋ ! ମୁଁ କଥାକାରମାନଙ୍କ ମୁହଁରୁ ଏହି ପ୍ରାଚୀନ କାହାଣୀଟି ଶୁଣିଥିଲି । ଜଣେ ବଡ଼ ଧନୀ ଥିଲେ । ତାଙ୍କର ପ୍ରଚୁର ଧନସମ୍ପଦ ଥିଲା । ଚାରିଆଡ଼େ ତାଙ୍କର ବେପାର ବାଣିଜ୍ୟ ଚାଲିଥିଲା । ଘରେ ତାଙ୍କର ସମସ୍ତ ପ୍ରକାର ସୁଖଭୋଗର ସାମଗ୍ରୀ ପୂରି ରହିଥିଲା । କିନ୍ତୁ ସେ ଥିଲେ ଅପୁତ୍ରିକ । ଧନିକଙ୍କର ପତ୍ନୀ ଥିଲେ ଧର୍ମପରାୟଣା । ସେ ପ୍ରାଣଠାରୁ ବଳି ନିଜର ସ୍ୱାମୀଙ୍କୁ ଆଦର କରୁଥିଲେ । ପତିଙ୍କ ଇଚ୍ଛାହିଁ ତାଙ୍କର ଇଚ୍ଛା ବୋଲି ସେ ଭାବୁଥିଲେ । ଧନିକ ଥିଲେ ସାଧୁଙ୍କ ଭକ୍ତ । ଯେ କୌଣସି ସାଧୁଙ୍କୁ ସେ ଦେବତା ଜ୍ଞାନରେ ପୂଜା କରୁଥିଲେ । ଧନିକ ଦମ୍ପତି ସନ୍ତାନ ବିନା ସର୍ବଦା ମୋ' ପରି ଚିନ୍ତିତ ରହୁଥିଲେ । ଥରେ ବୁଲୁବୁଲୁ ଦେବର୍ଷି ନାରଦ ଦୈବାତ୍ ଶ୍ରେଷ୍ଠୀଙ୍କ ଘରେ ପଦାର୍ପଣ କଲେ । ପତିପତ୍ନୀ ନାରଦଙ୍କୁ ଦେଖି ପରମ

ସନ୍ତୋଷ ଲାଭକରି ଯଥୋଚିତ ପୂଜା ଓ ସତ୍କାର କଲେ । ଧନିକ ପତିପତ୍ନୀଙ୍କ ସେବାରେ ସନ୍ତୁଷ୍ଟ ହୋଇ ଦେବର୍ଷି ନାରଦ ତାଙ୍କୁ କୁଶଳ ପ୍ରଶ୍ନ ପଚାରିଲେ ।

ନିଜର କୁଶଳ ଜଣାଇ ଶ୍ରେଷ୍ଠୀ ପଚାରିଲେ—"ପ୍ରଭୋ ! ଆପଣ କେଉଁଠୁ ଆସିଲେ ଏବଂ ବର୍ତ୍ତମାନ କୁଆଡ଼େ ଯିବେ ?"

ନାରଦ କହିଲେ—"ବାବୁ ! ମର୍ତ୍ତ୍ୟଲୋକରେ ଋଷିମାନଙ୍କର ଏକ ସମ୍ମିଳନୀ ବସିଥିଲା । ସେଥିରେ ଯୋଗ ଦେବା ପାଇଁ ଯାଇଥିଲି । ଏବେ ଭଗବାନ୍ ବିଷ୍ଣୁଙ୍କ ଦର୍ଶନ କରିବା ପାଇଁ ବିଷ୍ଣୁଲୋକକୁ ଯାଉଛି ।"

ଧନିକ ବିନୀତ ହୋଇ ନିବେଦନ କଲେ—"ପ୍ରଭୋ ! ଆପଣ ତ ଭଗବାନ୍‌ଙ୍କ ପାଖ ଲୋକ । ପରୋପକାର ଆପଣଙ୍କର ବ୍ରତ । ପ୍ରତିଦିନ ଭଗବାନ୍‌ଙ୍କ ପାଖକୁ ଯିବା ଆସିବା କରୁଛନ୍ତି । ମୋର ଛୋଟିଆ କାମଟିଏ କରିପାରିବେ କି ?"

ନାରଦ କହିଲେ—"ହଉ କୁହ, ମୁଁ ତୁମର କି କାମ କରାଇ ଆଣିବି । ମୋଦ୍ୱାରା ଯାହା ସମ୍ଭବ ହେବ ମୁଁ କରିବି ।"

ଶ୍ରେଷ୍ଠୀ କହିଲେ—"ଭଗବନ୍ ! ଆପଣଙ୍କଦ୍ୱାରା ସମ୍ଭବ ଅସମ୍ଭବ କିଣ ଅଛି ? ଆପଣ ସବୁ ବିଷୟରେ ସମର୍ଥ, ଯାହା ଚାହିଁବେ ତାହା କରିପାରିବେ । ମୋର ଏକ ବଡ଼ ଦୁଃଖ ଅଛି । ମୋର ଏହି ପର୍ଯ୍ୟାପ୍ତ ଧନସମ୍ପଦ ଯାହା ଆପଣ ଦେଖୁଛନ୍ତି ସେସବୁ ଭୋଗ କରିବା ପାଇଁ ଆଗକୁ କେହି ନାହାନ୍ତି । ପିତୃଗଣଙ୍କୁ ପାଣି ଦେବା ପାଇଁ ମୋର ପୁତ୍ର ନାହିଁ । ଏ ସମସ୍ତ ସମ୍ପଦ ଭାଗ୍ୟରେ ଥିଲେ ମିଳେ । ମୋ' ଭାଗ୍ୟରେ ପୁତ୍ର ଅଛି କି ନାହିଁ, କେବଳ ସେତକ ଜାଣିବା ପାଇଁ ମୋର ଇଚ୍ଛା । ଯଦି ପୁତ୍ର ଜନ୍ମ ହେବାର ନାହିଁ, ତେବେ ନିଶ୍ଚିନ୍ତ ହୋଇ ମୁଁ ସାଧୁସେବାରେ ଜୀବନ ଅତିବାହିତ କରିବି । ସୁବିଧା ହେଲେ ଆପଣ ଏତିକ କଥା ଭଗବାନ୍‌ଙ୍କୁ ପଚାରି ବୁଝିଆସିବେ । ଯଦି ପୁତ୍ର ହେବ ତେବେ କେବେ ହେବ, ତେବେ ସେତକ ମଧ୍ୟ ପଚାରିବେ । ଏ ପ୍ରକାର ଦ୍ୱିଧାରେ ପଡ଼ି ମନ ମୋର ବ୍ୟାକୁଳ ହେଉଛି ।"

ନାରଦ କହିଲେ—"ହଉ, ଭଲକଥା । ମୁଁ ଆଜି ଯାଇ ଭଗବାନ୍‌ଙ୍କୁ ଏହା ପଚାରିବି ଏବଂ ଆଜି ହିଁ ଆସି ତୁମକୁ ଏହାର ଉତ୍ତର ଜଣାଇବି ।" ଏହା କହି ନାରଦ ବୀଣା ବଜାଇ ବିଷ୍ଣୁଲୋକ ଆଡ଼କୁ ଗଲେ । ବିଷ୍ଣୁଲୋକରେ ପହଞ୍ଚି ସେ ଭଗବାନ୍‌ଙ୍କୁ ସ୍ତୁତି କଲେ, ଗୀତ ଗାଇଲେ ଓ ନାମକୀର୍ତ୍ତନ କଲେ । ନାରଦଙ୍କ ସ୍ତୁତି ଶୁଣି ଭଗବାନ୍ ପ୍ରସନ୍ନ ହୋଇ ପଚାରିଲେ—"ନାରଦ ! ଏବେ ତୁମେ କେଉଁଠାରୁ ଆସିଲ ?"

ଭଗବାନ୍‌ଙ୍କ ପ୍ରଶ୍ନ ଶୁଣି ନାରଦ ଉତ୍ସୁକ ହୋଇ କହିଲେ—"ପ୍ରଭୋ ! ମୁଁ ଏବେ ମର୍ତ୍ତ୍ୟଲୋକରୁ ଆସୁଛି । ଆପଣଙ୍କୁ ଏକ ବିଶେଷ କଥା ପଚାରିବାର ଅଛି । ମର୍ତ୍ତ୍ୟରେ ଯେଉଁ ସାଧୁଭକ୍ତ ଓ ଆପଣଙ୍କ ସେବକ ଶ୍ରେଷ୍ଠୀ ବ୍ୟକ୍ତି ଜଣକ ଅଛି ତା'ର କୌଣସି ସନ୍ତାନ ନାହିଁ । ସେଥିପାଇଁ ପତିପତ୍ନୀ ଦୁହେଁ ସବୁବେଳେ ଚିନ୍ତିତ ରହୁଛନ୍ତି । ତାଙ୍କର ପୁଅଝିଅ କିଛି ହେବେ କି ନାହିଁ ଆଉ କେବେ ହେବେ ?"

ନାରଦଙ୍କ କଥା ଶୁଣି ଭଗବାନ୍ ହସି ହସି କହିଲେ—"ନାରଦ ! ଆପଣ ସର୍ବଦା ଅନ୍ୟ ଚନ୍ତାରେ ବ୍ୟସ୍ତ । ମହାଶୟ ! ସେହି ଶ୍ରେଷ୍ଠୀର କେବଳ ଏ ଜନ୍ମରେ ନୁହେଁ ଆଗାମୀ ସାତଜନ୍ମ ପର୍ଯ୍ୟନ୍ତ ସନ୍ତାନ ହେବେ ନାହିଁ । ଏହା ତାଙ୍କ ଭାଗ୍ୟରେ ଲେଖା ହୋଇଛି । ଭାଗ୍ୟକୁ ଅନ୍ୟଥା କରିବା ପାଇଁ ମୋର ସାମର୍ଥ୍ୟ ନାହିଁ ।"

ଭଗବାନଙ୍କଠାରୁ ଉତ୍ତର ପାଇ ନାରଦ ସଙ୍ଗେ ସଙ୍ଗେ ଯାଇ ମର୍ତ୍ତ୍ୟରେ ସେହି ଶ୍ରେଷ୍ଠୀକୁ ଦେଖା କରି କହିଲେ—"ବାବୁ ! ବଡ଼ ଦୁଃଖର କଥା, ଆପଣଙ୍କର କୌଣସି ସନ୍ତାନ ହେବ ନାହିଁ । କେବଳ ଏ ଜନ୍ମରେ ନୁହେଁ, ଆଗାମୀ ସାତ ଜନ୍ମ ମଧ୍ୟରେ ବି ତୁମର ସନ୍ତାନ ହେବ ନାହିଁ ।"

ଧନକ କହିଲେ—"ଭଗବନ୍ ! ଭଲ ହେଲା । କଥାଟା ଜଣାପଡ଼ିଲା । ଏବେ ଆଉ ଦ୍ୱିଧା କରିବାର କିଛି ନାହିଁ । ବର୍ତ୍ତମାନ ମୋର ଏ ଧନସମ୍ପଦ ସାଧୁସନ୍ଥଙ୍କ ସେବା ଓ ପରୋପକାରରେ ଲଗାଇଦେବି ।" ଏହାଶୁଣି ନାରଦ ଚାଲିଗଲେ । ଶ୍ରେଷ୍ଠୀ ବିଦ୍ୟାର୍ଥୀମାନଙ୍କ ପାଇଁ ବିଦ୍ୟାଳୟ, ଅନାଥ ବାଳକ ବାଳିକା ପାଇଁ ଆଶ୍ରମ, ଦୀନଦରିଦ୍ରଙ୍କ ପାଇଁ ଅନ୍ନଛତ୍ର, ଦାତବ୍ୟ ଔଷଧାଳୟ, ରୋଗୀମାନଙ୍କ ସେବାପାଇଁ ଚିକିତ୍ସାଳୟ ପ୍ରଭୃତି ଜନହିତକର କାର୍ଯ୍ୟରେ ଲାଗିପଡ଼ିଲେ । ତାଙ୍କ ଘରକୁ ଆସୁଥିବା ସାଧୁସନ୍ଥମାନଙ୍କୁ ଦେବତା ପରି ପୂଜା ଓ ସେବା କଲେ ।

ଥରେ ବୁଲି ବୁଲି ଜଣେ ବୈରାଗୀ, ଭଗବଦ୍‌ଭକ୍ତ ଅବଧୂତ ବାବାଜୀ ଆସି ଧନକ ଘରେ ପହଞ୍ଚିଲେ । ସେ ଦିନରାତି ସବୁବେଳେ କୃଷ୍ଣନାମ କୀର୍ତ୍ତନ କରୁଥିଲେ । ଦେହରେ ତାଙ୍କର ଏକମାତ୍ର କୌପୀନ ଥିଲା । ଶ୍ରେଷ୍ଠୀ ପତିପତ୍ନୀ ଅବଧୂତ ବାବାଙ୍କର ସେବା ଶୁଶ୍ରୂଷା କଲେ । ପତିପତ୍ନୀଙ୍କ ଭକ୍ତି ଓ ସେବାରେ ସନ୍ତୁଷ୍ଟ ହୋଇ ଅବଧୂତ ପଚାରିଲେ—"ତୁମ ଘରେ ତ କୌଣସି ପିଲାଛୁଆ ଦେଖାଯାଉନାହାନ୍ତି ।"

ଅତି ଦୁଃଖରେ ଅବରୁଦ୍ଧ କଣ୍ଠରେ ଶ୍ରେଷ୍ଠୀର ସ୍ତ୍ରୀ କହିଲା—"ଭଗବନ୍ ! ଆମର ସେ ଭାଗ୍ୟ କାହିଁ ? ପୂର୍ବ ଜନ୍ମରେ କିଛି କରିଥିଲେ ସିନା ଏ ଜନ୍ମରେ ପୁତ୍ରର ମୁଖ ଦେଖିବାକୁ ମିଳିଥାନ୍ତା ।"

ମହାତ୍ମାଙ୍କ ମନରେ ଦୟା ଜାତ ହେଲା । ସେ କହିଲେ—"ଠିକ୍ ଅଛି, ଯାଅ, ତୁମର ପୁତ୍ରଟିଏ ହେବ ।"

ଶ୍ରେଷ୍ଠୀଙ୍କ ପତ୍ନୀ ଚମକି ପଡ଼ି ପଚାରିଲେ—"ପ୍ରଭୋ ! ଆମର ପୁଅଟିଏ, ଏହା ଆପଣ କହୁଛନ୍ତି କିପରି ?"

ସାଧୁ କହିଲେ—"କ'ଣ ତୁମେ ଗୋଟିଏ ପୁଅରେ ସନ୍ତୁଷ୍ଟ ନୁହଁ, ଠିକ୍ ଅଛି, ତୁମର ଦୁଇପୁଅ ହେବେ ।"

ଧନକଙ୍କ ସ୍ତ୍ରୀ ଶୀଘ୍ରତାର ସହିତ କହିଲେ—"ନାଁ, ଭଗବନ୍ ! ମୋର କହିବାର ଅଭିପ୍ରାୟ ଏକ ଦୁଇରେ ନୁହେଁ, କିନ୍ତୁ ମୋ'ର ପୁତ୍ର ହେବ, ଏହା କିଣ ସତରେ ସମ୍ଭବ ?"

ମହାତ୍ମା କହିଲେ—"ହେବ ବୋଲି କହୁଛି, ତେଣୁ ନିଶ୍ଚୟ ହେବ, ଦୁଇ ନୁହେଁ ତିନିପୁଅ ହେବ ।"

ଶ୍ରେଷ୍ଠୀ ଆଉ ନୀରବ ରହିପାରିଲେ ନାହିଁ । ସେ କହିଲେ—"ଭଗବନ୍ ! ଦେବର୍ଷି ନାରଦ ଆସିଥିଲେ । ମୋ'ଭାଗ୍ୟରେ ସନ୍ତାନ ନାହିଁ ବୋଲି ସେ କହିଥିଲେ ।" କାରଣ···

କଥା ମଝିରେ ମହାତ୍ମା କହିଲେ—"ନାରଦଙ୍କ କଥା ଛାଡ଼, ଏବେ ମୁଁ କହୁଛି ତୁମର ଚାରିପୁଅ ହେବେ ।"

ଧନିକ ଆଶ୍ଚର୍ଯ୍ୟ ହୋଇଗଲେ । ସେ କହିଲେ—"ଭଗବନ୍ ! ଆପଣ ମୋ'କଥା ଦୟାକରି ଶୁଣନ୍ତୁ । ନାରଦ ଭଗବାନ୍‌ଙ୍କ ପାଖକୁ ଯାଉଥିଲେ । ମୋ' ଭାଗ୍ୟରେ ସନ୍ତାନ ଅଛନ୍ତି କି ନାହିଁ ଭଗବାନ୍‌ଙ୍କୁ ପଚାରି କହିବା ପାଇଁ ମୁଁ ନାରଦଙ୍କୁ ଅନୁରୋଧ କରିଥିଲି । ନାରଦଙ୍କଠାରୁ ଜାଣିଲି ଭଗବାନ୍ କହିଲେ ଏ ଜନ୍ମରେ ନୁହେଁ ସାତଜନ୍ମରେ ମଧ୍ୟ ସନ୍ତାନ ହେବ ନାହିଁ ।"

ଏହା ଶୁଣି ସାଧୁ ମହାତ୍ମା କହିଲେ—"ମୁଁ କହୁଛି ତୁମର ସାତୋଟି ପୁଅ ହେବେ । ଶ୍ରେଷ୍ଠୀ ଓ ତାଙ୍କ ପତ୍ନୀ ନୀରବ ହୋଇଗଲେ । ମହାତ୍ମା ନିଜ ଇଚ୍ଛା ଅନୁସାରେ ଅନ୍ୟତ୍ର ଚାଲିଗଲେ । କିଛିଦିନ ପରେ ଶ୍ରେଷ୍ଠୀଙ୍କ ପତ୍ନୀ ଗର୍ଭବତୀ ହେଲେ ଏବଂ ଯଥା ସମୟରେ ତାଙ୍କର ସୁନ୍ଦର ପୁଅଟିଏ ଜନ୍ମ ହେଲା । ଏହିପରି ସାତବର୍ଷରେ ସାତୋଟି ପୁଅ ଜନ୍ମ ଗ୍ରହଣ କଲେ । ଉକ୍ତ ଦମ୍ପତିଙ୍କ ଆନନ୍ଦର ସୀମା ରହିଲା ନାହିଁ । ପିଲାମାନେ ସୁନ୍ଦର ଓ ସୁଗୁଣ-ସମ୍ପନ୍ନ ହୋଇଥିଲେ । ସେମାନେ ବାଲସୁଲଭ କ୍ରୀଡ଼ାରେ ପିତାମାତାଙ୍କୁ ସର୍ବଦା ସୁଖୀ ରଖୁଥିଲେ ।"

କିଛିକାଳ ପରେ ବୁଲି ବୁଲି ନାରଦ ପୁଣି ଆସି ଶ୍ରେଷ୍ଠୀଙ୍କ ଘରେ ପହଞ୍ଚିଲେ । ନାରଦଙ୍କୁ ଦେଖି ପତିପତ୍ନୀ ଯଥାବିଧି ତାଙ୍କର ସତ୍କାର କଲେ । ପିଲାମାନେ ଆସି ମୁନିଙ୍କ ପାଦତଳେ ପ୍ରଣାମ କଲେ । ବାପା ମା' ପୁଅମାନଙ୍କୁ ମୁନିଙ୍କ ପାଦତଳେ ଗଡ଼ାଇଦେଲେ ।

ପିଲାମାନଙ୍କୁ ଦେଖି ନାରଦ ଆଶ୍ଚର୍ଯ୍ୟ ହୋଇ କହିଲେ—"ଭକ୍ତବର ! ଏମାନେ କାହା ପୁଅ, ଏମାନେ ଆପଣଙ୍କ ଘରେ କାହିଁକି ଅଛନ୍ତି ?"

ହାତଯୋଡ଼ି ଶ୍ରେଷ୍ଠୀ ଉତ୍ତର ଦେଲେ—"ପ୍ରଭୋ ! ଏମାନେ ସମସ୍ତେ ଆପଣଙ୍କର ସେବକ । ସମସ୍ତେ ମୋର ପୁଅ ।"

ନାରଦ ଚମକିପଡ଼ି ପଚାରିଲେ—"ସମସ୍ତେ ତୁମ ପୁଅ ? ଏମାନେ କଣ ତୁମ ଧର୍ମ-ପତ୍ନୀଙ୍କ ଗର୍ଭରୁ ଜନ୍ମ ଲାଭ କରିଛନ୍ତି ?"

ଶ୍ରେଷ୍ଠୀ କହିଲେ—"ହଁ ଭଗବାନ୍ ! ଏସବୁ ଆପଣମାନଙ୍କ ପରି ସାଧୁଙ୍କ ଦୟା । ଏମାନେ ସାଧୁସେବାକାରୀ ହେବେ ଏଇ ଆଶୀର୍ବାଦ ଦିଅନ୍ତୁ ।"

ନାରଦଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଭଗବାନଙ୍କ ଉପରେ ଟିକିଏ ବିରକ୍ତ ହେଲେ ମନେ ମନେ । ସେ ଭାବିଲେ—ଭଗବାନ୍ ମୋତେ ଏକ ମିଥ୍ୟାବାଦୀ ବୋଲି ପ୍ରମାଣ କରିଦେଲେ । ଏ ଗୃହସ୍ଥ କଣ ଭାବୁଥିବେ ? ନାରଦ ଗାଲୁଗପ କରନ୍ତି, ସେ ଜଣେ ମିଛୁଆ, ଏହା ସେ ଭାବୁଥିବେ ସେଥିରେ ଆଉ ସନ୍ଦେହ ନାହିଁ । ମୁଁ ଭଗବାନଙ୍କ ପାଖକୁ ଯାଉଛି, ଏହା ବି ମିଛ ବୋଲି ସେ ଭାବୁଥିବେ । ଏସବୁ ଭାବି ନାରଦ ଖୁବ୍ ରାଗି-ଗଲେ । ହଠାତ୍ ସେ ବୀଣା ଧରି ସେଠାରୁ ଉଠି ଚାଲିଗଲେ ଏବଂ ଭଗବାନଙ୍କ ପାଖରେ ଯାଇ ପହଞ୍ଚିଲେ ।

ଭଗବାନ୍ ନାରଦଙ୍କ ବ୍ୟଗ୍ରତା ଦେଖି ହସି ହସି ପଚାରିଲେ—"ଆସନ୍ତୁ ନାରଦ, ଆସନ୍ତୁ ! କେଉଁଠୁ ଏବେ ଆସିଲେ । ଆଜି କାହିଁକି ଅନ୍ୟମନସ୍କ ଥିଲାପରି ଜଣା ପଡ଼ୁଛନ୍ତି ?"

କ୍ରୋଧପୂର୍ଣ୍ଣ ସ୍ୱରରେ ଦେବର୍ଷି ନାରଦ କହିଲେ—"ପ୍ରଭୋ ! ମୋ' କଥା ଥାଉ । ଆପଣ ମୋତେ ସମସ୍ତଙ୍କ ଆଗରେ ହାସ୍ୟାସ୍ପଦ ଅବସ୍ଥାରେ ଛାଡ଼ିଦେଲେ । ମୋର ସମ୍ମାନ, ପ୍ରତିଷ୍ଠା, ଅପକୀର୍ତ୍ତି ବିଷୟରେ ଆପଣଙ୍କର ଆଦୌ ଚିନ୍ତା ନାହିଁ ବୋଲି ମୁଁ ଭାବୁଛି ।"

କିଛି ନ ଜାଣିଲା ପରି ଭଗବାନ୍ ପଚାରିଲେ—"କଣ ହେଲା ଦେବର୍ଷି ନାରଦ ! କଣ ହେଲା ? ଆପଣଙ୍କ ଅପମାନ କିପରି ହେଲା ? କିଏ ଆପଣଙ୍କୁ ଅପମାନିତ କଲା ?"

ନାରଦ ସେହିପରି କ୍ରୋଧପୂର୍ଣ୍ଣ ସ୍ୱରରେ କହିଲେ—"ପ୍ରଭୋ ! ଆପଣ କହିଥିଲେ ନା ସେ ଶ୍ରେଷ୍ଠୀର ସାତଜନ୍ମ ପର୍ଯ୍ୟନ୍ତ ପିଲା ହେବେ ନାହିଁ । ମୁଁ ଏବେ ତାଙ୍କର ଗୋଟିଏ ବା ଦୁଇଟି ନୁହେଁ ସାତ ସାତଟି ପିଲା ଦେଖିଆସିଲି । ସେ ଶ୍ରେଷ୍ଠୀ ମୋତେ ଜଣେ ମିଥ୍ୟାବାଦୀ ଋଷି ବୋଲି ଭାବୁଥିବେ ।"

ଏହା ଶୁଣି ଭଗବାନ୍ କହିଲେ—"ଦେବର୍ଷେ ! ତୁମେ ଯାହା ପଚାରିଲ ତା'ର ଉତ୍ତର କାଲି ଦେବା । ଆଜି ମୋର ଦେହ ଟିକିଏ ଅସୁସ୍ଥ ଅଛି ।" ତତ୍ପରଦିନ ନାରଦ ଯାଇ ପହଞ୍ଚିଲେ । ନାରଦଙ୍କୁ ଦେଖି ଲକ୍ଷ୍ମୀ ଉଦାସ ହୋଇ କହିଲେ—"ଆଜି ପ୍ରଭୁ ଭୀଷଣ ଅସୁସ୍ଥ ହୋଇ ପଡ଼ିଛନ୍ତି । ଏହା ଶୁଣି ନାରଦ ବ୍ୟସ୍ତ ହୋଇ ପଡ଼ିଲେ । ସେ ଭଗବାନଙ୍କ ପାଖକୁ ଯାଇ କହିଲେ—ପ୍ରଭୋ ! "ଆପଣ ତ ସୁଖଦୁଃଖ ରହିତ । ଆପଣଙ୍କର ଏପରି ଅସହ୍ୟ ବେଦନା କିପରି ହେଲା ?"

ଭଗବାନ୍ ଅନ୍ୟମନସ୍କ ହୋଇ କହିଲେ—"ନାରଦ ! କଣ କହିବି ? ମୋତେ ଯଦିଓ କୌଣସି କଷ୍ଟ ହେଉନାହିଁ, ତଥାପି ଭକ୍ତମାନଙ୍କର କଷ୍ଟ ତ ମୋତେ ବହନ କରିବାକୁ ପଡ଼ିବ । ଏ କଷ୍ଟ ହେଉଛି, ଜଣେ ଭକ୍ତର କଷ୍ଟ ଦୂର ହୋଇନାହିଁ । ସେପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ କି ସୁଖ ବି ନାହିଁ ।"

ନାରଦ ଦୃଢ଼ତାର ସହିତ ପଚାରିଲେ—"ପ୍ରଭୋ ! ଆପଣ କହନ୍ତୁ । ସଂସାରରେ ଆପଣଙ୍କର ବହୁ ଭକ୍ତ ଅଛନ୍ତି । ଭକ୍ତିଭାବରେ ବିଭୋର ହୋଇ କିଏ ନାଚୁଛି ତ କିଏ କାନ୍ଦୁଛି । କେହି ଗାଉଛି ତ ଅନ୍ୟ କେହି ଘଣ୍ଟି ବଜାଉଛି । ଆପଣଙ୍କ ପାଇଁ ସବୁ ଭକ୍ତ ଯେ କୌଣସି କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ ଅଛନ୍ତି । ଆପଣ ଚାହିଁଲେ ସେମାନେ ସବୁ କିଛି କରିବେ ।"

ଭଗବାନ୍ କହିଲେ—"ହଁ ତାହା ଠିକ୍ । ଯଦି କୌଣସି ଭକ୍ତ ନିଜ ହାତରେ ନିଜର ହୃଦୟକୁ ବାହାର କରି ଆଣି ଦେବ ତେବେ ମୋର ଦୁଃଖ ଦୂର ହୋଇଯିବ ।"

ନାରଦ କହିଲେ—"ଏହା କିଣ ଗୋଟାଏ ବଡ଼ କଥା ? ମୁଁ ଚତୁର୍ଦ୍ଦଶ ଭୁବନରେ ବୁଲୁଛି । ଅନେକ ଭକ୍ତଙ୍କ ସହିତ ମୋର ଘନିଷ୍ଠ ପରିଚୟ ଅଛି ।"

ଭଗବାନ୍ କହିଲେ—"ଠିକ୍ ଅଛି । ତେବେ ତୁମେ ଯାଇ କୌଣସି ଭକ୍ତର ହୃଦୟ ବାହାର କରି ନେଇ ଆସ । କିନ୍ତୁ କୌଣସି ଗୃହସ୍ଥ ପାଖକୁ ଯିବନାହିଁ । ସେମାନେ ନିଜ ସ୍ତ୍ରୀ ପିଲାଙ୍କୁ ତାଙ୍କର ହୃଦୟ ଦେଇଦେଇଛନ୍ତି । ଏପରି କୌଣସି ଭକ୍ତ ପାଖକୁ ଯିବ ଯେ ମୋ' ପାଇଁ କୌପୀନ ପିନ୍ଧି ବାବାଜୀ ହୋଇଯାଇଛି ଓ ମୋର ନାମ ସ୍ମରଣ କରି ଭିକ୍ଷା-ବୃତ୍ତିରେ ଜୀବନଯାପନ କରୁଛି ।"

ନାରଦ କହିଲେ—"ଭଗବନ୍ ! ଏହା ତ ଆହୁରି ସହଜ ହେଲା । ଗୃହସ୍ଥମାନଙ୍କ ମଧ୍ୟରେ ବି ବଡ଼ ବଡ଼ ଭକ୍ତ ଅଛନ୍ତି । କିନ୍ତୁ ସେମାନେ ସ୍ତ୍ରୀ ପିଲାଙ୍କୁ ଛାଡ଼ି ହୃଦୟ ପ୍ରଦାନ ପାଇଁ ସମ୍ଭବତଃ ରାଜି ହେବେନାହିଁ । କିନ୍ତୁ ବାବାଜୀମାନଙ୍କର କିଣ ଅଛି, ଆଗ ନା ପଛ ? ଭଗବାନଙ୍କ କାମରେ ଯଦି ହୃଦୟ ଲାଗିଯିବ ତେବେ ତା'ଠାରୁ ବଳି ଆଉ ଭଲ କଥା କିଣ ଅଛି ? ମୁଁ ବର୍ତ୍ତମାନ ଯାଉଛି ।"

ଭଗବାନ୍ କଷ୍ଟରେ ନିଃଶ୍ୱାସ ଛାଡ଼ି କହିଲେ—"ହଉ ନାରଦ ! ଯାଅ । ଦେଖ, ଯଦି କୌଣସି ଭକ୍ତର ହୃଦୟ ମିଳିଯିବ ତେବେ ମୋର କଷ୍ଟ ଦୂର ହେବ, ନୋହିଲେ ଏହିପରି ଛଟପଟ ହେଉଥିବି ।"

ନାରଦ ବୀଣା ବଜାଇ ସେଠାରୁ ଚାଲିଗଲେ । ସାଧୁ ଓ ଭକ୍ତମାନଙ୍କ ପାଖକୁ ଯାଇ ସେ କହିଲେ—"ଭାଇମାନେ ! ଭଗବାନଙ୍କୁ ଭୀଷଣ କଷ୍ଟ ହେଉଛି । ତୁମେ କେହି ଯଦି ନିଜ ହାତରେ ନିଜ ହୃଦୟ ବାହାର କରି ମୋତେ ଦେବ, ତେବେ ଭଗବାନ୍ ଶାନ୍ତିଲାଭ କରିବେ ।" ଏହା ଶୁଣି କେହି କେହି ହସିଲେ ତ କିଏ କହିଲେ—"ନାରଦ ପାଗଳ ହୋଇଯାଇଛନ୍ତି । ନାରଦ ଏପରି ବାଉଳା କଥା କହନ୍ତି ବୋଲି କେତେକ କହିଲାବେଳେ ଅନ୍ୟ କେହି କହିଲେ—ହଇହେ, ଭଗବାନଙ୍କର ପୁଣି କଷ୍ଟ କିଣ ? ଆଉ କେତେକ କହିଲେ—ଖାଇପିଇ କେତେ କଷ୍ଟରେ ଏ ହୃଦୟକୁ ଆମେ ଲାଳନ-ପାଳନ କରିଛୁ କ'ଣ ନିଜ ହାତରେ ଚିରିଦେବା ପାଇଁ ? ଅନେକ ଗୃହସ୍ଥ ଅଛନ୍ତି ଯେଉଁମାନେ କଟାକଟି ମରାମରି କରନ୍ତି, ସେମାନେ ହୃଦୟ ପ୍ରଦାନ କରିପାରିବେ । 'ରାମ ରାମ' କହି ପରର ଅନ୍ନ ଧ୍ୱଂସ କରିବା ବା ପରାନ୍ନରେ ପାଳିତ ହେବା ଆମର କାମ । ଅନ୍ୟ କେହି ଜଣେ କହିଲେ—

'ରାମ ନାମ ଲଡ଼ୁ ଗୋପାଳ ନାମ ଘିଅ । ହରିଙ୍କ ନାମ ମିଶ୍ରି ପଣା ମନଇଚ୍ଛା ପିଅ ।' ନାରଦ ଏପ୍ରକାର କଥା ଶୁଣି ଭାବିଲେ ବାବାଜୀମାନଙ୍କ ଅପେକ୍ଷା ଗୃହସ୍ଥମାନେ ଖୁବ୍ ଭଲ । ନାରଦ ବହୁତ ଘୂରିଫେରି କଲେ; କିନ୍ତୁ, ନିଜ ହୃଦୟ ବାହାର କରି ଦେବାପାଇଁ କେହି ରାଜି ହେଲେ ନାହିଁ । ନାରଦ ଦୁଃଖିତ ହୋଇ ପୁଣି ଭଗବାନ୍‌ଙ୍କ ପାଖକୁ ଫେରିଗଲେ, ଆଉ ଦୁଃଖର ସହିତ କହିଲେ—"ପ୍ରଭୋ ! ଆପଣଙ୍କ ମାୟା ଅତି ପ୍ରବଳ । କେହି ହୃଦୟ ଦେବା ପାଇଁ ରାଜି ନୁହନ୍ତି ।"

ଭଗବାନ୍ ନାରଦଙ୍କ କଥା ଶୁଣି ଚିନ୍ତିତ ହୋଇ ପଡ଼ିଲେ । କିଛି ସମୟ ଚିନ୍ତା କରି ସେ କହିଲେ—"ନାରଦ ! ଗୋଟିଏ କାମ କର । ବିନ୍ଧ୍ୟ ପର୍ବତର ଅରଣ୍ୟରେ ଗଙ୍ଗାନଦୀ କୂଳରେ ଥିବା ଏକ ବରଗଛ ମୂଳରେ ଜଣେ ବୈରାଗୀ ଅଛନ୍ତି । ତୁମେ ତାଙ୍କରି ପାଖକୁ ଯାଅ । ତାଙ୍କ ପାଖକୁ ଗଲେ ସମ୍ଭବତଃ କାର୍ଯ୍ୟସିଦ୍ଧି ହେବ ।"

ନାରଦ ତ ସେଥିପାଇଁ ବ୍ୟଗ୍ର ଥିଲେ । ସେ ତତ୍‌କ୍ଷଣାତ୍ ମହାତ୍ମାଙ୍କ ପାଖକୁ ବାହାରି-ଗଲେ । ଦେଖିଲେ, ଜଣେ ଅବଧୂତ ପଥର ଖଣ୍ଡିଏ ତକିଆ ପରି ମୁଣ୍ଡତଳେ ଦେଇ ଶୋଇଛନ୍ତି । ତାଙ୍କ ଓଷ୍ଠଦ୍ୱୟ ସର୍ବଦା ସ୍ପନ୍ଦିତ ହେଉଛି । ସେ କୌଣସି ନାମ ସ୍ମରଣ କଲାପରି ମନେ ହେଉଥାଏ । କନ୍ଥା କି କମଣ୍ଡଳୁ ନ ଥିଲା । ସେ ଖଣ୍ଡିଏ ମାତ୍ର କୌପୀନ ପିନ୍ଧିଥିଲେ । ବଡ଼ ଷଣ୍ଢଟିଏ ଶୋଇଲା ପରି ସେ ପଡ଼ିଥିଲେ । ନାରଦ ସେଠାରେ ପହଞ୍ଚି ବୀଣା ବଜାଇ 'ଜୟ ଜୟ ରାମ କୃଷ୍ଣ ହରି' ବୋଲି ଗାଇବାକୁ ଲାଗିଲେ । ନିଜ ଆଗରେ ବ୍ରହ୍ମାଙ୍କ ପୁତ୍ର ଦେବର୍ଷି ନାରଦଙ୍କୁ ଦେଖି ଅବଧୂତ ଉଠିପଡ଼ି ଠିଆ ହୋଇଗଲେ, ଆଉ ପ୍ରଣାମ କରି କହିଲେ—"ଆସନ୍ତୁ ଦେବର୍ଷେ ! ଆପଣ ତ ଭକ୍ତମାନଙ୍କ ମଧ୍ୟରେ ଶ୍ରେଷ୍ଠ । ବହୁ ଭାଗ୍ୟରେ ଆପଣଙ୍କ ସାକ୍ଷାତ ମିଳେ । ଭଗବାନ୍‌ଙ୍କ ଦର୍ଶନ ଅପେକ୍ଷା ଭକ୍ତଙ୍କ ଦର୍ଶନ ଦୁର୍ଲଭ ବୋଲି କୁହାଯାଏ ।"

ନାରଦ କହିଲେ—"ଭଗବନ୍ ! ବିଷ୍ଣୁ ଭଗବାନ୍‌ଙ୍କର ଭୀଷଣ କଷ୍ଟ ହେଉଛି । ଯଦି କେହି ଜୀବିତ ଭକ୍ତ ନିଜ ହାତରେ ନିଜର ହୃଦୟକୁ ଚିରି ସ୍ୱତଃ ପ୍ରଦାନ କରିବେ ତେବେ ଭଗବାନ୍‌ଙ୍କ ଦୁଃଖ ଶାନ୍ତ ହେବ ।"

ଏହା ଶୁଣିବା ମାତ୍ରେ ଅବଧୂତ ପଚାରିଲେ—"ଦେବର୍ଷେ ! ଆପଣ ଛୁରି ଆଣିଛନ୍ତି ତ ?"

ନାରଦ କହିଲେ—ଛୁରିଟିଏ ଧରି ମୁଁ ସବୁଆଡ଼େ ବୁଲି ଆସିଲି । ମୋ, କଥା କେହି ବିଶ୍ୱାସ କଲେ ନାହିଁ । ସମସ୍ତେ କହିଲେ—"ଭଗବାନ୍‌ଙ୍କର କଷ୍ଟ କଣ ? ଭଗବାନ୍ ନିଜେ ଧର୍ମପ୍ରାଣଙ୍କର ଦୁଃଖ ଦୂର କରନ୍ତି । ତାଙ୍କର ପୁଣି ଦୁଃଖ କଣ ? ଏହା କହି କେହି ହୃଦୟ ପ୍ରଦାନ ପାଇଁ ରାଜି ହେଲେ ନାହିଁ ।"

ନାରଦଙ୍କ କଥା ଶୁଣି ଅବଧୂତ କହିଲେ—"ଭଗବାନ୍ ! ପ୍ରଭୁଙ୍କୁ କଷ୍ଟ ହେଉଛି କି ନାହିଁ ସେ ବିଷୟରେ ବିବାଦ କରିବାର କିଛି ନାହିଁ । ଭଗବାନ୍‌ଙ୍କୁ କଷ୍ଟ ହେଉ ବା ନ ହେଉ ଆପଣଙ୍କ ପରି ଭଗବଦ୍‌ଭକ୍ତ ଯେତେବେଳେ କହୁଛନ୍ତି ସେତେବେଳେ ଏଥିରେ

ଅବିଶ୍ୱାସ କରିବାର ପ୍ରଶ୍ନ ଉଠୁନାହିଁ । ଯଦି ଏହି କ୍ଷଣଭଙ୍ଗୁର ଦେହଦ୍ୱାରା ପ୍ରଭୁଙ୍କର ସାମାନ୍ୟତମ ଉପକାର ହୋଇପାରିବ ତେବେ ମୁଁ ନିଜକୁ ସୌଭାଗ୍ୟବାନ୍ ବୋଲି ମନେ କରିବି । ଆପଣଙ୍କ ପରି ଭଗବଦ୍‌ଭକ୍ତ କହୁଥିବାବେଳେ ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ଏ ପ୍ରାଣ ଉତ୍ସର୍ଗ କରିବାଠାରୁ ନାନା ରୋଗ ଓ ନାନା ଅଶୁଦ୍ଧିର ଭଣ୍ଡାର ସ୍ୱରୂପ ଏହି ଶରୀରର ଆଉ ଅଧିକ ସଦୁପଯୋଗ କିପରି ହୋଇପାରିବ ? ଆପଣ ଛୁରିଟା ମୋତେ ଦିଅନ୍ତୁ ଏବଂ ସଙ୍ଗେ ସଙ୍ଗେ 'ମୋ' ହୃଦୟ ନେଇଯାଆନ୍ତୁ । ମୋର ମନ, ପ୍ରାଣ ଓ ଶରୀର ସବୁ କିଛି ପ୍ରଭୁଙ୍କ ଉଦ୍ଦେଶ୍ୟରେ ଅଭିପ୍ରେତ ।"

ମହାରାଜ ଚନ୍ଦ୍ରକେତୁ ଅଙ୍ଗିରା ମୁନଙ୍କୁ କହିଲେ—"ଭଗବାନ୍ ! ଏହା କହି ଅବଧୂତ ଯେତେବେଳେ ତୀକ୍ଷ୍ଣ ଛୁରିଦ୍ୱାରା ନିଜର ହୃଦୟ ବିଦୀର୍ଣ୍ଣ କରିବାକୁ ଉଦ୍ୟତ ହେଲେ ସେତେବେଳେ ଶଙ୍ଖଚକ୍ରଧାରୀ ବନମାଳୀ ସେଠାରେ ଆବିର୍ଭୂତ ହୋଇ ଭକ୍ତର ହାତକୁ ଧରିପକାଇ କହିଲେ— ବ୍ରହ୍ମନ୍ ! ଆପଣ ତ ମୋତେ ହୃଦୟଦାନ କରି ସାରିଛନ୍ତି । ମୁଁ ତାହାକୁ ଆପଣଙ୍କର ଏଇ ଦେହ ରୂପକ ମନ୍ଦିରରେ ରଖିଦେଇଛି । ଆପଣ ଏ ମନ୍ଦିରକୁ ଭାଙ୍ଗି ଦିଅନ୍ତୁ ନାହିଁ । ମୋର ଯେବେ ଆବଶ୍ୟକ ପଡ଼ିବ ସେତେବେଳେ ମୁଁ ନେଇଯିବି ।"

ଭଗବାନ୍‌ଙ୍କୁ ଆଗରେ ଦେଖି ଅବଧୂତ ଆଶ୍ଚର୍ଯ୍ୟ ହୋଇଗଲେ । ସେ ସବୁକିଛି ଭୁଲିଯାଇ ପ୍ରଭୁଙ୍କ ପାଦପଦ୍ମରେ ଲୋଟି ପଡ଼ିଲେ । ଅଶ୍ରୁ ଜଳରେ ପ୍ରଭୁଙ୍କ ପାଦପଦ୍ମ ଧୋଇ-ଦେଲେ । ନାରଦ ଆଗରେ ବିରାଜମାନ ପ୍ରଭୁଙ୍କୁ ପ୍ରଣାମ କଲେ । ଏହି ସମୟରେ ଭଗବାନ୍ କହିଲେ—"ନାରଦ ! ଏବେ ତୁମେ ନିଜେ ଚିନ୍ତାକର, ଯେ ନିଜର ଘରଦ୍ୱାର, ବନ୍ଧୁ ସ୍ୱଜନ, ଧନସମ୍ପଦ, ସ୍ତ୍ରୀ ପିଲାଙ୍କୁ ଛାଡ଼ି କେବଳ ମୋତେ ଆଶ୍ରୟ କରି ରହିଛି, ତାହାର ଆଦେଶ କିପରି ମୁଁ ଲଂଘନ କରିବି । ଏପରି ଭକ୍ତ ଯାହା କହିଲେ ବି ତାକୁ ଅନ୍ୟଥା କରିବାର ସାମର୍ଥ୍ୟ ମୋର ନାହିଁ । ଏହିପରି ଅନନ୍ୟ ସାଧାରଣ ଭକ୍ତଙ୍କ ପକ୍ଷରେ ପ୍ରାରବ୍ଧକୁ ଲିଭାଇଦେବା, ବିଧିବିଧାନକୁ ଅନ୍ୟଥା କରିବା, କିଛି ବଡ଼ କଥା ନୁହେଁ । ସମସ୍ତଙ୍କ ଭାଗ୍ୟବିଧାତା ମୁଁ ଯେତେବେଳେ ତାଙ୍କର ଅଧୀନ ସେତେବେଳେ ତାଙ୍କ ଆଗରେ ପ୍ରାରବ୍ଧ, ଭାଗ୍ୟ, ଦୈବର କୌଣସି ମହତ୍ତ୍ୱ ନାହିଁ । ସେହି ଶ୍ରେଷ୍ଠୀର ଭାଗ୍ୟରେ ସାତଜନ୍ମ ପର୍ଯ୍ୟନ୍ତ ସନ୍ତାନଯୋଗ ନ ଥିଲା, ଏହା ସତ୍ୟ । କିନ୍ତୁ ଏହି ମହାତ୍ମାଙ୍କ ମୁଖରୁ କଥା ବାହାରିଯିବାରୁ ଦୁର୍ଭାଗ୍ୟ ସୌଭାଗ୍ୟରେ ପରିଣତ ହୋଇଗଲା । ପ୍ରାରବ୍ଧ କର୍ମଫଳ ଅନୁସାରେ ଶ୍ରେଷ୍ଠୀର ପୁତ୍ରପ୍ରାପ୍ତି ଯୋଗ ନ ଥିଲେ ମଧ ତା'ର ସାତୋଟି ପୁତ୍ର ହେଲେ । ସେ ମୋର ଅନନ୍ୟ ଭକ୍ତ ମୁଁ ତା'ର କଥାକୁ ଅନ୍ୟଥା କରିପାରେ ନାହିଁ ।"

ଏହାଶୁଣି ନାରଦ କହିଲେ— "ପ୍ରଭୋ ! ମୁଁ ବି ଆପଣଙ୍କ ଭକ୍ତ । ମୋ' କଥାକୁ ମିଥ୍ୟା ବୋଲି ପ୍ରତିପାଦନ କଲେ କାହିଁକି ?"

ଭଗବାନ୍ ହସି ହସି କହିଲେ—"ଆପଣ ମୋର ଭକ୍ତ, ଏଥିରେ କଣ ସନ୍ଦେହ ଅଛି ? କିନ୍ତୁ ଖରାପ ନ ଭାବିଲେ ଆପଣଙ୍କୁ ଗୋଟିଏ କଥା କହିବି ?"

ନାରଦ କହିଲେ "ପ୍ରଭୋ ! ଝଗ୍ରପ ଭାବିବାର କଣ ଅଛି ? ଆପଣ ଯାହା କହିବେ ମୋର ଭଲ ପାଇଁ କହିବେ । ଆପଣଙ୍କ ବାକ୍ୟ ମୋ' ପାଇଁ ଶିକ୍ଷାପ୍ରଦ ହେବ ।"

ଭଗବାନ୍ କହିଲେ—"ନାରଦ ! ତୁମେ ବ ତ କୌପୀନ ପିନ୍ଧିଛ । ତୁମେ ବ ବୈରାଗୀ ସନ୍ନ୍ୟାସୀମାନଙ୍କ ଶିରୋମଣି । ମୁଁ ଯେତେବେଳେ ବୈରାଗୀର ହୃଦୟସ୍ଥ ଗୃହ ଥିଲି ସେତେବେଳେ ତୁମେ ଛୁରି ନେଇ ଏ ଲୋକରୁ ସେ ଲୋକ, ଏହା ପାଖରୁ ତା' ପାଖକୁ ହୃଦୟସ୍ଥ ଆଣିବା ପାଇଁ ଘୂରିବୁଲିଲ । ତୁମେ ତ ସଙ୍ଗେ ସଙ୍ଗେ କହିପାରିଥାନ୍ତ ଯେ, 'ପ୍ରଭୋ ! ମୁଁ ନିଜେ ଉପସ୍ଥିତ ଅଛି । ମୁଁ ନିଜ ହୃଦୟସ୍ଥ ବାହାର କରିଦେଉଛି ।' କାହିଁ ଏହା ତ କଲ ନାହିଁ ? ଏଠାରୁ ସେଠାକୁ, ସେଠାରୁ ଏଠାକୁ ବୁଲି ବୁଲି ଗୁଡ଼ାଏ କଷ୍ଟ ପାଇଲ । ଭଗବାନ୍‌ଙ୍କ ଇଚ୍ଛାରେ ନିଜ ଇଚ୍ଛାକୁ ମିଶାଇଦେବାରେ ଯତ୍ନଶୀଳ ହେବା କାର୍ଯ୍ୟ ସହଜ ନୁହେଁ । ଏହା ସର୍ବୋତ୍ତମ ଭକ୍ତର ନିଦର୍ଶନ । ଯେ ନିଜର ବୋଲି କିଛି ରଖିନାହିଁ ସେ ଅନନ୍ୟ । ତେଣୁ ଅନନ୍ୟ ଭକ୍ତ ମୋ'ଠାରୁ ଉଚ୍ଚରେ ଥାଏ । ତା'ର ବଚନ ଅନ୍ୟଥା କିପରି ହେବ ?"

ମହାରାଜ ଚନ୍ଦ୍ରକେତୁ କହିଲେ—ଭଗବାନ୍ ! "ଆପଣ ସେହିପରି ଅନନ୍ୟ ଭକ୍ତ । ଆପଣଙ୍କ ପକ୍ଷରେ ପ୍ରାରବ୍ଧକୁ ଲିଭାଇଦେବା ଆଦୌ କଷ୍ଟକର ହେବନାହିଁ । ମୁଁ ଦୁଃଖୀ, ଆର୍ତ୍ତ, ସନ୍ତାନ ବିନା ମୋର ସୁଖ ନାହିଁ କି ଶାନ୍ତି ନାହିଁ । ଯଦି ମୋ' ଭାଗ୍ୟରେ ପୁତ୍ର ନାହିଁ ତେବେ ଆପଣ ମୋ' ଭାଗ୍ୟକୁ ବଦଳାଇ ଦିଅନ୍ତୁ । ଯେପରି ହେଉ ମୋତେ ପୁତ୍ର ପ୍ରଦାନ କରନ୍ତୁ । ମୁଁ ଆପଣଙ୍କ ଶରଣପ୍ରାର୍ଥୀ । ଆପଣ ମୋର ପ୍ରଭୁ । ସେବକର ଅଭିଳାଷକୁ ପ୍ରଭୁଙ୍କ ବିନା କିଏ ପୂରଣ କରିବ ?"

ରାଜାଙ୍କ କାହାଣୀ ଶୁଣି ଓ ତାଙ୍କର ପ୍ରାର୍ଥନାରେ ପ୍ରୀତ ହୋଇ ମହାମୁନି ଅଙ୍ଗିରା କହିଲେ—"ରାଜନ୍ ! ମୁଁ ସେପରି ଭଗବଦ୍‌ଭକ୍ତ ନୁହେଁ । ନାରଦଙ୍କ ଆଗରେ ମୁଁ ଅତି ନଗଣ୍ୟ । ତଥାପି ମୁଁ ଆପଣଙ୍କ ଅଭିଳାଷ ପୂରଣ କରିବି ।"

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ଏହା କହି ଭଗବାନ୍ ଅଙ୍ଗିରା ଋଷି ରାଜାଙ୍କର ପୁତ୍ରପ୍ରାପ୍ତି କିପରି ହେବ, ସେ ବିଷୟରେ ଚିନ୍ତା କଲେ ।"

## ଛପ୍ପୟ

କରି ନ ସକେଁ କା ସନ୍ତ ବସ୍ତୁ ହିତ ଜେ ବ୍ରତ ଧାରେଁ ।
ଭାଗ୍ୟ ଅନ୍ୟଥା କରେଁ ରେଖ ପେ ମେଖହୁ ମାରେଁ ॥
ହରି ଜିନକେ ଅଧୀନ ଭାଗ୍ୟ ତିନକୋ ଚେହି ଚେରେ ।
ସନ୍ତ ଦରସ ଜବ ଭୟେ, ଭୟୋ ତବ ସବ ହିତ ମେରେ ॥
ସାତ ଜନମ ସନ୍ତତି ନହୀଁ, ନାରଦ ତେଁ ବଚ ହରି କହେ ।
ସନ୍ତ କୃପା ତେଁ ସାତ ସୁତ, ଭକ୍ତ ସେଠ ସୋ ଉ ଲହେ ॥

# ଚିତ୍ରକେତୁଙ୍କ ପୁତ୍ରପ୍ରାପ୍ତି

ଇତ୍ୟର୍ଥିତଃ ସ ଭଗବାନ୍ କୃପାଲୁର୍ବ୍ରହ୍ମଣଃ ସୁତଃ ।
ଶ୍ରପୟିତ୍ୱା ଚରୁଂ ତ୍ୱାଷ୍ଟ୍ରଂ ତ୍ୱଷ୍ଟାରମଯଜଦ୍‌ଦ୍ୱିଜଃ ॥
ଅଥାହ ନୃପତିଂ ରାଜନ୍ ଭବିତୈକସ୍ତବାତ୍ମଜଃ ।
ହର୍ଷ ଶୋକପ୍ରଦସ୍ତୁଭ୍ୟମିତି ବ୍ରହ୍ମସୁତୋ ଯଯୌ ॥

(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୪ଅ-୨୭, ୨୯ ଶ୍ଳୋ)

**ଛପ୍ପୟ**

ଚିତ୍ରକେତୁ ମୁନି ବିନୟ ଦୟା ମୁନିବର କୁଁ ଆଇ ।
ତ୍ୱଷ୍ଟା କେ ହିତ ଖୀର ବ୍ରହ୍ମ ସୁତ ସରଧି ବନାଇ ॥
ଯଜନ କର୍‌ୟୋ ଜୋ ବଚୀ ବଡ଼ୀ ମହିଷୀ କୁଁ ଦୀନ୍ହୀ ।
ଜାତେ ହୋତେଁ ପୁତ୍ର ଅଙ୍ଗିରା ଆୟସୁ କୀନ୍ହୀ ॥
ରାନୀ କୃତଦ୍ୟୁତି ମୁଦିତ ଅତି, ରାଜା ହୂ ହର୍ଷିତ ଭୟୋ ।
ଖାଇ ଖୀର ମୁନି କୃପାତେଁ, ଗର୍ଭ ନୃପତି ପତ୍ନୀ ରହ୍ୟୋ ॥

ସତ୍ୟର ସ୍ୱରୂପକୁ ଯେ ସାକ୍ଷାତ୍ କରିଛି ତା'ର ଦୃଷ୍ଟି ସଫଳ ହୋଇଛି ବୋଲି ବୁଝାଯାଏ । ଯେ ସତ୍ୟଦ୍ରଷ୍ଟାଙ୍କ ସାକ୍ଷାତ୍ ପାଇଛି ସେ ଭବବନ୍ଧନରୁ ମୁକ୍ତ ହୋଇଯାଏ । କେବଳ ତାଙ୍କର କୃପା ହେଲେ ହେଲା । ସାଧୁଙ୍କ ଦୟା ଆରମ୍ଭରୁ କିଛିଟା କଷ୍ଟକର ପ୍ରତୀତ ହେଲେ ମଧ୍ୟ ତା'ର ପରିଣାମ ସୁଖକର ହେବ । କାରଣ ସାଧୁ ଅଳ୍ପ ସମୟ ମଧ୍ୟରେ ପ୍ରାରବ୍ଧ ଭୋଗକୁ ପୂରଣ କରିଦିଅନ୍ତି । ସାଧାରଣ ବିଧି-ବିଧାନ ମଧ୍ୟ ସାଧୁଙ୍କ ଦୟାରୁ ସରଳ ହୋଇଯାଏ । ତପସ୍ୟା ଓ ମନ୍ତ୍ରବଳରେ ସେମାନେ ନୂତନ ଭାଗ୍ୟ ସୃଷ୍ଟି କରିବାରେ ସମର୍ଥ ହୋଇଥାନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ରାଜା ଚିତ୍ରକେତୁ ଯେତେବେଳେ ବାରମ୍ବାର ମହର୍ଷି ଅଙ୍ଗିରାଙ୍କୁ ପୁତ୍ରପ୍ରାପ୍ତି ପାଇଁ ଅନୁନୟ ବିନୟ କଲେ ସେତେବେଳେ ଦୟାର୍ଦ୍ର ହୃଦୟ ମୁନିଙ୍କ ମନ ଦୟାରେ ବିଗଳିତ ହୋଇଗଲା । ମହର୍ଷି ଅଙ୍ଗିରା କହିଲେ—ରାଜନ୍ ! ଆପଣଙ୍କର ପୁତ୍ରଟିଏ ହେବାପାଇଁ ମୁଁ ଯଜ୍ଞ କରାଇବି । ଯଜ୍ଞଦ୍ୱାରା ଆପଣଙ୍କର ଜଣେ ପୁତ୍ରଲାଭ ହେବ ।"

ମହର୍ଷିଙ୍କ ବାକ୍ୟ ଶୁଣି ରାଜା ଚନ୍ଦ୍ରକେତୁଙ୍କ ଆନନ୍ଦର ସୀମା ରହିଲା ନାହିଁ । ତାଙ୍କର ମଉଳି ଆସୁଥିବା ଆଶାଲତା ମୁନିଙ୍କ ଅମୃତ ରୂପ ବଚନରେ ପୁଣି ସତେଜ ହୋଇ ଉଠିଲା । ପ୍ରେମରେ ବିହ୍ୱଳ ହୋଇ ସେ ମୁନିଙ୍କ ପାଦ ଦୁଇଟିକୁ ଖୁବ୍ ଜୋର୍‌କରି ଜାବୁଡ଼ି ଧରିଲେ । ଗଦ୍‌ଗଦ କଣ୍ଠରେ ମହାରାଜ ଚନ୍ଦ୍ରକେତୁ କହିଲେ—"ପ୍ରଭୋ ! ଆପଣ ହିଁ ମୋର ବୁଡ଼ିଯାଉଥିବା ଡଙ୍ଗାକୁ ପାର କରିବା ପାଇଁ ସମର୍ଥ ନାବିକ । ମୋର ଅଭିଳାଷକୁ ପୂରଣ କରିବାରେ ଆପଣ କଳ୍ପତରୁ । ଆପଣଙ୍କ ଦୟାକୁ ସମ୍ବଳ କରି ମନୋରଥ-ରୂପକ ଦୁସ୍ତର ସାଗରକୁ ଖୁବ୍ ସହଜରେ ମୁଁ ପାର ହୋଇଯିବି ବୋଲି ବିଶ୍ୱାସ କରୁଛି । ବର୍ତ୍ତମାନ ଆଦେଶ ଦିଅନ୍ତୁ, ମୁଁ କଣ କରିବି ? କି କି ସାମଗ୍ରୀ ଯୋଗାଡ଼ କରିବି ତାହା ମୋତେ କୁହନ୍ତୁ ।"

ରାଜାଙ୍କ ଆନନ୍ଦ ଓ ବିନମ୍ରଭାବରେ ମୁଗ୍ଧ ହୋଇ ମହର୍ଷି ଅଙ୍ଗିରା ଯଜ୍ଞର ଆବଶ୍ୟକୀୟ ସାମଗ୍ରୀ ଆୟୋଜନ କଲେ । ଉତ୍ସାହର ସହିତ ଯଜ୍ଞ ସାମଗ୍ରୀମାନ ଶୁଦ୍ଧପୂତ ହୋଇ ସାବଧାନତାର ସହିତ ରାଜା ସଂଗ୍ରହ କଲେ । ଶାସ୍ତ୍ରୀୟ ବିଧି ଅନୁସାରେ ଅଙ୍ଗିରା ଯଜ୍ଞର ଶୁଭାରମ୍ଭ କଲେ । ପୁତ୍ର ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ଯଜ୍ଞରେ ତ୍ୱଷ୍ଟାଙ୍କ ପ୍ରାଧାନ୍ୟ ଥିଲା । ତେଣୁ ମୁନି ବିଭିନ୍ନ ଦେବଦେବୀଙ୍କୁ ଆହୁତି ପ୍ରଦାନ କରିବା ପରେ ତ୍ୱାଷ୍ଟ୍ରା ଚରୁ ପ୍ରସ୍ତୁତ କରି ତାହା ଯଥାବିଧି ତ୍ୱଷ୍ଟା ଦେବଙ୍କୁ ସମର୍ପଣ ପୂର୍ବରେ ଯଜ୍ଞରେ ଆହୁତି ଦେଲେ । ଆହୁତି ଶେଷରେ ଅବଶିଷ୍ଟ ଚରୁ ରାଜାଙ୍କୁ ଦେଇ ମୁନି କହିଲେ - "ରାଜନ୍ ! ଆପଣଙ୍କର ଗୋଟିଏ ପୁତ୍ର ହେବ । ଏଥର କହନ୍ତୁ, କେଉଁ ରାଣୀଙ୍କ ଗର୍ଭରୁ ଆପଣ ସେ ପୁତ୍ରଟି ଇଚ୍ଛା କରୁଛନ୍ତି ।"

ଜଣେ ଦୁଇଜଣ ରାଣୀ ହୋଇଥିଲେ ରାଜା କାହାର ନାମ କହିଥାନ୍ତେ । କିନ୍ତୁ ଲକ୍ଷାଧିକ ରାଣୀ ଥିଲେ ଏବଂ ସମସ୍ତେ ମନେମନେ ଆଶା କରୁଥିଲେ ମହାରାଜ ତାଙ୍କଠାରୁ ପୁତ୍ର ଉତ୍ପନ୍ନ କରାଇବେ । ରାଣୀମାନେ ଅତି ଉତ୍ସୁକ ହୋଇ ମହାରାଜଙ୍କ ସିଦ୍ଧାନ୍ତକୁ ଅପେକ୍ଷା କରୁଥିଲେ । ସମସ୍ତଙ୍କ ହୃଦୟର ସ୍ପନ୍ଦନ ବଢ଼ିଯାଇଥିଲା । ଏହି ସମୟରେ ପୁରୋହିତ କହିଲେ—'ଭଗବନ୍ ! ଯେ ଜ୍ୟେଷ୍ଠା ରାଣୀ, ଯାହାଙ୍କ ସହିତ ଯଜ୍ଞରେ ଦୀକ୍ଷା ନିଆଯାଏ ସେ ହିଁ ପ୍ରକୃତ ପତ୍ନୀ । ମହାରାଜଙ୍କ ପାଖରେ ଉପବିଷ୍ଟା ଓ ଅଭିଷିକ୍ତା ପାଟରାଣୀ କୃତଦ୍ୟୁତିଙ୍କ ଗର୍ଭରୁ ସନ୍ତାନୋତ୍ପତ୍ତି ହେବା ବାଞ୍ଛନୀୟ । ନ୍ୟାୟତଃ କୃତଦ୍ୟୁତି ହିଁ ଯଜ୍ଞର ଅଧିକାରିଣୀ ।" ପୁରୋହିତଙ୍କ କଥା ଶୁଣି ଅନ୍ୟ ରାଣୀମାନେ ହତାଶ ହୋଇପଡ଼ିଲେ । ଅନ୍ୟମାନଙ୍କ ଆଶା ମଉଳିଗଲା । ନ୍ୟାୟତଃ କୃତଦ୍ୟୁତି ଥିଲେ ପଟ୍ଟମହିଷୀ । ଯଜ୍ଞଚରୁ ତାଙ୍କୁ ହିଁ ଦିଆଗଲା । ଶାସ୍ତ୍ରୀୟ ବିଧି ଅନୁସାରେ ରାଜା ଯଜ୍ଞ ଚରୁ ଆଘ୍ରାଣ ପୂର୍ବକ ତାହା ରାଣୀଙ୍କୁ ପ୍ରଦାନ କଲେ । ପୁରୋହିତ ଓ ବ୍ରାହ୍ମଣଙ୍କ ଆଦେଶ ପାଇ ରାଣୀ କୃତଦ୍ୟୁତି ଚରୁ ଭକ୍ଷଣ କଲେ । ଯଜ୍ଞର ପୂର୍ଣ୍ଣାହୁତିପରେ ଅବଭୃତ ସ୍ନାନ ଅନୁଷ୍ଠିତ ହେଲା । ମହର୍ଷି ଅଙ୍ଗିରା ରାଜାଙ୍କଠାରୁ ବିଦାୟ ନେଇ ବ୍ରହ୍ମଲୋକକୁ ଫେରିଗଲେ ।

ମହାରାଣୀ କୃତଦ୍ୟୁତି ଯଥା ସମୟରେ ଗର୍ଭବତୀ ହେଲେ । ରାଣୀଙ୍କ ଗର୍ଭୋଦୟ ସମ୍ବାଦରେ ରାଜ୍ୟବାସୀ ଜନସାଧାରଣଙ୍କ ସହିତ ରାଜା ଓ ରାଣୀଙ୍କ ଆନନ୍ଦର ସୀମା ରହିଲା ନାହିଁ । କିନ୍ତୁ ଅନ୍ୟରାଣୀମାନେ ହତାଶ ହୋଇ ପଡ଼ିଲେ । ଶୁକ୍ଳ ପକ୍ଷରେ ଚନ୍ଦ୍ରର କଳା ବୃଦ୍ଧି ପାଇଲା ପରି ଦିନକୁ ଦିନ ରାଣୀଙ୍କ ଗର୍ଭ ବଢ଼ିବାକୁ ଲାଗିଲା । ଗର୍ଭକାଳ ପୂର୍ଣ୍ଣ ହେବା ପରେ ରାଣୀ ଶୁଭ ମୁହୂର୍ତ୍ତରେ ଏକ ସୁନ୍ଦର ପୁତ୍ରକୁ ଜନ୍ମ ଦେଲେ । ପୁତ୍ରର ସୁକୁମାର ତନୁ, କମନୀୟ ମୁଖଚନ୍ଦ୍ର ଦେଖି ରାଜା ଓ ରାଣୀ ଆନନ୍ଦିତ ହେଲେ । ରାଜ୍ୟବାସୀ ନଗର ପୂଅ ହେଲାପରି ଆନନ୍ଦ ଉତ୍ସବ ପାଳନ କଲେ । ଗୃହଆଡ଼େ ଆନନ୍ଦର ଢେଉ ଖେଳିଗଲା । ରାଜା ନଗର ଭଣ୍ଡାର ଖୋଲିଦେଲେ । ଯେ ଯାହା ଚାହିଁଲା ସେ ତାହା ପାଇଲା । ମହାରାଜ ଯଥାବିଧି ସ୍ନାନ କଲେ । ବ୍ରାହ୍ମଣମାନେ ମନ୍ତ୍ର ପଢ଼ି ରାଜାକୁ ଆଶୀର୍ବାଦ ଜଣାଇଲେ । ସ୍ୱସ୍ତିବାଚକ ପୂର୍ବକ ବାଳକର ଜାତକର୍ମ ସଂସ୍କାର ଅନୁଷ୍ଠିତ ହେଲା । ନାନ୍ଦୀମୁଖ ଶ୍ରାଦ୍ଧ-କାଳରେ ରାଜା ବହୁ ଧନରତ୍ନ ଦାନ କଲେ । ବ୍ରାହ୍ମଣ, ଦରିଦ୍ର, ଅନାଥମାନଙ୍କୁ ପର୍ଯ୍ୟାପ୍ତ ଦାନ ଦେଇ, ପୁତ୍ର ତେଜସ୍ୱୀ, ଯଶସ୍ୱୀ ହେଉ ବୋଲି ରାଜା ମନେ ମନେ ପ୍ରାର୍ଥନା କଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଅଭିଳଷିତବସ୍ତୁ ଲାଭ ପାଇଁ ଯେତିକ କଠୋର ତପସ୍ୟା ଓ ଅଧିକ ପ୍ରତୀକ୍ଷା କରିବାକୁ ପଡ଼େ, ତାହା ପାଇବା ପରେ ସେତିକ ଆନନ୍ଦ ଅନୁଭୂତ ହୁଏ । ଯେଉଁ ବସ୍ତୁ ଯେତେ ଅଧିକ ପରିଶ୍ରମଦ୍ୱାରା ପ୍ରାପ୍ତ ହୁଏ ତାହାର ମୂଲ୍ୟ ସେତିକ ବଢ଼ିଯାଏ । ଭଗବାନ୍ ଯଦି ଯେଉଁଠି ସେଇଠି ଯେ ଯାହା ଚାହୁଁଛି ଦେଇଦେଉ-ଥାନ୍ତେ, ତେବେ ତାହା ସେପରି ମହତ୍ତ୍ୱପୂର୍ଣ୍ଣ, ମୂଲ୍ୟବାନ୍ ବୋଲି ଗୃହୀତ ହୁଅନ୍ତା ନାହିଁ । ପତି ଲାଭ ପାଇଁ କନ୍ୟା ଯଦି କଷ୍ଟ ସ୍ୱୀକାର କରୁ ନ ଥାନ୍ତା ତେବେ ତା'ର ଦାମ୍ପତ୍ୟ ଜୀବନ ସେତେ ସୁଖକର ହୁଅନ୍ତା ନାହିଁ । ଯଦି ମାଟି, ଗୋଡ଼ି ପରି, ସୁନା, ରୂପା, ମୂଲ୍ୟବାନ୍ ପଥର ଯେଉଁଠି ସେଇଠି ମିଳିଯାଉଥାନ୍ତା, ସେଥିପାଇଁ ପରିଶ୍ରମ କରିବାକୁ ପଡୁ ନ ଥାନ୍ତା, ସମସ୍ତେ ପାଇଯାଉଥାନ୍ତେ, ତେବେ ମାଟିଗୋଡ଼ି ଓ ସୁନା, ରୂପା ମଧ୍ୟ କୌଣସି ପାର୍ଥକ୍ୟ ରହନ୍ତା ନାହିଁ । କାରଣ, ଏହି ଉଭୟ ପଦାର୍ଥ ମାଟିର ବିକାର ମାତ୍ର ଏବଂ ମାଟିରୁ ହିଁ ସେଗୁଡ଼ିକର ସୃଷ୍ଟି । କିନ୍ତୁ ଉଭୟ ବସ୍ତୁ ମଧ୍ୟରେ ଘୋର ପାର୍ଥକ୍ୟ ରହିଛି, କାରଣ ମାଟି, ଗୋଡ଼ି ଅପେକ୍ଷା ସୁନା ପାଇବା ପାଇଁ ବହୁ ପରିଶ୍ରମ କରିବାକୁ ପଡ଼େ । ତେଣୁ ବସ୍ତୁର ମୂଲ୍ୟ ବସ୍ତୁ ଉପରେ ନୁହେଁ, ସେଥିପାଇଁ ଉଦ୍ଦିଷ୍ଟ ଶ୍ରମ, ସାଧନା ଆଦି ଉପରେ ନିର୍ଭର କରେ ।"

ଦରିଦ୍ର ଲୋକଙ୍କ ଘରେ ପ୍ରତିବର୍ଷ ମୂଷା, ବିରାଡ଼ି, କୁକୁର ପରି ପିଲା ଜନ୍ମ ହେଉଛନ୍ତି । ପିଲା ଜନ୍ମ ହେଲେ ସେମାନଙ୍କ ମନରେ ସେପରି ଆନନ୍ଦ ଆସେନାହିଁ । ଅଧିକ ସନ୍ତାନ ଜନ୍ମ ହେଲେ ଖାଦ୍ୟ, ବସ୍ତ୍ରରେ ଅଧିକ ବ୍ୟୟ କରିବାକୁ ପଡ଼ିବ ବୋଲି ସେମାନେ ଦୁଃଖିତ ହୁଅନ୍ତି ନାହିଁ । କିନ୍ତୁ ଅମାପ ଧନ ସମ୍ପତ୍ତି ଥାଇ ମଧ୍ୟ ଯାହାର ପିଲାଛୁଆ ହୁଏନାହିଁ । ସେ ଦରିଦ୍ରଠାରୁ ବି ଅଧିକ ଦୁଃଖିତ ହୁଏ । ତେଣୁ ସେ ଚାହେଁ କୌଣସିମତେ ତା'ର ପିଲାଟିଏ ହେଉ । ଚାତକ ବର୍ଷା ଜଳକୁ ଅପେକ୍ଷା କଲା ପରି ସେ ସନ୍ତାନ ପାଇଁ ଅପେକ୍ଷା କରି

ରହନ୍ତୁ । ଦୈବବଶତଃ ଯଦି ସନ୍ତାନଟିଏ ଜନ୍ମ ହେଲା, ତେବେ ତାଙ୍କର ଯେଉଁ ଆନନ୍ଦ ଜାତ ହେବ ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବହୁକାଳ ଅପେକ୍ଷା କରିବା ପରେ ମହାରାଜ ଚିତ୍ରକେତୁ ପୁତ୍ରଟିଏ ପାଇ ଦରିଦ୍ର କୋଟିନିଧି ପାଇଲା ପରି ଆନନ୍ଦିତ ହେଲେ । ପୁତ୍ର ପ୍ରତି ତାଙ୍କର ମମତା ଅଧିକରୁ ଅଧିକ ବଢ଼ିବାକୁ ଲାଗିଲା । ପୁତ୍ର ମୁଖ ନ ଦେଖିବା ପର୍ଯ୍ୟନ୍ତ ତାଙ୍କ ମନ ସ୍ଥିର ହେଉ ନ ଥିଲା । ସେ ରାଜସଭାରୁ ମଝିରେ ମଝିରେ ଉଠିଯାଇ ପୁତ୍ରକୁ ଚୁମା ଦେଇ ଆସୁଥିଲେ । ପିଲାଟି ବଢ଼ିବା ସଙ୍ଗେ ସଙ୍ଗେ ରାଜାଙ୍କ ମୋହ ଅତ୍ୟଧିକ ବଢ଼ୁଥିଲା ।"

## ଛପ୍ପୟ

ଶୁକ୍ଳ ପକ୍ଷ କୋ ଚନ୍ଦ୍ର ବଢ଼େ ଜୈଁସା ବଢ଼ୈ ଗର୍ଭ ତୈଁସା ।
ତୈଁସା ତୈଁସା ଆନନ୍ଦ ବଢ଼େ ଗର୍ଭ ଦିନ ବୀତେ ଜୈଁସା ଜୈଁସା ।।
ସମୟ ପାଇକେ ପୁତ୍ର ଭୟୋ ସବ ଲୋଗ ସିହାୟେ ।
ରାଜ ମାହି ସର୍ବତ୍ର ନଗର ପୁର ବଜତ ବଧାୟେ ।।
ସୁନତ ପୁତ୍ର କେ ଜନ୍ମ କୂଁ ଅତି ଆନନ୍ଦିତ ନୃପ ଭୟେ ।
ଗୌ, ଧନ, ବର-ଭୂଷନ, ବସନ, ପୁର ପରିଜନ ବିପ୍ରନ ଦୟେ ।।



## ରାଜକୁମାରଙ୍କୁ ସଉତୁଣୀମାନଙ୍କ
## ବିଷ ପ୍ରଦାନ

ଏବଂ ସଂଦହ୍ୟମାନାନାଂ ସପତ୍ନ୍ୟାଃ ପୁତ୍ରସମ୍ପଦା ।
ରାଜ୍ଞ୍ୟୋଽସମତବୃତ୍ତୀନାଂ ବିଦ୍ୱେଷୋ ବଲବାନଭୂତ୍ ॥
ବିଦ୍ୱେଷନଷ୍ଟମତୟଃ ସ୍ତ୍ରିୟୋ ଦାରୁଣଚେତସଃ ।
ଗରଂ ଦଦୁଃ କୁମାରାୟ ଦୁର୍ମର୍ଷା ନୃପତିଂ ପ୍ରତି ॥

(ଶ୍ରୀମଦ୍ଭାଗବତ—୬ସ୍କନ୍ଧ-୧୪ଅ-୪୨, ୪୩ ଶ୍ଳୋ)

### ଛପ୍ପୟ

ଧନ-ଧନ ବାଢ଼ୟୋ ନେହ ଗେହ ସୁତ ତନକ ନ ତ୍ୟାଗେଁ ।
ନହିଁ ଔରନ ଘର କାହିଁ କୃତଦ୍ୟୁତ ମହଲ ବିରାଜେଁ ॥
ସୌତନ ମନ ଅତ ଡାହ ପୁତ୍ର ନହିଁ ଶତ୍ରୁ ଭୟୋ ହୈ ।
କବ ତେଁ ଜନନେୟା ଦୁଷ୍ଟ ଛୀନ ପତିପ୍ରେମ ଲୟୋ ହୈ ॥
ଜା କଣ୍ଟକ କୂଁ କାଟି କେଁ, ନିଷ୍କଣ୍ଟକ ହମ ହୋହିଁ କସ ।
ବିଷ ଦେ ମାରେ ଶତ୍ରୁ କୂଁ, ସବ ମିଲି ନିଶ୍ଚୟ କୟୋ ଅସ ॥

ଏ ସଂସାରରେ ଯେ ଆମର ଶତ୍ରୁ ସେ ବାହାରେ ନୁହେଁ ଆମର ଭିତରେ ଲୁଚି ରହିଥାଏ । କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ—ଏହି ଛଅଟି ଶତ୍ରୁ ସର୍ବଦା ମଣିଷ ଭିତରେ ବାସ କରିଥାନ୍ତି । ଯେ ଏହି ଷଡ଼୍‌ରିପୁଙ୍କୁ ଜୟ କରନ୍ତି, ସେ ହୁଏ ବିଶ୍ୱ-ବିଜୟୀ । କିନ୍ତୁ ଯେ ଏମାନଙ୍କ ଅଧୀନତା ସ୍ୱୀକାର କରେ ସେ ପଦେ ପଦେ ପରାଜୟ ଲାଭ କରେ । ଅନ୍ୟର ସୁଖ, ସମ୍ପଦ ଓ ଉତ୍କର୍ଷକୁ ଦେଖି ମନରେ ଯେଉଁ ଅସନ୍ତୋଷର ଅଗ୍ନି ଜଳି ଉଠେ ତାହାକୁ ଈର୍ଷା କହନ୍ତି । ଈର୍ଷାର ବଶୀଭୂତ ହୋଇ ମଣିଷ ଓ ଅନ୍ୟ ପ୍ରାଣୀ ବଡ଼ ବଡ଼ ପାପକାର୍ଯ୍ୟ କରିପକାନ୍ତି । ନିଜର କ୍ଷତି ସାଧନ କରି ପରର ଉପକାର କରାଯାଏ । ଯେ ସର୍ବଦା କେବଳ ନିଜର ସ୍ୱାର୍ଥସିଦ୍ଧି କରିବାକୁ ଇଚ୍ଛୁକ, ସ୍ୱାର୍ଥରେ ସାମାନ୍ୟତମ ବ୍ୟାଘାତ ଘଟିଲେ ମଧ୍ୟ ଯେ ଉତ୍ତେଜିତ ହୋଇପଡ଼େ ସେ କୃପଣ ନାମରେ ଅଭିହିତ । ସ୍ୱଭାବ ତା'ର କର୍କଶ ହୋଇଯାଏ । ତା' ପାଖରେ ସୁହୃଦ୍‌ଭାବ ରହେନାହିଁ । ଏହି ଶ୍ରେଣୀସ୍ଥ ଧନୀଲୋକେ

ପ୍ରାୟ ହୃଦୟହୀନ ହୋଇଥାନ୍ତି । ସେମାନେ ଜ୍ଞାନ, ଚୈତନ୍ୟ ଅପେକ୍ଷା ସୁନା, ରୂପା, ଟଙ୍କାକୁ ଅଧିକ ପ୍ରେମ କରନ୍ତି । ସେମାନଙ୍କର ପ୍ରେମ ଓ ସୁହୃଦ୍‌ଭାବ ଟଙ୍କା ସୁନା ମଧ୍ୟରେ ସୀମିତ । ଧନ ଲୋଭରେ ସେମାନେ ଯେ କୌଣସି କାର୍ଯ୍ୟ କରିବାକୁ ଆଦୌ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ସେହିପରି କ୍ରୋଧୀ ପୁରୁଷ କାହାରି ପ୍ରିୟଭାଜନ ହୋଇପାରନ୍ତି ନାହିଁ । କ୍ରୋଧ ପରବଶ ହୋଇ ମଣିଷ ନିଜର ଆତ୍ମୀୟ ସ୍ୱଜନଙ୍କୁ ମଧ୍ୟ ହତ୍ୟା କରେ । କାମୁକ ପୁରୁଷର ମଧ୍ୟ ଅନୁରୂପ ଅବସ୍ଥା ଘଟେ । ଯେଉଁ ପୁରୁଷ ସ୍ତ୍ରୀ କାମକୁ ସର୍ବଶ୍ରେଷ୍ଠ ସୁଖ ବୋଲି ମନେ କରନ୍ତି ସେଥିରେ ସାମାନ୍ୟ ବ୍ୟାଘାତ ଉପୁଜିଲେ ସେମାନେ ଅତିମାତ୍ରାରେ କ୍ରୂର ହୋଇ ଉଠନ୍ତି । ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କର କାମବାସନା ଅଧିକ । ତେଣୁ ଯେଉଁ ନାରୀ ସତୀତ୍ୱରୁ ଭ୍ରଷ୍ଟ ହୋଇଯାଏ, ସେ କାମସୁଖ ଲାଭପାଇଁ ଯେ କୌଣସି କ୍ରୂର-କାର୍ଯ୍ୟ କରିବାକୁ ପଛେଇ ଯାଏନାହିଁ । ନ କରିବା କାର୍ଯ୍ୟ ମଧ୍ୟ କାମବଶୀଭୂତା ନାରୀ କରିଥାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏ ସଂସାରକୁ ଭଗବାନ୍ ଅତି ବିଚିତ୍ର ଢଙ୍ଗରେ ତିଆରି କରିଛନ୍ତି । ପରସ୍ପର ବିରୋଧୀ ଉପାଦାନକୁ ନେଇ ଏ ଜଗତ୍ କିପରି ନିର୍ମିତ ହୋଇଛି ତାହା ଭାବିଲେ ଆଶ୍ଚର୍ଯ୍ୟ ନ ହୋଇ ରହି ହୁଏନାହିଁ । ଯେଉଁ ବସ୍ତୁ ଜଣକ ପକ୍ଷରେ ସୁଖକର ତାହା ଅନ୍ୟପକ୍ଷରେ ଅତୀବ ଦୁଃଖକର ପ୍ରତୀତ ହୁଏ । ଚନ୍ଦ୍ର, ଜ୍ୟୋସ୍ନା ସମସ୍ତଙ୍କୁ ସୁଖକର ମନେ ହୁଏ; କିନ୍ତୁ ଚୋର, ବିରହୀ, ବିରହିଣୀଙ୍କ ପକ୍ଷରେ ତାହା ଅତୀବ ଦୁଃଖ-ଦାୟକ ପାଲଟିଯାଏ । ବର୍ଷାରେ ସମସ୍ତେ ଆନନ୍ଦିତ ହେଉଥିବାବେଳେ କୁମ୍ଭାର ବାହାରେ ଥିବା କଞ୍ଚାହାଣ୍ଡି ନଷ୍ଟ ହୋଇ ଯାଉଥିବାରୁ ଦୁଃଖିତ ହୁଏ । ନିଜର ଆତ୍ମୀୟଙ୍କ ମୃତ୍ୟୁରେ ପରିବାର ଦୁଃଖିତ ହୁଏ; କିନ୍ତୁ ଶତ୍ରୁ ଏ ସମ୍ବାଦରେ ଖୁସି ହୁଏ । ଜଣେ ଡକାୟତକୁ ଦେଖିଲେ ବାଟୋଇ ଭୟରେ ଥରହର ହୋଇ କମ୍ପିଉଠେ, କିନ୍ତୁ ସେହି ପଥିକ ନିଜ ପ୍ରିୟା ପାଖକୁ ଯିବାବେଳେ ଖୁବ୍ ଆନନ୍ଦିତ ଥାଏ । ତେଣୁ ସଂସାରରେ ଏପରି କୌଣସି ବସ୍ତୁ ନାହିଁ ଯାହା ସମସ୍ତଙ୍କ ପକ୍ଷରେ ସୁଖକର ବା ହିତକର ମନେ ହୁଏ ।

ମହାରାଜ ଚିତ୍ରକେତୁଙ୍କ ବଡ଼ରାଣୀ କୃତଦ୍ୟୁତିଙ୍କ ପୁଅ ହେଲା । ପ୍ରଜାମାନଙ୍କ ସହିତ ରାଜା ଓ ରାଣୀ ଆନନ୍ଦିତ ହେଲେ । କିନ୍ତୁ କୃତଦ୍ୟୁତିଙ୍କ ସଉତୁଣୀ ଓ ରାଜାଙ୍କ ଅନ୍ୟ ରାଣୀମାନଙ୍କ ମନ ଦୁଃଖରେ ପୂରିଗଲା । ରାଜା ଯେତେବେଳେ ମହାରାଣୀ କୃତଦ୍ୟୁତିଙ୍କୁ ସବୁଠୁ ଅଧିକ ସମ୍ମାନ ଦେଲେ, ତାଙ୍କର ମହଲରେ ଅଧିକ ସମୟ ଅତିବାହିତ କଲେ, ତାଙ୍କ ପୁଅକୁ ଅଧିକ ସ୍ନେହ କଲେ, ସେତେବେଳେ ଅନ୍ୟ ରାଣୀମାନେ ଏହା ସହିପାରିଲେ ନାହିଁ । ରାଜା ମଧ୍ୟ ଦରିଦ୍ର କୋଟିନିଧି ପାଇଲା ପରି ନିଜର ପୁତ୍ରକୁ ସର୍ବାଧିକ ସ୍ନେହ କରିବା ସଙ୍ଗେ ସଙ୍ଗେ ଅନ୍ୟ ରାଣୀମାନଙ୍କୁ କ୍ରମଶଃ ଭୁଲିବାକୁ ଲାଗିଲେ ।

କିନ୍ତୁ ଏପର୍ଯ୍ୟନ୍ତ ରାଜାଙ୍କ ଦୃଷ୍ଟିରେ ସବୁ ରାଣୀ ଥିଲେ ଏକ ପ୍ରକାର । କାହାରି ସମ୍ମାନ ନ ଥିଲା । ରାଜା ମନ ଇଚ୍ଛା ଯେ କୌଣସି ରାଣୀଙ୍କ ମହଲକୁ ଯାଉଥିଲେ ।

ସମସ୍ତେ ନିଜକୁ ଏକ ବୋଲି ଭାବୁଥିଲେ । ବର୍ତ୍ତମାନ ଭେଦଭାବ ସୃଷ୍ଟି ହୋଇଗଲା । ଜଣକର ସିନା ପୁତ୍ରଟିଏ ହେଲା ଅନ୍ୟମାନେ ଚିରଦିନ ପାଇଁ ବନ୍ଧ୍ୟା ହୋଇ ରହିଗଲେ । ବନ୍ଧ୍ୟା ହେଲେ ମଧ୍ୟ ଯଦି ରାଜା ପୂର୍ବପରି ସେମାନଙ୍କୁ ସ୍ନେହ କରିଥାନ୍ତେ, ଆଦର ସତ୍କାର କରିଥାନ୍ତେ ତେବେ ସେମାନେ ସନ୍ତୋଷ ଲାଭ କରିଥାନ୍ତେ; କିନ୍ତୁ ପୁତ୍ର ମୋହରେ ରାଜା ବିମୂଢ଼ ହୋଇଗଲେ । ସେ ଅନ୍ୟରାଣୀମାନଙ୍କ କଥା ପୂରାପୂରି ଭୁଲିଗଲେ । ମହାରାଣୀ କୃତଦ୍ୟୁତି ନିଜର ସୌଭାଗ୍ୟ ପାଇଁ ଗର୍ବ ଅନୁଭବ କରୁଥିବାବେଳେ ଅନ୍ୟ ରାଣୀମାନଙ୍କ ହୃଦୟ ଈର୍ଷାରେ ଜଳିଉଠୁଥିଲା ।

ରାଜନ୍ ! ଏକ ପ୍ରକାର ଦୁଃଖ ବା ବିପଦରେ ପଡ଼ିଥିବା ଲୋକେ ନିଜ ମଧ୍ୟରେ ଥିବା ପାରସ୍ପରିକ ଶତ୍ରୁତାକୁ ଭୁଲିଯାଇ ପରସ୍ପର ପ୍ରତି ଖୁବ୍ ସହାନୁଭୂତିଶୀଳ ହୋଇ-ପଡ଼ନ୍ତି । ସାଧାରଣତଃ ବନ୍ୟା ସମୟରେ ଭାସିଯାଉଥିବା ଏକ ବୃକ୍ଷ ଶାଖାକୁ ଆଶ୍ରୟ କରି ସାପ, ମଣିଷ ଓ ଅନ୍ୟ ହିଂସ୍ରଜନ୍ତୁ ରହିଥିବାର ଦେଖାଯାନ୍ତି । ସମସ୍ତେ ନିଜ ନିଜର ହିଂସ୍ରତାକୁ ଭୁଲି ଶାନ୍ତ ଭାବେ ପଡ଼ିରହନ୍ତି । ରାଜାଙ୍କର ଅନ୍ୟ ରାଣୀମାନେ ସମସ୍ତେ ଏକ ପ୍ରକାର ଦୁଃଖରେ ଦୁଃଖିତା ହୋଇଥିଲେ । ସନ୍ତାନହୀନ ହୋଇଥିବାରୁ ରାଜା ସମସ୍ତଙ୍କୁ ତିରସ୍କାର କଲା ପରି ମନେ ହେଉଥିଲା । ତେଣୁ ସମସ୍ତଙ୍କ ହୃଦୟ ଜଳୁଥିଲା ।

ସବୁ ରାଣୀ ମିଶି ଏକତ୍ର ବିଚାର କଲେ । ସେମାନଙ୍କ ମଧ୍ୟରେ ଯେ ସବୁଠୁ ସୁନ୍ଦରୀ ଓ ଯୁବତୀ ଥିଲା, ସେ ସହାନୁଭୂତି ପ୍ରକାଶ କରିବାକୁ ଯାଇ କହିଲା—"ଭଉଣୀମାନେ ! ଦେଖ, ଆମେ ସମସ୍ତେ ରାଜପୁତ୍ରୀ । ରାଜବଂଶରେ ଆମର ଜନ୍ମ । ଆମେ ଇଚ୍ଛାରେ ଏଠାକୁ ଆସି ନାହୁଁ । ରାଜା ଆମକୁ ଶାସ୍ତ୍ରୀୟ ବିଧି ଅନୁସାରେ ବିବାହ କରିଛନ୍ତି । ଆଜି ପର୍ଯ୍ୟନ୍ତ ଆମ ସମସ୍ତଙ୍କୁ ସେ ସମାନ ବ୍ୟବହାର କରୁଥିଲେ; କିନ୍ତୁ ଆମ ସଉତୁଣୀ କୃତଦ୍ୟୁତିଙ୍କର ପୁତ୍ର ହେବା ପରଠାରୁ ସେ ଆମକୁ ଅପମାନ କରିଆସୁଛନ୍ତି । କୃତଦ୍ୟୁତିର ଦାସୀଙ୍କ ସହିତ ରାଜା ଯେପରି ମଧୁର ବ୍ୟବହାର କରୁଛନ୍ତି, ତାହା ମଧ୍ୟ ଆମକୁ ମିଳୁନାହିଁ । ଅଧିକନ୍ତୁ ଆମକୁ ଦେଖିବାମାତ୍ରେ ସେ ମୁହଁ ବୁଲାଇ ନେଉଛନ୍ତି । ଆମ ମହଲକୁ ଆସିବା ତ ଦୂରର କଥା, ଦିନେହେଲେ ଭଲମନ୍ଦ ପଚାରୁ ନାହାନ୍ତି । ପତିହିଁ ସ୍ତ୍ରୀଲୋକର ସର୍ବସ୍ୱ । ପତିଙ୍କ ସହିତ ନିଜକୁ ସେ ଭାଗ୍ୟବତୀ ମନେ କରେ । ଯେଉଁ ପତି ନିଜର ସ୍ତ୍ରୀଙ୍କୁ ମାନନ୍ତି ନାହିଁ, ସଉତୁଣୀର ଦାସୀ ପ୍ରତି କରୁଥିବା ବ୍ୟବହାରଠାରୁ ନିକୃଷ୍ଟ ବ୍ୟବହାର କରନ୍ତି, ସେପରି ଭାଗ୍ୟହୀନା, ପତି ତିରସ୍କୃତା, ଦୁର୍ଭଗା, ପାପିସ୍ନୁସୀ, ସନ୍ତାନହୀନା ନାରୀ ଜୀବନର କି ମୂଲ୍ୟ ଅଛି ? ଆଜି ଆମର ସେହି ଅବସ୍ଥା । ପତିଙ୍କଦ୍ୱାରା ଆମେ ସମସ୍ତେ ଅପମାନିତା ହୋଇଛୁ । ପତି ସେବା ଥିଲା ଆମର ଧର୍ମ । କିନ୍ତୁ କୃତଦ୍ୟୁତି ଆଜି ଆମର ସେ ଅଧିକାର ଛଡ଼େଇ ନେଇଛି । ତେଣୁ ଆମେ ସମସ୍ତେ ବାଧ୍ୟହୋଇ ଆଜି ଧର୍ମହୀନା ହୋଇଛୁ ।'

ଏହା ଶୁଣି ଦ୍ୱିତୀୟା ରାଣୀ କହିଲେ—"ସ୍ତ୍ରୀ ତ ସବୁବେଳେ ପରାଧୀନ ହୋଇ ରହି-ଆସିଛି । ସେ ଦାସୀ ହୋଇ ରହିଛି । ପତିଙ୍କ ଆଦେଶ ପାଳନ କରିବା ତା'ର କର୍ତ୍ତବ୍ୟ ହୋଇ ଆସିଛି । ସ୍ୱାମୀଙ୍କ ମନୋଭାବକୁ ବୁଝି ସ୍ତ୍ରୀକୁ ବ୍ୟବହାର କରିବାକୁ ପଡ଼େ ।"

ଏହାପରେ କୃତଦ୍ୟୁତା ରାଣୀ କହିଲେ—"ଦାସୀ ଭାବେ ରହିବାରେ ଦୁଃଖ କିଛିନାହିଁ । ପତିଙ୍କ ସେବାର ସୁଯୋଗ ମିଳିଲେ ଦାସୀପଣ ସବୁଠୁ ସୁଖକର ମନେ ହୁଏ, କାରଣ ପତି ସେବାଦ୍ୱାରା ନାରୀ ସମ୍ମାନିତା ହୁଏ । କିନ୍ତୁ ଆଜି ଆମେ ସମସ୍ତେ ସନ୍ମାନହୀନା ହୋଇଥିବାରୁ କୃତଦ୍ୟୁତିଙ୍କ ଦାସୀର ଦାସୀଠାରୁ ବି ଆମେ ନିମ୍ନସ୍ତରକୁ ଆସିଯାଇଛୁ । କୃତଦ୍ୟୁତିର ଦାସୀଙ୍କ ସହିତ ଭଲମନ୍ଦ କଥାବାର୍ତ୍ତା ହେଉଥିଲେ ମଧ୍ୟ ରାଜା ଆମକୁ ପଦଟିଏ ପଚାରୁ ନାହାନ୍ତି ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏହିପରି ଅନ୍ୟ ରାଣୀମାନେ ମଧ୍ୟ ପରସ୍ପର ମଧ୍ୟରେ କ୍ରୋଧ, ଦ୍ୱେଷପୂର୍ଣ୍ଣ କଥାବାର୍ତ୍ତା କଲେ । ମହାରାଣୀ କୃତଦ୍ୟୁତିଙ୍କ ପୁତ୍ର ସମ୍ପତ୍ତି ଦେଖି ସେମାନଙ୍କ ହୃଦୟରେ ଇର୍ଷାର ବହ୍ନି ଜଳି ଉଠିଲା । ରାଜା ଉପେକ୍ଷା ହେଲା ଏହାର ଇନ୍ଧନ । ସେମାନେ ଏକତ୍ର ହୋଇ ରାଜା ଓ ତାଙ୍କ ମଧ୍ୟରେ କୃତଦ୍ୟୁତିର ପୁତ୍ରକୁ ଏକ ପ୍ରତିବନ୍ଧକରୂପେ ବିଚାର କଲେ । ସେହି ପୁତ୍ର ପାଇଁ ସମସ୍ତ ପ୍ରକାର ଲାଞ୍ଛନା, ଅବହେଳା, ଅପମାନ ସହିବାକୁ ପଡ଼ୁଛି ବୋଲି ସେମାନେ ସ୍ଥିର କଲେ । ତେଣୁ କିପରି ସେ ପୁତ୍ରକୁ ହତ୍ୟା କରାଯିବ ତାହାର ଉପାୟ ଚିନ୍ତା କରାଗଲା । ଶେଷରେ ଦିନେ ଶୋଇ-ଥିବା ଅବସ୍ଥାରେ ସେ ପିଲାକୁ ବିଷ ଦିଆଗଲା । ବିଷପାନ ମାତ୍ରେ ଶିଶୁଟି ଚିରନିଦ୍ରାରେ ଶୋଇପଡ଼ିଲା ।"

ରାଜନ୍ ! "ଏହି ସ୍ତ୍ରୀଲୋକମାନଙ୍କର ହୃଦୟକୁ ଜାଣିବା ସମ୍ଭବ ନୁହେଁ । ଏମାନେ ସ୍ନେହମୟୀ, କୋମଳ ହୃଦୟା, ଦୟାମୟୀ ହେଲେହେଁ ବେଳେବେଳେ ସରଳା ଇର୍ଷା ଦ୍ୱେଷର ବଶୀଭୂତ ହୋଇ ଏପରି କ୍ରୂର ହୃଦୟା ପାଲଟି ଯାଆନ୍ତି ଯେ କୌଣସି ପ୍ରକାର ଦୁଃସାହସ କାର୍ଯ୍ୟ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ନିଜ ଧର୍ମରେ ଥିବାବେଳେ ନାରୀ ହୁଏ ସାକ୍ଷାତ୍ ଲକ୍ଷ୍ମୀ, କାମଧେନୁ ପରି ସର୍ବସୁଖଦାୟିନୀ; କିନ୍ତୁ କାମବଶୀଭୂତ ହେବା ପରେ ସେ ଇର୍ଷା, ଦ୍ୱେଷ, ଅସ୍ମଗ୍ଲାନି ଓ ପ୍ରତିହିଂସାର ଅଧୀନ ହୋଇଯାଏ । ସେ ଯେତେବେଳେ ହୋଇଯାଏ ରଣଚଣ୍ଡୀ ଓ ଭୟଙ୍କର ରାକ୍ଷସୀ, ସେତେବେଳେ କଠିନତମ, ନିଷ୍ଠୁରତମ କାର୍ଯ୍ୟ କରେ । ସେ ପତି, ପୁତ୍ରଙ୍କୁ ମାରି ଦେଇପାରେ, ମାତାପିତାଙ୍କୁ ବିଷ ଦେଇପାରେ ଏବଂ ନିଜେ ଆତ୍ମହତ୍ୟା ମଧ୍ୟ କରିପାରେ ।"

ମହାରାଜ ଚିତ୍ରକେତୁଙ୍କ ରାଣୀମାନେ କୃତଦ୍ୟୁତିଙ୍କ ସୌଭାଗ୍ୟ ଦେଖି ଇର୍ଷାରେ ଜଳିପୋଡ଼ି ଯାଉଥିଲେ । ରାଜାଙ୍କ ପୁତ୍ର ସ୍ନେହକୁ ସେମାନେ ସହିପାରିଲେ ନାହିଁ । ସେମାନେ ଏହାକୁ ଅପମାନ ମନେ କଲେ ଏବଂ ଏହାର ପ୍ରତିଶୋଧ ନେବା ପାଇଁ ରାଜକୁମାରକୁ ବିଷ ଦେଇ ହତ୍ୟା କଲେ ।

ମଣିଷ କେତେ ଉଚ୍ଚ ଅଭିଳାଷ ମନରେ ପୋଷଣ କରେ; କିନ୍ତୁ ଶେଷରେ ତା'ର ମନୋରଥ ବିଫଳ ହୋଇଥାଏ । ମହାରାଣୀ କୃତଦ୍ୟୁତି ଭାବୁଥିଲେ ପୁତ୍ର ତାଙ୍କର

ଶୋଇଛନ୍ତି; କିନ୍ତୁ ସେ ଯେ ଚିରଦିନ ପାଇଁ ଶୋଇଯାଇଛନ୍ତି ଏକଥା ତାଙ୍କୁ ଜଣାଯାଇନାହିଁ । କୃତଦ୍ୟୁତି ଭାବୁଛନ୍ତି ପୁଅ କଣ ଆଜି ଏତେ ସମୟ ଧରି ଶୋଇଲାଣି, ଦେଖିବି କି ? କିନ୍ତୁ ନିଦ ଭାଙ୍ଗିଗଲେ ପିଲାର ମୁଣ୍ଡରେ ଆଘାତ ଲାଗିବ । ଏହା ଭାବି କୃତଦ୍ୟୁତି ଏପାଖ ସେପାଖ ବୁଲିବାକୁ ଲାଗିଲେ କିନ୍ତୁ ପିଲା ପାଖକୁ ଗଲେନାହିଁ ।

## ଛପ୍ପୟ

ଭଇ ସବନ କୀ ବୁଦ୍ଧି ଭ୍ରଷ୍ଟ ଈର୍ଷ୍ୟା ମନ ଆଈ ।
ସୋୱତ ଶିଶୁ କୁଁ ଏକ ଦିବସ ବିଷ ଦୟୋ ଖବାଈ ।।
ମର୍ୟୋ ସୌତ କେ ପୁତ୍ର ସବନ ମନ ସୁଖ ଅତି ହୋୱେ ।
ଇତ କୃତଦ୍ୟୁତି ନିଶ୍ଚିନ୍ତ କୁମର ମମ ସୁଖ ତେଁ ସୋୱେ ।।
କଛୀ ନୀଂଦ ଜଗେ ଲଲ, ନହିଁ ଅନବନ ମନ ହୋହି କହିଁ ।
ମମତାବସ ଅସ ସୋଚକେ, ସୁତହିଁ ଜଗାବତ ମାତୁ ନହିଁ ।।



# ମୃତପୁତ୍ର ପାଇଁ ପିତାମାତାଙ୍କ ଶୋକ

ପତିଂ ନିରୀକ୍ଷ୍ୟୋରୁଶୁଚାର୍ପିତଂ ତଦା

ମୃତଂ ଚ ବାଲଂ ସୁତମେକସନ୍ତତମ୍ ।

ଜନସ୍ୟ ରାଜ୍ଞୀ ପ୍ରକୃତେଶ୍ଚ ହୃଦ୍‌ରୁଜମ୍

ସତୀ ଦଧାନା ବିଲଲାପ ଚିତ୍ରଧା ॥

(ଶ୍ରୀମଦ୍‌ଭାଗବତ-୬ଷ୍ଠ ସ୍କନ୍ଧ-୧୪ଅ-୫୨ ଶ୍ଳୋ)

## ଛପ୍‌ପୟ

ଦେର ବହୁତ ଜବ ଭଈ ମାତୁ ମନ ଭୟୁ ଅତି ଲାଗେୟା ।
ନିତ ତେ। ସୋବତ ନୈଁକ ଆଜ ଅବ ତକ ନହିଁ ଜାଗେୟା ॥
ଧାଈ ପଠାଇ ତୁରନ୍ତ ଲଲ୍ କୁଁ ଲେ ଆ ପ୍ୟାରୀ ।
ଧାଈ ଜାଇ ଲଖି ମୃତକ ସୁତହିଁ, କିଲକାରୀ ମାରୀ ॥
ହାୟ ! ଅଭାଗିନୀ ଲୁଟି ଗଈ, ହାୟ ! ଦଈ କିହ କା ଭଈ ।
ହା ! ମମ ଛୌନା ! ଲାଲ ! ସୁତ ! ୟୌଁ କହି ଦାସୀ ଗିର ଗଈ ॥

ସୁଖ ସହିତ ଦୁଃଖର ଓ ଦୁଃଖ ସହିତ ସୁଖର ଘନିଷ୍ଠ ସମ୍ବନ୍ଧ ଅଛି । ଯାହାକୁ ପାଇଲେ ଯେତିକି ଅଧିକ ସୁଖ ମିଳେ ତାକୁ ହରାଇଲେ ସେତିକି ଅଧିକ ଦୁଃଖ ଅନୁଭବ କରିବାକୁ ପଡ଼େ । ଦୁଃଖର ଗୁରୁତ୍ୱ ବା ଲଘୁତ୍ୱ ବ୍ୟକ୍ତି ଉପରେ ନିର୍ଭର କରେ ନାହିଁ । ଏହା ସମ୍ବନ୍ଧ ଉପରେ ନିର୍ଭର କରେ । ଆମର ଯାହା ସହିତ ଘନିଷ୍ଠ ସମ୍ବନ୍ଧ ଅଛି, ଯାହାକୁ ଆମେ ଅଧିକ ସ୍ନେହ କରୁ ତା'ର ବିୟୋଗରେ ଆମେ ମର୍ମାହତ ହୋଇପଡ଼ୁ । ଆମେ ଶ୍ମଶାନ ପାଖରେ ରହୁଁ । ପ୍ରତିଦିନ ଅନେକ ମୃତ ପୁରୁଷଙ୍କୁ ଦେଖିଲେ ମଧ୍ୟ ମନରେ କୌଣସି ଦୁଃଖ ଆସୁ ନାହିଁ; କାରଣ ସେମାନଙ୍କ ସହିତ ଆମର କୌଣସି ସମ୍ପର୍କ ନାହିଁ । କେହି ପଚାରିଲେ ଆମେ କହୁ—ଏହା ତ ନିତିଦିନିଆ ଘଟଣା । ମୃତ୍ୟୁ ଓ ଜନ୍ମ ଏବଂ ଜନ୍ମ ଓ ମୃତ୍ୟୁ ପ୍ରତିଦିନ ଘଟୁଛି ଓ ଘଟିବ । କେହି ଅମର ହୋଇ ରହେ ନାହିଁ । ଯେ ଜନ୍ମ ହୁଏ

ସେ ମରେ । କିନ୍ତୁ ଯେତେବେଳେ ଆମର କେହି ସମ୍ପର୍କୀୟ ମୃତ୍ୟୁବରଣ କରେ ସେତେବେଳେ ଆମେ ଦୁଃଖିତ ହେଉଁ । ଆହୁରି ଅଧିକ ଦୁଃଖ ଅନୁଭବ କରୁ, ଯେତେବେଳେ ନିଜର କୌଣସି ଭାଇ, ବନ୍ଧୁ, ପିତା, ମାତା ବା ନିକଟତମ ଅନ୍ୟ କେହି ମୃତ୍ୟୁ ବରଣ କରେ । ଯଦି ଯୁବକ ପୁତ୍ର ମରିଯାଏ ତେବେ ଦୁଃଖର ସୀମା ରହେନାହିଁ । ସେତେବେଳେ ଜ୍ଞାନ, ଧ୍ୟାନ, ବେଦାନ୍ତ, ଉପାସନା ସବୁ କିଛି ଭୁଲି ଲୋକ ଦିନରାତି କେବଳ ଆଖିରୁ ଲୁହ ବୁହାଏ । ଏଥିରୁ ମୃତ୍ୟୁ ଦୁଃଖର କାରଣ ନୁହେଁ ବୋଲି ପ୍ରତିପାଦିତ ହେଉଛି । ଯଦି ଦୁଃଖର କାରଣ ମୃତ୍ୟୁ ବୋଲି କହିବା ତେବେ ଯେ କେହି ମଲେ ବି ଦୁଃଖ ହୁଅନ୍ତା । କିନ୍ତୁ ଘଟଣାଟା ଠିକ୍ ତା' ନୁହେଁ । କେହି ଜଣେ ମଲେ ଦୁଃଖରେ କିଏ ଭାଙ୍ଗିପଡ଼େ ତ ଅନ୍ୟ କେହି ଆନନ୍ଦିତ ହୁଏ । ଯଥାର୍ଥରେ ଦୁଃଖର କାରଣ ହେଉଛି ମୋହ-ଜନିତ ସ୍ନେହ ଓ ମମତା-ପୂରିତ ଆସକ୍ତି । ଯାହାର ଆସକ୍ତି ନାହିଁ କି କାହାରି ପ୍ରତି ଅଧିକ ଅନୁରାଗ ନାହିଁ ସେଠାରେ କାହାରି ମୃତ୍ୟୁରେ ଦୁଃଖ ଲାଗେ ନାହିଁ କି କାହାରି ଜନ୍ମରେ ଆନନ୍ଦ ଆସେ ନାହିଁ । ନିରାସକ୍ତ ବ୍ୟକ୍ତି ସବୁ ଅବସ୍ଥାରେ ସମଭାବରେ ରହେ । ଏ ପ୍ରକାର ସମଦର୍ଶୀ ଜ୍ଞାନୀ ସଂସାରରେ ପ୍ରାୟ ବିରଳ । ଯଦି କାହାରି ସହିତ ପ୍ରେମପୂର୍ଣ୍ଣ ଭାବରେ ମିଳିମିଶି ରହି, ସ୍ନେହ ପୂର୍ବକ ଆଲିଙ୍ଗନ ଚୁମ୍ବନ କରି, ନୟନପିତୁଲା ପରି ଲାଳନ ପାଳନ କରି ମଧ୍ୟ ତା'ର ବିୟୋଗରେ ଦୁଃଖ ଆସେନାହିଁ—ତେବେ ତା'ର ହୃଦୟ ବଜ୍ରଠାରୁ କଠିନ ବା ସେ ହୃଦୟହୀନ ବୋଲି ଗ୍ରହଣ କରିନେବାକୁ ପଡ଼ିବ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ସେହି କ୍ରୂର ହୃଦୟା ରାଣୀମାନେ ଫୁଲ ପରି ସୁନ୍ଦର ସୁକୁମାର ରାଜକୁମାରଙ୍କୁ ବିଷ ଦେଇ ଅତି ନିର୍ଦ୍ଦୟ ଭାବେ ହତ୍ୟା କଲେ । ତିନି-ଚାରି-ବର୍ଷ ବୟସର ପିଲାଟି ଖୁବ୍ ସୁନ୍ଦର ହୋଇଥିଲା । କୋଇଲିର ସ୍ୱର ପରି ମଧୁର ସ୍ୱରରେ ଖଣ୍ଡି ଖଣ୍ଡି କଥା କହି ସମସ୍ତଙ୍କ ମନ ହରିନେଉଥିଲା । କେତେବେଳେ ମା'ର ଗଳାରେ ଝୁଲିପଡ଼ୁଥିଲା ତ କେତେବେଳେ ବାପାଙ୍କ କୋଳରେ ବସି ଖେଳରେ ଲାଗିଯାଉଥିଲା । ସେ ହସିଲେ ମୋତି ଝରିପଡ଼ୁଥିଲା ପରି ଜଣାପଡ଼ୁଥିଲା । ଯେତେବେଳେ ରାଜହଂସ ପରି ମା'ର ହାତ ଧରି ଗୋଟି ଗୋଟି କରି ପାଦ ପକାଇ ଚାଲୁଥିଲା ସେତେବେଳେ ଚିତ୍ରକେତୁଙ୍କ ଆନନ୍ଦର ସୀମା ରହୁ ନଥିଲା । ତା'ର ମଙ୍ଗଳ ପାଇଁ ମା' ନାନା ବ୍ରତ, ପୂଜା, ଉପାସନା ଓ ବିଭିନ୍ନ ଦେବଦେବୀଙ୍କୁ ମାନସିକ କରୁଥିଲେ । ରାଣୀ ପିଲାର ଦେହରେ ଲୁଣ ଛୁଆଁଇ ନିଆଁରେ ସେ ଲୁଣ ପକାଉଥିଲେ । ଯେପରି କାହାରି ଦୃଷ୍ଟି ନ ପଡ଼ିବ । କେତେ ପ୍ରକାର ମନ୍ତ୍ରଯନ୍ତ୍ର, ଜଡ଼ିବୁଟିର ବ୍ୟବସ୍ଥା ରାଜକୁମାରଙ୍କ ପାଇଁ କରାଯାଇଥିଲା, ରାଣୀ ନିଜେ ପୁତ୍ରକୁ ଗାଧୋଇ ଦେଉଥିଲେ. ଖୁଆଉଥିଲେ, ନାନା ପ୍ରକାର ବସ୍ତ୍ର, ଆଭୂଷଣ ପିନ୍ଧାଉଥିଲେ । ଆଖିରେ କଳା ଦେଉଥିଲେ । ପୁତ୍ରକୁ ସଜେଇ ରାଜାଙ୍କ କୋଳରେ ବସାଇ ଦେଉଥିଲେ । ରାଜା ପୁତ୍ରର ସ୍ପର୍ଶରେ ସ୍ୱର୍ଗସୁଖ ଅନୁଭବ କରୁଥିଲେ ଏବଂ ନିଜେ ପିଲା ହୋଇ ତା' ସହିତ ଖେଳୁଥିଲେ । ସୁନା ଦୋଳିରେ ଶୁଆଇ ମା' ନାନାବାୟା ଗୀତ ଗାଇ ଶୁଆଇ ପକାଉଥିଲେ ।

ଅନ୍ୟ ରାଣୀମାନେ ପିଲାକୁ ଦେଖିବାକୁ ଆସୁଥିଲେ । ମହାରାଣୀ କୃତଦ୍ୟୁତି ସେମାନଙ୍କୁ ଆସିବା ପାଇଁ ମନା କରୁ ନ ଥିଲେ ମଧ୍ୟ ଅନ୍ୟ ରାଣୀମାନଙ୍କ ଆସିବା ତାଙ୍କୁ ଭଲ ଲାଗୁ ନ ଥିଲା । ରଙ୍କନିଧି ପରି ସେ ପୁଅକୁ ବଡ଼ ଯତ୍ନରେ ଲୁଚାଇ ରଖିବା ପାଇଁ ସବୁବେଳେ ଚେଷ୍ଟା କରୁଥିଲେ । ପୁତ୍ର ଉପରେ କାହାର ଖରାପ ଦୃଷ୍ଟି ପଡ଼ିଲା କି ବୋଲି ଭାବି ସେ ବାରମ୍ବାର ପୁତ୍ର ମୁହଁକୁ ଚାହୁଁଥିଲେ ।

ମଧ୍ୟାହ୍ନ ସମୟ । ପିଲାଟି ଦୁଧ ପିଇ ଶୋଇଯାଇଥିଲା । ରାଣୀ ତାକୁ ଦୋଳି ପଲଙ୍କରେ ଶୁଆଇ ଦେଇଥିଲେ । ମୁହଁରେ ମାଛି ନ ବସିବା ପାଇଁ ଏକ ସୂକ୍ଷ୍ମ ରେଶମ୍ ବସ୍ତ୍ର ଘୋଡ଼ାଇ ଦେଇଥିଲେ । ଦାସୀ ପଙ୍ଖା କରୁଥିଲା ସମୟରେ ଦୁଇ ଚାରିଜଣ ରାଣୀ ଆସି ପୁଅ ଶୋଇଥିବା ଦୋଳିକୁ ଝୁଲାଇବାରେ ଲାଗିଲେ । ସେମାନେ ଅତି ତୀବ୍ର ବିଷ କୋଉଁଠୁ ଆଣିଥିଲେ କେଜାଣି, ସେ ବିଷକୁ ଶୁଂଘିବା ମାତ୍ରେ ଲୋକ ମରିବା ସୁନିଶ୍ଚିତ । ଅନ୍ୟମାନଙ୍କ ଦୃଷ୍ଟି ଏଡ଼ାଇ ସେମାନଙ୍କ ମଧ୍ୟରୁ ଜଣେ ପୁଅକୁ ବିଷ ଦେଇଦେଲା । ବିଷ ପ୍ରୟୋଗ ମାତ୍ରେ ପିଲାଟି ମରିଗଲା । ତା'ର ଚକ୍ଷୁର ସ୍ପନ୍ଦନ ସ୍ଥିର ହୋଇଗଲା, ଶରୀର ନୀଳବର୍ଣ୍ଣ ଓ ମୁଖ ମଳିନ, ତେଜୋହୀନ ହୋଇ ପଡ଼ିଲା । ରାଣୀମାନେ ସାବଧାନତାର ସହିତ ରେଶମ ବସ୍ତ୍ର ଖଣ୍ଡିକ ଘୋଡ଼ାଇ ଦେଇ ସେଠାରୁ ଚାଲିଗଲେ । ଏହା ପରେ ପୁଣି ଦୁଇ ଚାରିଜଣ ରାଣୀ ଆସିଲେ, ଦାସୀ ଆସିଲେ । ଏହିପରି ପ୍ରତିଦିନ ଯେପରି ରାଣୀମାନେ ଓ ଦାସୀମାନେ ଆସନ୍ତି ସେହିପରି ସମସ୍ତେ ଆସିଲେ । ପିଲାଟି ଶୋଇଥିବାରୁ ଦାସୀମାନେ ଦୂରେଇ ଯାଇଥିଲେ ।

ମହାରାଣୀ କୃତଦ୍ୟୁତି ମଧ୍ୟ ଏପାଖ ସେପାଖ ହେଉଥିଲେ । କିନ୍ତୁ ତାଙ୍କ ମନ ଥିଲା ପୁଅ ପାଖରେ । ଏହି ସମୟରେ ପିଲାଟି ପ୍ରତିଦିନ ଘଣ୍ଟେ ଦୁଇଘଣ୍ଟା ଶୋଇଯାଇଥାଏ । ନିଦ ଭାଙ୍ଗିବା ମାତ୍ରେ ସେ କାନ୍ଦି ଉଠେ । ମା' ଦଉଡ଼ିଯାଇ ତାକୁ ଉଠାଇ ଆଣି କୋଳରେ ଜାକି ଧରି ସ୍ତନ୍ୟପାନ କରାନ୍ତି । ନିଦରୁ ଉଠିବା ମାତ୍ରେ ମା'ର କ୍ଷୀର ଖାଇବା ପୁଅର ଅଭ୍ୟାସରେ ପଡ଼ିଯାଇଥାଏ । ମା' ମଧ୍ୟ ଖୁବ୍ ଆନନ୍ଦ ଅନୁଭବ କରନ୍ତି, ସ୍ନେହରେ ତାଙ୍କ ସ୍ତନରେ କ୍ଷୀର ଭରିଯାଏ । ପିଲାଟି ଉଠିବାରେ ବିଳମ୍ବ କଲେ ମା' ନିଜେ ଯାଇ ତାକୁ ଉଠାଇବା ପାଇଁ, ତା'ର ନିଦ ଭାଙ୍ଗିବା ପାଇଁ ଚେଷ୍ଟା କରନ୍ତି ।

ପୁଅ ଉଠିବାର ସମୟ ହୋଇଯିବାରୁ ମା' ଯାଇ କେତେଥର ତାକୁ ଚାହିଁଲେ । ପୁଅ ଉଠୁ ନାହିଁ । ଠିକ୍ ଅଛି, ନିଦ ଭାଙ୍ଗି ନାହିଁ, ଶୋଇଥାଉ । ଭଲ ନିଦ ହେଲେ ପିଲାଙ୍କ ଦେହ ଭଲ ରହେ । ଏହିପରି ଭାବୁ ଭାବୁ ଦୁଇ, ତିନି, ଚାରି ଘଣ୍ଟା କଟିଗଲା । ଏବେ ମା'ଙ୍କର ସନ୍ଦେହ ହେଲା । ପୁଅ ତ ଏତେ ସମୟ କେବେ ଶୁଏନାହିଁ । ପଲଙ୍କ ଉପରେ ଥାଇ ମହାରାଣୀ ଡାକ ଦେଲେ "ଧାଈ ! ତୁ ପୁଅ ପାଖରେ ଅଛୁ ନା ନାହିଁ । ଆଜି ବହୁତ ଡେରି ହୋଇଗଲାଣି, ଏପର୍ଯ୍ୟନ୍ତ ପୁଅ ଉଠିଲା ନାହିଁ । ତୁ ତାକୁ ଉଠାଇ ଆଣି ମୋ' ପାଖରେ ଶୁଆଇଦେ । ଆଜି କଣ ହେଲା ? କେବେ ତ ଏତେ ସମୟ ଶୁଏନାହିଁ ।"

ରାଣୀଙ୍କ ଆଦେଶ ପାଇ ଧାଈ ଧୀରେ ଧୀରେ ପିଲାର ମୁହଁରୁ ଲୁଗା କାଢ଼ିଦେଲା । ଲୁଗା କାଢ଼ିବାମାତ୍ରେ ସେ ଯାହା ଦେଖିଲା ସ୍ତମ୍ଭୀଭୂତ ହୋଇ ରହିଗଲା । ରାଜକୁମାରଙ୍କର ସମଗ୍ର ଶରୀର ନୀଳ ପଡ଼ିଯାଇଛି । ମୁହଁରୁ ଫେଣ ବାହାରୁଛି । ଆଖିର ପତା ସ୍ଥିର ହୋଇଯାଇଛି । ଜୀବନ ନଥିଲା ପରି ପିଲାଟି ପଡ଼ିରହିଛି । ଧାଈ ଧୀରେ ଧୀରେ କମ୍ପିତ-ହୃଦୟରେ ପିଲାକୁ ହଲାଇଲା; କିନ୍ତୁ ପିଲାଟିର ପ୍ରାଣ ନାହିଁ, ସେ କେତେବେଳୁ ପରଲୋକ ଗମନ କରିସାରିଛି । ତାକୁ ଫାଶରେ ବାନ୍ଧି ଯମରାଜ ନିଜ ପୁରକୁ ନେଇଯାଇଛନ୍ତି । ବର୍ତ୍ତମାନ ତା'ର ପ୍ରାଣହୀନ ଶରୀର ମାତ୍ର ଦୋଳିରେ ପଡ଼ିରହିଛି । ଏହା ଦେଖି ଧାଈ 'ହା ମୋ ଛୁଆ' କହି ଭୂମିରେ ଲୋଟିପଡ଼ିଲା । ଧାଈତଳେ ପଡ଼ିଯିବା ଓ କାନ୍ଦିବା ଶୁଣି ରାଣୀଙ୍କ ହୃଦୟରେ ଏକ ବଡ଼ ଧକ୍‌କା ଲାଗିଲା । ସେ ଆଖିପିଛୁଳାକେ ପଲଙ୍କରୁ ଉଠିପଡ଼ି ପୁଅର ଦୋଳି ପାଖକୁ ଧାଇଁ ଆସିଲେ । ସେଠାରେ ପୁଅର ଅବସ୍ଥା ଯାହା ଦେଖିଲେ ସେଥିରେ ତାଙ୍କ ହୃଦୟ ବିଦାରି ହୋଇଗଲା । ସେ ନିଜକୁ ସମ୍ଭାଳି ପାରିଲେ ନାହିଁ । ଅତ୍ୟଧିକ ଦୁଃଖହେତୁ ସେ ମୂର୍ଚ୍ଛିତ ହୋଇପଡ଼ିଲେ ।

ଭୂପତିତା ମୂର୍ଚ୍ଛିତା ରାଣୀଙ୍କ ମସ୍ତକରୁ ବସ୍ତ୍ର ଖସିଯାଇଥିଲା । କେଶ ବିକ୍ଷିପ୍ତ ହୋଇ ପଡ଼ିଥିଲା, ମୁଣ୍ଡବାଳରେ ସଜାହୋଇଥିବା ମାଳତୀ ଫୁଲଗୁଡ଼ିକ ଚାରିଆଡ଼େ ବିଛୁଡ଼ି ପଡ଼ିଥିଲା । ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଅସ୍ତବ୍ୟସ୍ତ ହୋଇଯାଇଥିଲା । ସେ ମଝିରେ ମଝିରେ କେବଳ ଚିତ୍କାର କରି ଉଠୁଥିଲେ । ମୃତ ବାଛୁରିର ମା' ପରି ସେ ଡାକ ଛାଡ଼ୁଥିଲେ । ତାଙ୍କ ଦୁଇ ଆଖିରୁ ଦୁଇ ଅଶ୍ରୁର ଧାରା ଅବାରିତ ଭାବରେ ବହୁଥିଲା । ଛାତିକୁ ବାରମ୍ବାର ବାଡ଼େଇ ସେ 'ହାୟ ମୋ' ପୁଅ, ହା ମୋ' ଜୀବନ ତୁ ମୋତେ ଛାଡ଼ି କୁଆଡ଼େ ଗଲୁ'—ବୋଲି କହି ଉଚ୍ଚସ୍ୱରରେ କାନ୍ଦିବାକୁ ଲାଗିଲେ । ତାଙ୍କର କରୁଣ କ୍ରନ୍ଦନ ଧ୍ୱନି ସମଗ୍ର ଅନ୍ତଃପୁରରେ ବ୍ୟାପିଗଲା । ଦାସଦାସୀ, ରାଣୀ, ପ୍ରତିହାରୀ ସମସ୍ତେ ଦୌଡ଼ି ଆସିଲେ । ରାଜକୁମାରଙ୍କ ମୃତ୍ୟୁ ହୋଇ ଯାଇଛି ବୋଲି ଜାଣି ସମସ୍ତେ କାନ୍ଦିବାକୁ ଲାଗିଲେ । ଯେଉଁ ରାଣୀମାନେ ଏହି ନୀଚକାର୍ଯ୍ୟ କରିଥିଲେ ସେମାନେ ମଧ୍ୟ କିଛି ନ ଜାଣିଲା ପରି ଆସି 'କଣ ହେଲା, କଣ ହେଲା, ଏବେ ତ ପୁଅ ଖେଳୁଥିଲା । ହାୟ ସର୍ବନାଶ ହୋଇଗଲା' ବୋଲି କହି କହି କୃତଦ୍ୟୁତିଙ୍କଠାରୁ ମଧ୍ୟ ଆହୁରି ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲେ । ସ୍ତ୍ରୀଲୋକମାନଙ୍କର ଚରିତ୍ର ସ୍ୱୟଂ ଭଗବାନଙ୍କୁ ଅଗୋଚର. ସେଠାରେ ମଣିଷର ଗୃହ କଣ ଅଛି ?

ଏହି ଦୁର୍ଘଟଣା ଘଟିବାବେଳେ ମହାରାଜ ଚିତ୍ରକେତୁ ରାଜସଭାରେ ରାଷ୍ଟ୍ର-ସମ୍ବନ୍ଧରେ ଭଲମନ୍ଦ ଆଲୋଚନା କରୁଥିଲେ । ହଠାତ୍ ଅନ୍ତଃପୁରରୁ କରୁଣ କ୍ରନ୍ଦନ ଶୁଣି ସେ ନୀରବ ହୋଇଗଲେ । ଏହି ସମୟରେ ଦାସୀଟିଏ ଦୌଡ଼ିଆସି କାନ୍ଦି କାନ୍ଦି କହିଲା – "ମହାରାଜ ! କୁମାର ଆମ୍ଭମାନଙ୍କୁ ଛାଡ଼ି ଚାଲିଗଲେ ।" ଏତିକି କହି ଦାସୀଟି ମୂର୍ଚ୍ଛିତା ହୋଇ ତଳେ ପଡ଼ିଗଲା । ରାଜକୁମାରଙ୍କର ମୃତ୍ୟୁ ହୋଇଗଲା – ଏହା ଶୁଣିବାମାତ୍ରେ ରାଜାଙ୍କ ସମଗ୍ର ଶରୀର ଅବସନ୍ନ ହୋଇପଡ଼ିଲା । ସେ ଦ୍ରୁତବେଗରେ ଅନ୍ତଃପୁରଆଡ଼କୁ ଯିବା ବାଟରେ କଣ୍ଟେଇ ହୋଇ ତଳେ ପଡ଼ିଗଲେ । ମନ୍ତ୍ରୀମାନେ ଦୌଡ଼ିଯାଇ ରାଜାଙ୍କୁ ଉଠାଇ ଆଣିଲେ ।

ସେତେବେଳକୁ ରାଜା ସଙ୍କୀର୍ତ୍ତନ ହୋଇ ପଡ଼ିଥିଲେ । ସ୍ନେହାନୁରାଗ ହେତୁ ଅତ୍ୟଧିକ ଶୋକର ଆଘାତ ସେ ସହି ନ ପାରି ଅଚେତ ହୋଇଯାଇଥିଲେ । ସେ ଯିବାକୁ ଚାହୁଁଥିଲେ ମାତ୍ର ତାଙ୍କ ପାଦ ଚଳୁ ନ ଥିଲା । କିଛି କହିବାପାଇଁ ଚାହୁଁଥିଲେ ମାତ୍ର ପାଟିରୁ ଭାଷା ବାହାରୁ ନ ଥିଲା । ସେ ଛଟପଟ ହେଉଥିଲେ, ବିଲବିଲଉଥିଲେ । ଅନ୍ତଃପୁରକୁ ଯିବା ପାଇଁ ଇଚ୍ଛା କରୁଥିଲେ ମଧ୍ୟ ଚାଲିବା ପାଇଁ ଅସମର୍ଥ ହୋଇପଡ଼ିଥିଲେ । ବାକ୍‌ରୁଦ୍ଧ ହୋଇପଡ଼ିଥିବାରୁ ତାଙ୍କୁ ମୃତ ରାଜକୁମାରଙ୍କ ପାଖକୁ ନେଇଯିବା ପାଇଁ କାହାକୁ କହିପାରୁ ନ ଥିଲେ । ମନ୍ତ୍ରୀଗଣ ରାଜାଙ୍କ ମନୋଭାବ ଜାଣିପାରି ତାଙ୍କୁ ଧରି ଅନ୍ତଃପୁରକୁ ନେଇଗଲେ । ମୃତପୁତ୍ର ଓ କ୍ରନ୍ଦନରତା ରାଣୀଙ୍କୁ ଦେଖି ରାଜାଙ୍କ ସର୍ବଶେଷ ଧୈର୍ଯ୍ୟ ଭାଙ୍ଗି ପଡ଼ିଲା । ସେ ପୁଣି ଥରେ ମୂର୍ଚ୍ଛାଗତ ହୋଇପଡ଼ିଲେ । ରାଣୀମାନେ ସମବେତ ହୋଇ ମିଥ୍ୟା ସମବେଦନା ଦେଖାଉଥାନ୍ତି, କିନ୍ତୁ କୃତଦ୍ୟୁତିଙ୍କ କ୍ରନ୍ଦନ ଓ ଅନ୍ୟ ରାଣୀମାନଙ୍କ କ୍ରନ୍ଦନରେ ଥିବା ପାର୍ଥକ୍ୟ ବାରି ହୋଇ ପଡ଼ୁଥିଲା ।

ମହାରାଜାଙ୍କ ଆଖି ଆଗରେ ଘନ ଅନ୍ଧାର ଘୋଟିଯାଇଥିଲା । ମସ୍ତକରୁ ରାଜମୁକୁଟ ଖସିପଡ଼ିଥିଲା । ବସ୍ତ୍ର, ଆଭୂଷଣ ବିକ୍ଷିପ୍ତ ହୋଇଯାଇଥିଲା । ରାଜା କାନ୍ଦିବାକୁ ଚାହୁଁଥିଲେ, କିନ୍ତୁ ଅତ୍ୟଧିକ ଶୋକ ହେତୁ ଆଖିର ଲୋତକ ଶୁଖି ଯାଇଥିଲା । ବଜ୍ରାଘାତପ୍ରାପ୍ତ ବୃକ୍ଷ ପରି ମହାରାଜ ଝାଉଁଳି ପଡ଼ିଥିଲେ । ମହାରାଣୀ କୃତଦ୍ୟୁତି ମହାରାଜାଙ୍କର ଦୟନୀୟ ଅବସ୍ଥା ଦେଖି ଆହୁରି ଅଧିକ କରୁଣ ସ୍ୱରରେ କାନ୍ଦିବାକୁ ଲାଗିଲେ । ଆଖି ଲୁହରେ ତାଙ୍କର ବସ୍ତ୍ର ପୂରାପୂରି ଆର୍ଦ୍ର ହୋଇଯାଇଥିଲା । ସେ ପାଗଳ ପରି ମୁଣ୍ଡ ହଲଉଥିଲେ । ଆଜି ଆଉ ଲାଜଲଜ୍ଜା ତାଙ୍କର ନ ଥିଲା । ମନ୍ତ୍ରୀ, ପୁରୋହିତଙ୍କ ଆଗରେ ମଧ୍ୟ ସେ ଉଚ୍ଚ ସ୍ୱରରେ କାନ୍ଦୁଥିଲେ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! "ରାଣୀଙ୍କ କ୍ରନ୍ଦନ ଓ କାରୁଣ୍ୟରେ ମଣିଷ ହୃଦୟ କାହିଁକି ପଥର ବି ତରଳିଯିବ । ସେହି ଶୋକୋଚ୍ଛ୍ୱାସକୁ ବର୍ଣ୍ଣନା କଲାପରି ଭାଷା ଓ ସାମର୍ଥ୍ୟ ମୋର ନାହିଁ । ମୁଁ କିଛି ସମୟ ବିଶ୍ରାମ କରିବା ପରେ କୃତଦ୍ୟୁତିଙ୍କ କରୁଣ ବିଳାପ ବର୍ଣ୍ଣନା କରିପାରିବି ।"

## ଛପ୍‌ପୟ

ଦାସୀ କୁଁ ଲଖି ବିକଳ, ଗଇ ତହଁ ଭଗି କେ ରାନୀ ।
ମୃତକ-ବସ୍ତ୍ର ଲଖି ମାତୁ ଧେନୁ ସମ ଗିରି ଉକରାନୀ ।।
କରୁଣା କ୍ରନ୍ଦନ ସୁନେ୍ୟା ସେବକା ସବ ଘବରାଇ ।
କପଟ ବେଦନା ପ୍ରକଟ କରତ ରାନୀ ସବ ଆଇ ।।
ସମାଚାର ଭୂପତି ସୁନେ୍ୟା. ହୃଦୟ-ବିଦାରକ ଅତି ବିକଟ ।
ପହୁଁଚେ ଅନ୍ତଃପୁର ତୁରତ, ଗିରତ-ପରତ ସୁତ ଶବ ନିକଟ ।।

# କୃତଦ୍ୟୁତିଙ୍କ ବିଳାପ

ନାହଂ ତନୂଜ ଦଦୃଶେ ହତମଙ୍ଗଳା ତେ
ମୁଗ୍ଧସ୍ମିତଂ ମୁଦିତବୀକ୍ଷଣମାନନାବ୍ଜମ୍ ।
କିଂ ବା ଗତୋଽସ୍ୟ ପୁନରନ୍ୱୟମନ୍ୟଲୋକଂ
ନୀତୋଽଘୃଣେନ ନ ଶୃଣୋମି କଳା ଗିରସ୍ତେ ॥

(ଶ୍ରୀମଦ୍ଭାଗବତ -- ୬ଷ୍ଠ ସ୍କନ୍ଧ-୧୪ଅ-୫୮ ଶ୍ଳୋ)

**ଛପ୍‌ପୟ**

ଫଟୈ କୃତଦ୍ୟୁତି ହୃଦୟ ରୁଦନ ଭୂପତି କୋ ସୁନି-ସୁନି ।
ଅସ୍ତ-ବ୍ୟସ୍ତ ତନୁ ଭୟୋ ଭୂମି ପେ ଲୋଟୈ ପୁନି-ପୁନି ॥
କଜ୍ଜଲ କାଲିଖ ମିଲେ ଅଶ୍ରୁ-ମୋଚନ କରି ରୋଏଁ ।
ଚନ୍ଦନ-ଚର୍ଚ୍ଚିତ ପୀନ-ପୟୋଧର ସତତ ଭିଗୋଏଁ ॥
ଅହୋ ବିଧାତା ନିର୍ଦ୍ଦୟୀ, ତୋହି ଦୟା ନହିଁ ନେକ ହୂଁ ।
କହୁଁ ମିଲାଏଁ ପ୍ରେମ ତେଁ, ବିଛୁରାଏଁ ଦୁଃଖ ତେଁ କହୂଁ ॥

ହେ ଭଗବାନ୍ ! "ତୁମେ ଗୃହସ୍ଥମାନଙ୍କୁ ସବୁ ଦୁଃଖ ଦିଅ ପଛକେ, ପୁତ୍ର ବିୟୋଗ ଦୁଃଖ କାହାକୁ ଦିଅନାହିଁ । ଯେଉଁ ପୁତ୍ରକୁ ପିତାମାତା ପ୍ରାଣଠାରୁ ବଳି ଅଧିକ ଆଦର ଯତ୍ନ କରନ୍ତି, ପାଳନ ପୋଷଣ କରନ୍ତି, ପ୍ରତି ମୁହୂର୍ତ୍ତରେ ସମସ୍ତ ପ୍ରକାର ସୁବିଧା ପ୍ରତି ଦୃଷ୍ଟି ଦିଅନ୍ତି, ପ୍ରେମର ଯେ ଜୀବନ୍ତ ସାକାର ସ୍ୱରୂପ, ଯାହାଠାରେ ନିଜର ଆତ୍ମା ନୂତନ ରୂପ ଧରି ନିଜ କୋଳରେ କ୍ରୀଡ଼ା ରଚନା କରେ, ଯାହାକୁ ଦେଖିଲେ ମନରେ ଅପୂର୍ବ ଆନନ୍ଦ ଜାତ ହୁଏ, ତାକୁ ପିତାମାତାଙ୍କ ଆଖି ଆଗରୁ ଦୂରେଇ ନେବା ଅତୀବ ଦୁଃଖଦାୟକ ଘଟଣା । ପିତାମାତା ଶିଶୁପୁତ୍ରର ମୁଖ ଚୁମ୍ବନ କରି ଅପୂର୍ବ ମାଧୁରୀ ଅନୁଭବ କରନ୍ତି, ତାକୁ କୋଳରେ ଧରି, ଛାତିରେ ଜାକିବାମାତ୍ରେ ସମଗ୍ର ଶରୀର ପୁଲକିତ ହୁଏ । ପୁତ୍ରର ଚଞ୍ଚଳତା, ବାଳସୁଲଭ ଚପଳତା ହୃଦୟରେ ନୂତନ ସ୍ଫୂର୍ତ୍ତିର ସଞ୍ଚାର କରେ । ଯାହାର ହସିବା ଓ କାନ୍ଦିବାରେ ଅଲୌକିକ ଆନନ୍ଦ ଅନୁଭୂତ ହୁଏ ସେହି ପୁତ୍ର ପିତାମାତାଙ୍କ ଆଗରେ ଯଦି ମୃତ୍ୟୁବରଣ କରେ ତେବେ ତାଙ୍କର କପରି ଦୁଃଖ ହୁଏ ତାହା ସେହି ମାତା ପିତାଙ୍କ ବିନା ଅନ୍ୟ କେହି ଅନୁଭବ କରିପାରିବେ ନାହିଁ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପ୍ରାଣଠାରୁ ବଳି ପ୍ରିୟ, ନୟନପିତୁଳା, ଜୀବନର ସହାୟକ ଏକମାତ୍ର ପୁତ୍ରର ମୃତ୍ୟୁରେ ରାଣୀ କୃତଦ୍ୟୁତି ବିଧାତାଙ୍କୁ ଗାଳିଦେଇ ଅତି କରୁଣ ସ୍ୱରରେ କାନ୍ଦି କାନ୍ଦି ପ୍ରଳାପ କରିବାକୁ ଲାଗିଲେ । କାନ୍ଦି କାନ୍ଦି ସେ କହିଲେ—'ରେ ନିର୍ଦ୍ଦୟ ବିଧି ! ତୋର ଟିକିଏ ହେଲେ ଦୟା ନାହିଁ । କିଏ ତୋତେ ସୃଷ୍ଟି କଲା ?' କିଏ ଏହି ପଦରେ ତୋତେ ବସାଇଲା ? ତୁ ଏଡ଼େ ନିର୍ବୋଧ ଯେ ଜାଣିଶୁଣି ବୃଦ୍ଧ ପିତାମାତାଙ୍କ ଆଗରେ ତାଙ୍କର ଅବୋଧ ବାଳକକୁ ହତ୍ୟାକାରୀ ବ୍ୟାଧ ପରି ଛଡ଼ାଇ ନେଇଗଲୁ । ଯଦି ତାକୁ ମାରିବାର ଥିଲା ତେବେ ଜନ୍ମ ଦେଲୁ କାହିଁକି ? ପିଲାଟାକୁ ଏତେ ସୁନ୍ଦର ଓ ଲାବଣ୍ୟମୟ କଲୁ କାହିଁକି ? ଜୀବହତ୍ୟାରେ ଯଦି ତୋତେ ଖୁସି ଲାଗୁଥିଲା ତେବେ ମୋତେ ମାରିଦେଲୁ ନାହିଁ କାହିଁକି ? ବୁଢ଼ାମାନେ ଥାଉଁ ଥାଉଁ ଶ୍ରେଷ୍ଠ ପିଲାଙ୍କୁ ମାରିଦେବା, ତୋର ମୂର୍ଖତା ନୁହେଁ ତ ଆଉ କଣ ?"

ତୁ କହିବୁ, ସଂସାରରେ ଏପରି କୌଣସି ନିୟମ ନାହିଁ, ଯେ ପ୍ରଥମେ ବୁଢ଼ାମାନେହିଁ ମୃତ୍ୟୁବରଣ କରିବେ । ଯାହାର ଶେଷ ସମୟ ଆସିଲା, ସେ ଯେଉଁଠି ଯେଉଁ ଅବସ୍ଥାରେ ଥିଲେ ମଧ୍ୟ ମରିବ । ଜନ୍ମ ମୃତ୍ୟୁ ବ୍ୟକ୍ତିର ପ୍ରାରବ୍ଧ ଉପରେ ନିର୍ଭର କରେ । ଯଦି ଏହାହିଁ ଠିକ୍ ଅର୍ଥାତ୍ କୌଣସି କ୍ରମ ନାହିଁ କି ନିୟମ ନାହିଁ; ତେବେ ଏପରି ମାରିଦେବାର ଆବଶ୍ୟକତା କଣ ଥିଲା ? ହସୁଥିବା, ଖେଳୁଥିବା ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କୁ ତାଙ୍କ ବାପ ମା'ଙ୍କ କୋଳରୁ ଛଡ଼େଇ ନେବା, ସେମାନଙ୍କୁ ବିୟୋଗ ଦୁଃଖରେ ଛଟପଟ କରିବା ଶତ୍ରୁତା ଆଚରଣର ନିଦର୍ଶନ ନୁହେଁ କି ?"

ଜୀବର ଜନ୍ମ ଓ ମୃତ୍ୟୁ ବିଷୟରେ ଯଦି କୌଣସି କ୍ରମ ନାହିଁ, ତେବେ ଏତେ ସ୍ନେହର ମମତା ତିଆରି କଲୁ କାହିଁକି ? ପ୍ରାଣୀର ହୃଦୟରେ ପ୍ରେମର ବୀଜ, ସ୍ନେହର ଅଙ୍କୁର ସୃଷ୍ଟି କଲୁ କାହିଁକି ? ଏହା ଅପେକ୍ଷା ହୃଦୟର ଶୂନ୍ୟସ୍ଥାନରେ ଏକ ପଥର ରଖି ଦେଇଥିଲେ ଭଲ ହୋଇଥାନ୍ତା । ଫଳରେ କେହି କାହାକୁ ସ୍ନେହ, ପ୍ରେମ, ଆଦର କରନ୍ତେ ନାହିଁ କି ସେଥିପାଇଁ ବିରହ ଯନ୍ତ୍ରଣା, ଦୁଃଖଦ ଚିନ୍ତା କରନ୍ତେ ନାହିଁ ।

ତୁ ପୁଣି କହିବୁ, "ଯଦି ପ୍ରାଣୀମାନଙ୍କ ମଧ୍ୟରେ ପରସ୍ପର ପ୍ରତି ପ୍ରେମ ନ ଥାନ୍ତା, ପତି ପତ୍ନୀକୁ, ପୁତ୍ର ମାତାପିତାଙ୍କୁ ଭଲପାଉ ନଥାନ୍ତା, ମାତୃ-ହୃଦୟରେ ସନ୍ତାନ ପ୍ରତି ମମତା ନଥାନ୍ତା, ତେବେ ଏ ସୃଷ୍ଟି ସମୃଦ୍ଧ ହୁଅନ୍ତା କିପରି ?" ଯଦି ସୃଷ୍ଟିର ଅଭିବୃଦ୍ଧି ପାଇଁ ତୁ ସ୍ନେହ, ପ୍ରେମ ତିଆରି କରିଛୁ ତେବେ ଶ୍ରେଷ୍ଠ ଶ୍ରେଷ୍ଠ ଅବୋଧ ବାଳକଙ୍କୁ ଯେଉଁମାନେ ସୃଷ୍ଟିବୃଦ୍ଧିର ସହାୟକ ସେମାନଙ୍କୁ ଅସମୟରେ ହତ୍ୟା କରୁଛୁ କାହିଁକି ? କେହି ନିଜେ ଲଗାଇଥିବା ବିଷବୃକ୍ଷକୁ ମଧ୍ୟ କାଟିପକାଏ ନାହିଁ; କିନ୍ତୁ ତୁ ଏଡ଼େ ନିର୍ଦ୍ଦୟ ଯେ ସ୍ନେହଲତାକୁ ଲଗାଇ ତା'ର ମୂଳୋଚ୍ଛେଦ କରୁଛୁ । ଏହା ତୋର କ୍ରୂରତା ନୁହେଁ କି ? ଏହାଠାରୁ ବଳି ଜଡ଼ତା ଓ ନିଷ୍ଠୁରତା ଆଉ ସଂସାରରେ କଣ ଅଛି ?

ମହାରାଣୀ ମନକୁ ମନ ଏହିପରି ଅସଂଯତ ପ୍ରଳାପ କରିବାକୁ ଲାଗିଲେ । ହଠାତ୍ ଉଠିପଡ଼ି ଦୋଳିରୁ ମୃତ ପୁତ୍ରର ଶବକୁ ନେଇ ଆସି କୋଳରେ ଶୁଆଇ ଦେଲେ । ତା'ର ମୁଣ୍ଡ ଝୁଲିପଡ଼ିଥିଲା । ମୁହଁରୁ ବାହାରିଥିବା ନୀଳ ଫେଣ ଶୁଖି ଯାଇଥିଲା । ଆଖି ଦୁଇଟି ସ୍ଥିର ହୋଇଯାଇଥିଲା । ଫୁଲ ପରି ସୁନ୍ଦର ସୁକୁମାର, ଆଦରର ଧନ, ପୁଅକୁ ଚାହିଁ ରାଣୀ ପୁଣି ମୂର୍ଚ୍ଛିତା ହୋଇ ଢଳିପଡ଼ିଲେ । ମୂର୍ଚ୍ଛାଭଙ୍ଗ ପରେ ବାରମ୍ବାର ଶିଶୁର ମୁଖରେ ଚୁମ୍ବନ ଦେଇ କହିଲେ—"ବାବୁ ! ତୁ ମୋତେ ଅନାଥିନୀ କରି କୁଆଡ଼େ ଚାଲିଗଲୁ ? ବାବୁରେ ! ତୁ ଯୁଆଡ଼େ ଯାଆ ପଛକେ, ଏ ହତଭାଗିନୀ ମା'କୁ ସାଙ୍ଗରେ ନେଇଯା । ଆଗରୁ ମୁଁ କିଛି କହିବା ପୂର୍ବରୁ ତୁ କାନ୍ଦିପକାଉଥିଲୁ । ଏବେ ମୁଁ କେତେବେଳୁ ତୋତେ ଡାକୁଛି, କିଛି କହୁନାହୁଁ କାହିଁକି ? ମୁଁ କ'ଣ ଭୁଲ୍ କଲିଯେ ତୁ ମୋ' ଉପରେ ରାଗିଛୁ ? ଯଦି ମୋର କିଛି ଭୁଲ୍ ହୋଇଛି, ତୁ କହୁନାହୁଁ, କିନ୍ତୁ ତୋ'ର ବାପା ଦୁଃଖରେ କାତର ହୋଇ ଭୂମିରେ ଲୋଟୁଛନ୍ତି, ତାଙ୍କୁ ଟିକିଏ ଦେଖ । ତାଙ୍କ କୋଳକୁ ଟିକିଏ ଯା ।"

ବାବୁ ! ତୁ ତ ମୋତେ ଆଉ ତୋ ବାପାଙ୍କୁ ଖୁବ୍ ଭଲପାଉଥିଲୁ । ମୁଁ ଯୁଆଡ଼େ ଯାଉଥିଲି ତୁ ମୋ ସାଙ୍ଗରେ ଯାଉଥିଲୁ । ଆଜି ମୋତେ ଏକା ଛାଡ଼ି ତୁ ପାଶହସ୍ତ ଯମ-ରାଜାଙ୍କ ସାଙ୍ଗରେ କାହିଁକି, କୁଆଡ଼େ ଯାଉଛୁ ? ଏହି ସଂସାରକୁ ଯେ ସବୁବେଳେ କନ୍ଦାଏ ସେହି ମୃତ୍ୟୁଦେବ ସାଙ୍ଗରେ ତୁ ଯାଆନାରେ, ତୁ ଯାଆନା । ବାବୁ ! ଦେଖ, ଆମେ ତୋ' ଉପରେ କେତେ ବଡ଼ ବଡ଼ ଆଶା ପୋଷଣ କରିଥିଲୁ । ଆମେ ଭାବିଥିଲୁ—ତୁ ଆମକୁ 'ପୁ' ନାମକ ନରକରୁ ପାର କରିଦେବୁ । ଆମପରି ଅପୁତ୍ରିକଙ୍କ ପକ୍ଷରେ ଦୁସ୍ତର ଘୋର ନରକକୁ ଆମେ ତୋହରି ସାହାଯ୍ୟରେ ଅତି ସହଜରେ ପାର ହୋଇଯାଇଥାନ୍ତୁ । ତୁ ତ ଆମକୁ ମଝି ବାଟରେ ଅସହାୟ ଅବସ୍ଥାରେ ଛାଡ଼ିଦେଇ ଗଲୁ । ମୁଁ ତୋ ମା' । ମହାରାଜ ତୋର ବାପା । ଆମେ କେବେ କୌଣସି ପ୍ରକାର ଦୁଃଖ ପାଇନାହୁଁ । କିନ୍ତୁ ତୋ' ପାଇଁ ଆମେ ଆଜି ଅସହ୍ୟ ଦୁଃଖ ସହୁଛୁ । ଆମକୁ ଏହି ଦୁର୍ଦ୍ଦଶାରେ ଦେଖି ମଧ୍ୟ ତୋର ଟିକିଏ ଦୟା ଆସୁନାହିଁ ?

ବାବୁରେ ! ତୁ ଅନେକ ସମୟ ହେଲା ଶୋଇପଡ଼ିଲୁଣି । ଏବେ ଉଠ୍ । ତୋ'ର ଖଣ୍ଡି ଖଣ୍ଡି ମଧୁର କୋମଳ କଥା କହି ଆମର ଶୋକ-ସନ୍ତପ୍ତ ହୃଦୟକୁ ଶାନ୍ତ କର । ଆଚ୍ଛା, ଆଜି ତୁ ତାହାହେଲେ ଆମ ଦୁଇଜଣଙ୍କ ଉପରେ ଅସନ୍ତୁଷ୍ଟ ହୋଇଛୁ । ହେଉ, ତୁ ପ୍ରତିଦିନ ଯେଉଁମାନଙ୍କ ସହିତ ଖେଳା-ବୁଲା କରୁ, ସେହି ସାଙ୍ଗସାଥୀମାନେ ଆସିଛନ୍ତି । ତୋ' ସାଙ୍ଗରେ ଖେଳିବାପାଇଁ ଉତ୍ସୁକ ହୋଇ ରହିଛନ୍ତି । ତୁ ତୋ' ଖେଳନା ନେଇ ତାଙ୍କ ସହିତ ଖେଳିବୁ ଉଠ୍ । ଉଠ୍ ବାବୁ ! ଉଠ୍ ! ଆଜି ଏତେ ନିଷ୍ଠୁର କାହିଁକି ହେଉଛୁ ? ବହୁତ ଶୋଇଲୁଣି । ଶୋଇବାର ବି ଗୋଟାଏ ସୀମା ଅଛି । ତୋତେ ଖୁବ୍ ଭୋକ ଲାଗୁଥିବ । ତୋ'ର ଖାଇବା ସମୟ ଗଡ଼ି ଗଲାଣି । ଏତେବେଳକୁ ତୁ ଦୁଇଥର ଖାଇସାରିଥାନ୍ତୁ । ଦୁଇଥର ମୋ'ଠାରୁ କ୍ଷୀର ପିଇସାରିଥାନ୍ତୁ । ଉଠ୍ ବାବୁ ! ମୋ'ଠାରୁ

କ୍ଷୀର ଖାଇବୁ, ଉଠ୍ ! ମୋତେ ଯନ୍ତ୍ରଣାରେ ଛଟପଟ କରାଇ ତୁ କୁଆଡ଼େ ଯାଆନା । ଯଦି ତୋର କୁଆଡ଼େ ଯିବା ଦରକାର, ତେବେ ମୋତେ ସାଙ୍ଗରେ ନେଇଯା ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଶୋକସନ୍ତପ୍ତା ରାଜମହିଷୀ ପାଗଳୀ ହୋଇଗଲେ । ଅତ୍ୟଧିକ ଦୁଃଖ ହେତୁ ତାଙ୍କର ବୁଦ୍ଧିବୃତ୍ତି ଲୋପ ପାଇଗଲା । ଜଡ଼ ଓ ଚେତନ ବିଷୟରେ ତାଙ୍କର ଆଉ ଜ୍ଞାନ ରହିଲା ନାହିଁ । ମୃତ ପୁତ୍ରକୁ ଜୀବିତ ଥିଲାପରି ସେ ବାରମ୍ବାର ଉଠିବା ପାଇଁ ଡାକୁଥିଲେ । ବାରମ୍ବାର ଡାକିବା ପରେ ବି ଯେତେବେଳେ ପୁଅଠାରୁ କୌଣସି ଉତ୍ତର ନ ମିଳିଲା ସେତେବେଳେ ସେ ଆହୁରି ଅଧିକ ବ୍ୟାକୁଳ ହୋଇ କାନ୍ଦି କାନ୍ଦି କରୁଣ ହେଲାପରି କହୁଥିଲେ—ବାବୁ ! ମୁଁ ଭାବୁଛି, ତୁ ଆମକୁ ଛାଡ଼ି ଅନ୍ୟ-ପୁରକୁ ଚାଲିଯାଇଛୁ ଯେଉଁଠାରୁ ଆଉ କେହି ଦେହ ଧରି ଫେରିଆସେ ନାହିଁ । ସେଥିପାଇଁ ଆଜି ତୋର ସୁନ୍ଦର ମୁଖ ମଳିନ ପଡ଼ିଯାଇଛି । ସେଇଥିପାଇଁ ତୋର ମଧୁର କଥା ଆଉ ଶୁଣାଯାଉ ନାହିଁ । ସମ୍ଭବତଃ ଯମରାଜ ତୋତେ ବାନ୍ଧିକରି ବହୁତ ଦୂରକୁ ନେଇଯାଇଛି । ତେଣୁ ମୁଁ ଯେତେ ଡାକିଲେ ମଧ୍ୟ ତୋତେ ଶୁଣାଯାଉନାହିଁ । ସେଥିପାଇଁ ତୁ ମୋ' କଥାର ଉତ୍ତର ଦେଉନାହୁଁ ।"

ରାଜନ୍ ! ଏହିପରି ବାରମ୍ବାର ଅତି କରୁଣ ଭାବେ ମହାରାଣୀ ବିଳାପ କରୁଥିଲେ । ସେ ଉଠୁଥିଲେ, ମାତ୍ର ପୁଣି ମୂର୍ଚ୍ଛିତା ହୋଇ ତଳେ ପଡ଼ିଯାଉଥିଲେ । ପାଗଳ ପରି ଏଣୁତେଣୁ ବକୁଥିଲେ । ରାଣୀଙ୍କ ଏପରି କରୁଣ କ୍ରନ୍ଦନ କରୁଥିବାର ଦେଖି ରାଜା ମଧ୍ୟ ମୁକ୍ତ କଣ୍ଠରେ ରୋଦନ କରୁଥିଲେ । ରାଜାଙ୍କ କ୍ରନ୍ଦନରେ ଦ୍ରବୀଭୂତ ହୋଇ ମନ୍ତ୍ରୀ' ପୁରୋହିତ, ପୁରବାସୀ ଓ ସେହି କୃତଦ୍ୟୁତିଙ୍କ ସପତ୍ନୀ ରାଣୀମାନେ ମଧ୍ୟ କାନ୍ଦିବାକୁ ଲାଗିଲେ । ସମସ୍ତଙ୍କ କରୁଣ କ୍ରନ୍ଦନରେ ଅନ୍ତଃପୁର ପୂରିଉଠିଲା । ରାଜଧାନୀର ବାୟୁମଣ୍ଡଳ ସ୍ତବ୍ଧ ହୋଇଗଲା । ଚାରିଆଡ଼େ ଶୋକର ଛାୟା ଖେଳିଗଲା ।

## ଛପ୍ପୟ

ହାୟ ! କହାଁ ଜିହ ଭୟୋ କୁଁବର କେ ନାତୋ ତୋର୍‌ୟୋ ।
ଛଲକର ଯମପୁର ଗୟୋ ଭାଗ୍ୟ ମେରୋ ପୁନ ଫୋରୟୋ ॥
ବେଟା ମୋକୂଁ ଛୋଡ଼ି ଅକେଲେ ମତ ତୂ ଜାଓ୍ୱେ ।
ଦୂର ଦେଶ ମହଁ ଦୂଧ ତୋଇ କୋ ତହଁ ପିଆଓ୍ୱେ ॥
ବେଟା ! ସୋଓ୍ୱତ ଆଜ ତେ, ଦେରୀ ତୋକୂଁ ହୈ ଗଈ ।
ଯୋ ଅତିଶୟ ସୁତ ଶୋକ ମହଁ, ରାନୀ ବହୁ ବ୍ୟାକୁଲ ଭଈ ॥



# ଚିତ୍ରକେତୁଙ୍କ ସହିତ
# ନାରଦ ଓ ଅଙ୍ଗିରାଙ୍କ ସାକ୍ଷାତ

ଏବଂ କଶ୍ମଲମାପନ୍ନଂ ନଷ୍ଟସଂଜ୍ଞମନାୟକମ୍ ।
ଜ୍ଞାତ୍ୱାଙ୍ଗିରା ନାମ ମୁନିରାଜଗାମ ସନାରଦଃ ॥
(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୪ଅ-୬୧ଶ୍ଳୋକ)

## ଛପ୍ପୟ

ରାଣୀ ରାଜା ଶୋକ ସିନ୍ଧୁ ମହିଁ ବୁଡ଼ିଲେଁ ପୁନି-ପୁନି ।
ଆସିଲେ ଦେବର୍ଷି ଧୀର ଅଙ୍ଗିରା ଅରୁ ନାରଦ ମୁନି ॥
ଦେଖି ବେସୁଧି ଭୂପ ଉଠେଂ ନାହିଁ ବିପ୍ର ଉଠାଇଲେଂ ।
କହି-କହି ସୁନ୍ଦର ଯୁକ୍ତି ଉଭୟ ମୁନି ସ୍ନେହେ ସମ୍ମୁଖାଇଲେଂ ॥
ଜୀବ କାଳ କ୍ରମ ତେଣଂ ମିଳିଲେଁ ସମସ୍ତ ପାଇ ବିଚ୍ଛୁରେଂ ତୁରିତ ।
ରଚି ମାୟା ମାୟେଶ ପୁନି, ବାଳକବତ୍ କ୍ରୀଡ଼ା କରିତ ॥

ସଂସାରରେ ସର୍ବଦା ପରୋପକାର ନିରତ ସାଧୁ ଯଦି ନଥାନ୍ତେ ତେବେ, ଜଗତ ରୌରବ ନର୍କରେ ପରିଣତ ହୋଇଯାନ୍ତା । ଏ ଜଗତରେ ଆଧି, ବ୍ୟାଧି, ଚିନ୍ତା, ଶୋକ, ଭୟ, ମତ୍ସର, ଈର୍ଷା, ଦ୍ୱେଷ, କ୍ଲେଶ ଆଦି ବିପତ୍ତି ବ୍ୟତୀତ ଆଉ କଣ ଅଛି ? ଜିହ୍ୱା ଓ ଉପସ୍ଥର କ୍ଷଣିକ ସୁଖ ପରିଣାମରେ ଦୁଃଖଦାୟକ ହୁଏ । ଅଧିକ ଜିହ୍ୱା ଲୋଲୁପତାରୁ ଅରୁଚି, ମନ୍ଦାଗ୍ନି, ଗ୍ରହଣୀ ଆଦି ଦୁରାରୋଗ୍ୟ ସୃଷ୍ଟି ହୁଏ । ସଂସାରର ଯେଉଁ ଦିଗକୁ ଦୃଷ୍ଟି ଦେଲେ କେବଳ ଦୁଃଖ ବ୍ୟତୀତ ଅନ୍ୟ କିଛି ଦୃଷ୍ଟିଗୋଚର ହୁଏ ନାହିଁ । ଏହି ଦୁଃଖରୁ ପ୍ରକୃତ ସାଧୁହିଁ ରକ୍ଷା ପାଇଥାଏ । ଶୋକସାଗର ନିମଗ୍ନ ବ୍ୟକ୍ତିକୁ ହାତ ଧରି ଉଦ୍ଧାର କରି ଆଣିବାରେ ସମର୍ଥ ହେଉଛନ୍ତି କେବଳ ପରୋପକାରୀ ସାଧୁ । ସାଧୁ ହିଁ ଅଶାନ୍ତକୁ ଶାନ୍ତ କରନ୍ତି, କାନ୍ଦୁଥିବା ଲୋକକୁ ହସାନ୍ତି, ଦୁଃଖୀକୁ ସୁଖୀ କରନ୍ତି, ମୃତକୁ ଜୀବନ ଦିଅନ୍ତି ଏବଂ ସଂସାରର ମଝି ଦରିଆରେ ବୁଡ଼ିଯାଉଥିବା ଲୋକକୁ ପାରି କରନ୍ତି । ଯାହା ଉପରେ ସାଧୁଙ୍କର ଦୟା ଜାତ ହୁଏ ତା'ର ମୁକ୍ତି ହୋଇଯାଏ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! "ସର୍ବତ୍ର ବିଚରଣ କରୁଥିବା, ଯୁଆଡ଼େ ଇଚ୍ଛା ସେଆଡ଼େ ଯାଇପାରୁଥିବା, ସମସ୍ତଙ୍କ ହୃଦୟର କଥା ଜାଣିପାରୁଥିବା ସାଧୁଶ୍ରେଷ୍ଠ ଭଗବାନ୍ ଅଙ୍ଗିରା ଦିବ୍ୟଦୃଷ୍ଟି ବଳରେ ଯେତେବେଳେ ରାଜା ଚିତ୍ରକେତୁଙ୍କୁ ଦୁଃଖରେ ଭାଙ୍ଗିପଡ଼ିଥିବାର ଦେଖିଲେ ସେତେବେଳେ ଦୟାରେ ହୃଦୟ ତାଙ୍କର ବିଚଳିତ ହୋଇଗଲା।" ତାଙ୍କ ପାଖରେ ନାରଦ ବସିଥିଲେ । ଅଙ୍ଗିରାମୁନି କହିଲେ—"ଋଷିବର ! ମୋ ସାଙ୍ଗରେ ଚାଲ, ଏକ ମୋହଗ୍ରସ୍ତ ଜୀବ ତୁମକୁ ଦେଖାଇ ଆଣିବି ।"

ନାରଦ ଉତ୍ତର ଦେଲେ—"ଭଗବନ୍ ! ସଂସାରୀ ମାତ୍ରେହିଁ ମୋହଗ୍ରସ୍ତ । ତେଣୁ ଆଉ ଜାଣିବାର ବା ଦେଖିବାର କଣ ଅଛି ?"

ଏହା ଶୁଣି ଅଙ୍ଗିରା ମୁନି କହିଲେ—"ହଁ ନାରଦ ! ମୁଁ ଆପଣଙ୍କୁ ଏପରି ଜଣେ ବ୍ୟକ୍ତିଙ୍କ ପାଖକୁ ନେଇଯିବି ଯିଏ ପ୍ରକୃତରେ ମୋକ୍ଷର ଅଧିକାରୀ ଥିଲା; କିନ୍ତୁ ତାହାକୁ ବାସନାରୁ ନିବୃତ୍ତ ହେବା ପାଇଁ ମୁଁ ଜାଣି ଜାଣି ମୋହଗ୍ରସ୍ତ କରାଇଛି । 'କଣ୍ଟା ବାହାର କରିବା ପାଇଁ ଯେପରି କଣ୍ଟାରହିଁ ସାହାଯ୍ୟ ନିଆଯାଏ ଏବଂ କଣ୍ଟା ବାହାର କରିବାବେଳେ ଅଧିକ କଷ୍ଟ ହୁଏ ଓ କଣ୍ଟା ବାହାରିଗଲେ ପ୍ରାଣୀ ସୁସ୍ଥତା ଅନୁଭବ କରେ' ସେହିପରି ତାଙ୍କୁ ମୋହମୁକ୍ତ କରିବା ପାଇଁ ମୁଁ ତାଙ୍କୁ ସଂସାରର ମାୟାଜାଲରେ ଛନ୍ଦି ଦେଇଛି ।"

ଦେବର୍ଷି ନାରଦ ଏ ପ୍ରକାର ଏକ ଘଟଣା ଜାଣିବା ପାଇଁ ଆଗ୍ରହୀ ହୋଇ କହିଲେ— "ଆଚ୍ଛା, ଚାଲନ୍ତୁ । ଖାସ୍ ବୁଲିବା ପାଇଁ ତ ମୁଁ ଅଭିଶାପ ପାଇଛି ।"

ଅଙ୍ଗିରା ଋଷି ଦେବର୍ଷି ନାରଦଙ୍କୁ ସଙ୍ଗରେ ନେଇ ମହାରାଜ ଚିତ୍ରକେତୁଙ୍କ ଅନ୍ତଃପୁରରେ ଆସି ପହଞ୍ଚିଲେ । ସାରା ଅନ୍ତଃପୁର କରୁଣ କ୍ରନ୍ଦନ ଧ୍ୱନିରେ ପ୍ରତିଧ୍ୱନିତ ହେଉଥିଲା । ମୃତପୁତ୍ର ନିକଟରେ ରାଜା ସଜ୍ଞାହୀନ ହୋଇ ପଡ଼ିଥିଲେ । ତାଙ୍କ ମୁଣ୍ଡ ବାଳ ଖୋଲି ଯାଇଥିଲା । ବସ୍ତ୍ର, ଭୂଷଣ ବିକ୍ଷିପ୍ତ ହୋଇ ପଡ଼ିଥିଲା । ସାରା ଦେହ ଧୂଳିଧୂସରିତ ହୋଇଥିଲା । ତାଙ୍କ ପାଖରେ ମୃତ ପୁତ୍ରର ଶବକୁ କୋଳରେ ଥୋଇ ରାଣୀ ବିଳାପ କରୁଥିଲେ । ବାରମ୍ବାର ଶବକୁ ଛାତିରେ ଜାକି ଧରୁଥିଲେ । ହା ପୁତ୍ର ! ହା ବତ୍ସ ! କହି କାନ୍ଦୁଥିଲେ । ରାଜା ଓ ରାଣୀଙ୍କ ଚାରିପାଖରେ ହଜାର ହଜାର ନରନାରୀ ଘେରି ରହିଥିଲେ । ସମସ୍ତଙ୍କ ନେତ୍ରରୁ ଅବିରଳ ଅଶ୍ରୁଧାରା ବହୁଥିଲା । ସମସ୍ତେ ରାଜାଙ୍କ ଦୁଃଖରେ ଅଭିଭୂତ ହୋଇପଡ଼ିଥିଲେ । କେହି କିଛି କହିବାକୁ ସାହସ କରୁନଥିଲେ । ଏହି ସମୟରେ ଦୁଇ ସର୍ବଜ୍ଞ ମୁନି ସେଠାରେ ପହଞ୍ଚିଲେ । ମନ୍ତ୍ରୀ ଓ ପୁରୋହିତ ଯଥୋଚିତ ସମୟାନୁକୂଳ ସ୍ୱାଗତ କରାଇଲେ । ଦୁହେଁ ଦୁଇଟି ଆସନରେ ରାଜାଙ୍କ ପାଖରେ ବସିଲେ । ରାଜା ବାରମ୍ବାର ପୁତ୍ରକୁ ଦେଖି ଚିତ୍କାର କରୁଥିଲେ—ହାୟ ହାୟ, ବାବୁ ! ତୁ ଆମକୁ ଛାଡ଼ି କୁଆଡ଼େ ଗଲୁ । ତୁ ମୋତେ କେତେ ଭଲ ପାଉଥିଲୁ ।

ଶୋକଗ୍ରସ୍ତ ରାଜାଙ୍କୁ ମୃତପୁତ୍ରର ଶବ ପାଖରେ ବିଳାପ କରୁଥିବାର ଦେଖି ମହର୍ଷି ଅଙ୍ଗିରା କହିଲେ—"ରାଜନ୍ ! ଆପଣ ଯେଉଁ ଜୀବ ପାଇଁ ଏତେ ଅଧୀର ହେଉଛନ୍ତି ସେ

ଆପଣଙ୍କର ଏ ଜନ୍ମରେ ବା ପୂର୍ବଜନ୍ମରେ କ'ଣ ଥିଲା ଏବଂ ପରଜନ୍ମରେ କ'ଣ ହେବ ? ସେ ତୁମର କିଏ ଓ ତୁମେ ତା'ର କ'ଣ ହେବ ଜାଣିଛ କି ?"

ମୁନିଙ୍କ କଥା ଶୁଣି ରାଜା ତାଙ୍କୁ ଆଖି ଖୋଲି ଚାହିଁଲେ । କିନ୍ତୁ ନିଜର ଦେହ ବିଷୟରେ ତାଙ୍କର କୌଣସି ଜ୍ଞାନ ନଥିବାରୁ ସେ ମୁନିଙ୍କ ପ୍ରଶ୍ନ ଶୁଣି ମଧ୍ୟ ନଶୁଣିଲା ପରି ରହିଗଲେ । ରାଜା କୌଣସି ଉତ୍ତର ନଦେବାର ଦେଖି ପୁରୋହିତ କହିଲେ—"ଭଗବନ୍ ! ପୂର୍ବଜନ୍ମର ସଂସ୍କାର ଅନୁସାରେ ଏ ଜନ୍ମରେ ଜୀବର ସମ୍ବନ୍ଧ ସ୍ଥାପିତ ହୁଏ । ପୂର୍ବଜନ୍ମରେ ମୃତ କୁମାର ମହାରାଜାଙ୍କର ନିଶ୍ଚୟ କୌଣସି ଘନିଷ୍ଠ ସମ୍ପର୍କୀୟ ଥିଲା । ସେଥିପାଇଁ ଏ ଜନ୍ମରେ ରାଜାଙ୍କ ପୁତ୍ରରୂପେ ଜନ୍ମ ଗ୍ରହଣ କରିଛି । ପିତା ପକ୍ଷରେ ପୁତ୍ର-ପ୍ରାଣଠାରୁ ବଳି ଅଧିକ ପ୍ରିୟ । ରାଜା ହେଉଛନ୍ତି କୁମାରଙ୍କ ପିତା ଓ କୁମାର ତାଙ୍କର ପୁତ୍ର । ଅକାଳରେ ତାଙ୍କର ମୃତ୍ୟୁ ହୋଇଗଲା । ମହାରାଜାଙ୍କ ସେହି ଏକମାତ୍ର ପୁତ୍ର, ତେଣୁ ଅଧିକ ଦୁଃଖ ହେବା ସ୍ୱାଭାବିକ ।

ମହର୍ଷି ଅଙ୍ଗିରା କହିଲେ—"ବିପ୍ରବର ! ରାଜା ଭାବିଛନ୍ତି ଏ ମୋର ପୁତ୍ର, ଏହା ଭାବିବା ତାଙ୍କର ଭୁଲ୍ । ଯେପର୍ଯ୍ୟନ୍ତ କୁମାର ବଞ୍ଚିଥିଲେ ସେ ତାଙ୍କର ପୁତ୍ର ଥିଲେ; କିନ୍ତୁ ଏବେ କିଣ ସେ ଆଉ ପୁତ୍ରରୂପେ ଅଛନ୍ତି ? ମହାଶୟ ! ଜଗତର ପ୍ରବାହ ଅନାଦି, ଅନନ୍ତ ଓ ଅବାରିତ । ଏଥିରେ କେହି କାହାର ପୁଅ ନୁହେଁ କି କେହି କାହାର ବାପ ନୁହେଁ । ଗଙ୍ଗାର ପ୍ରବାହରେ ପ୍ରବାହିତ ବାଲୁକାରାଶି ମଧ୍ୟରୁ କେତେକ ସ୍ଥାନେ ସ୍ଥାନେ ଏକତ୍ରିତ ହୋଇ ରହିଯାଏ । ଆଜି ଏକତ୍ରିତ ହୋଇଥିବା ଅଂଶରୁ କିଛି ଅଂଶ କାଲିର ପ୍ରବାହରେ ଅନ୍ୟଆଡ଼କୁ ବହିଯିବ, କିଛି ପବନରେ ଉଡ଼ିଯିବ । ହରିଦ୍ୱାରର ବାଲି ପ୍ରବାହ ମଧ୍ୟରେ ଆସି ପ୍ରୟାଗରେ ପହଞ୍ଚିଯାଏ । ସେହିପରି ପ୍ରୟାଗର ବାଲି-ସ୍ରୋତରେ ପ୍ରବାହିତ ହୋଇ ଗଙ୍ଗାସାଗରରେ ପହଞ୍ଚିଯାଏ । ଏହା ନିରବଚ୍ଛିନ୍ନ ଭାବେ ସମ୍ପାଦନ ଘଟୁଛି । ଏହା ସ୍ୱାଭାବିକ । ସେଥିପାଇଁ ରାଜାଙ୍କ ପକ୍ଷରେ ଶୋକ କରିବା ନିରର୍ଥକ । କାଳକ୍ରମେ ଜୀବ କେଉଁଠି ଏକତ୍ରିତ ହୁଏ, ପୁଣି ସମୟ ଆସିଲେ ସେ ସ୍ଥାନ ଛାଡ଼ି ଅଲଗା ଅଲଗା ହୋଇଯାଏ । ଏହି ପ୍ରବାହରେ କେହି କାହାର ଶତ୍ରୁ ନୁହେଁ କି ମିତ୍ର ନୁହେଁ । ଏସବୁ କେବଳ ବାହ୍ୟ-ମୋହ ବ୍ୟତୀତ ଅନ୍ୟ କିଛି ନୁହେଁ ।"

ମୁନିଙ୍କ କଥା ଶୁଣି ପୁରୋହିତ କହିଲେ—"ସଂସ୍କାର ବିନା ସଂଯୋଗ ବା ବିୟୋଗ ଘଟେନାହିଁ । ସଂସ୍କାରବଶତଃ ଯାହା ସହିତ ନିଜର ସମ୍ପର୍କ ସ୍ଥାପିତ ହୁଏ ତା'ସହିତ ମିଳନରେ ଆନନ୍ଦ ଓ ବିରହରେ ଶୋକ ଜାତ ହୁଏ ।"

ନିଜର ବକ୍ତବ୍ୟ ଉପରେ ଗୁରୁତ୍ୱ ଦେଇ ଅଙ୍ଗିରା ମୁନି କହିଲେ—"ଅଜ୍ଞାନତାବଶତଃ ବ୍ୟର୍ଥ ଶୋକ ଜାତ ହୁଏ । କିନ୍ତୁ ନିରର୍ଥକ ଶୋକ କରିବାର କୌଣସି କାରଣ ନାହିଁ । କାରଣ ସଂସାରର କାରଣ ହେଉଛି ପ୍ରବାହ । ଦେଖନ୍ତୁ, ପ୍ରତ୍ୟେକ ପୂର୍ଣ୍ଣିମା ଦିନ ଗଙ୍ଗାସ୍ନାନ ମେଳା ଅନୁଷ୍ଠିତ ହୁଏ । ହଜାର ହଜାର, ଲକ୍ଷ ଲକ୍ଷ ନରନାରୀ ଗଙ୍ଗାସ୍ନାନ ପାଇଁ ଯାଆନ୍ତି ।

ବାଟରେ କେତେକ ସାଙ୍ଗ ମିଳନ୍ତି, କାହାରି କାହାରି ସହିତ ଘନିଷ୍ଠତା ଜାତ ହୁଏ । ବୟସ ଅନୁସାରେ ସମ୍ବନ୍ଧ ଯୋଡ଼ି ହୋଇଯାଏ । କ୍ଷଣେକ ମଧ୍ୟରେ ବାପା ମା', ଭାଇଭଉଜ, ଭଉଣୀ-ଭଣେଇ ସୃଷ୍ଟି ହୁଅନ୍ତି । ପରସ୍ପର ପ୍ରତି ସହାନୁଭୂତି ପ୍ରଦର୍ଶନ କରନ୍ତି । ଯଥାକାଳରେ ସ୍ନାନକାର୍ଯ୍ୟ ସମ୍ପନ୍ନ ହୁଏ ଏବଂ ସମସ୍ତେ ଯେ ଯାହା ବାଟରେ ଯାଆନ୍ତି । ତା'ପରେ କାହାର କାହାରି ସହିତ ସମ୍ପର୍କ ରହେନାହିଁ । ଏପରିକି ସେହି ସମ୍ପର୍କ କଥା ମନେ ବି ପଡ଼େନାହିଁ । ଜଳଛତ୍ର ନିକଟରେ ଅନେକ ସମବେତ ହୁଅନ୍ତି, ତୃଷା ନିବାରଣ କରି ସମସ୍ତେ ଚାଲି ଯାଆନ୍ତି । ନୌକାରେ ଅନେକ ନଦୀ ପାର ହୁଅନ୍ତି । ନଦୀ ଆର ପାଖରେ ଯେ ଯାହା ବାଟରେ ଚାଲିଯାନ୍ତି । ଏ ଅବସ୍ଥାରେ କେହି କାହାର ଶତ୍ରୁ ନୁହେଁ କି କେହି କାହାର ମିତ୍ର ନୁହେଁ । ସେହିପରି ପିତାପୁତ୍ର, ପତିପତ୍ନୀ ଆଦି ସମ୍ପର୍କ ଏକ ମିଥ୍ୟା କଳ୍ପନା । ଏହା ଅଜ୍ଞାନଜନିତ ମୋହ, ମାୟାରଚିତ । ଜ୍ଞାନୀଲୋକ ଭୁଲରେ ମଧ୍ୟ ଏ ପ୍ରକାର ମାୟାଜାଲରେ ପଡ଼ନ୍ତି ନାହିଁ । ସର୍ବଦା ନିତ୍ୟ ଶୁଦ୍ଧ, ବୁଦ୍ଧ, ମୁକ୍ତ ଅବିନାଶୀ ଶ୍ରୀହରିଙ୍କୁ ସ୍ମରଣ କରିବା ଜ୍ଞାନୀଲୋକର କର୍ତ୍ତବ୍ୟ । ଜ୍ଞାନୀଲୋକେ ମରନ୍ତି ନାହିଁ କି ଜନ୍ମ ହୁଅନ୍ତି ନାହିଁ । ସେମାନଙ୍କର କ୍ଷୟ, ବୃଦ୍ଧି, ହ୍ରାସ, ବିକାଶ ନାହିଁ । ତେଣୁ ସେମାନେ ତିନିକାଳରେ ସମଭାବରେ ରହନ୍ତି ।''

'ତା'ହେଲେ ଜନ୍ୟ ଜନକ ସମ୍ବନ୍ଧର ଆଉ କି ମୂଲ୍ୟ ରହିଲା, ବୋଲି ପୁରୋହିତ ପ୍ରଶ୍ନ କରିବାରୁ ଉପେକ୍ଷା କଲାପରି ମହର୍ଷି କହିଲେ ''ବିପ୍ରବର ! ଜନ୍ୟ କିଏ, ଆଉ ଜନକ କିଏ ? ଏସବୁ ମିଥ୍ୟା କଳ୍ପନା । ଗୋଟିଏ ବୀଜରୁ ଅନେକ ବୀଜ ଉତ୍ପନ୍ନ ହୁଏ । ସେଗୁଡ଼ିକରେ ଅନେକ ବୀଜ ଉତ୍ପନ୍ନ କରିବାର ଶକ୍ତି ନିହିତ ଥାଏ । କେତେକରୁ ବୀଜ ଉତ୍ପନ୍ନ ହେଉଥିବେଳେ ଆଉ କେତେକରୁ ଆଦୌ ହୁଏନାହିଁ । ଏହା ଗୁଣପ୍ରବାହରୂପେ ଅଭିହିତ । ଗୁଣପ୍ରବାହରେ ଜନ୍ୟ ଜନକ ଭାବର କୌଣସି ସମ୍ପର୍କ ନାହିଁ । ସେହିପରି ଭଗବାନ୍‌ଙ୍କ ମାୟାରେ ପ୍ରେରିତ ହୋଇ ପ୍ରାଣୀଙ୍କଠାରୁ ପ୍ରାଣୀଙ୍କର ଜନ୍ମ ଘଟୁଛି । ସେମାନଙ୍କଠାରୁ ପୁଣି ପ୍ରାଣୀ ଉତ୍ପନ୍ନ ହେଉଛନ୍ତି ଓ ନଷ୍ଟ ହେଉଛନ୍ତି । ଏପ୍ରକାର ଗୋରଖ-ଧନ୍ଦା ଲାଗିରହିଛି । ଏହି ପ୍ରକ୍ରିୟା ସହିତ ଆତ୍ମାର ଆଦୌ ସମ୍ପର୍କ ନାହିଁ ।''

ଏହା କହିସାରି ମୁନି ଅଙ୍ଗିରା ରାଜାଙ୍କୁ ସମ୍ବୋଧନ କରି କହିବାକୁ ଆରମ୍ଭ କଲେ -- ''ରାଜନ ! ଆପଣ ବୁଦ୍ଧିମାନ୍ ହୋଇ କ'ଣ ପାଇଁ କାହାପାଇଁ ଦୁଃଖ କରୁଛନ୍ତି ? ଆପଣ ମୁଁ, ଏଠାରେ ଯେଉଁମାନେ ଅଛନ୍ତି ଅନ୍ୟ ଚରାଚର ପ୍ରାଣୀ ଯେତେ ଅଛନ୍ତି, ପୂର୍ବରୁ ସେମାନେ ନଥିଲେ । ଏବେ ମଧ୍ୟ ନାହାନ୍ତି ଓ ଭବିଷ୍ୟତରେ ମଧ୍ୟ ରହିବେ ନାହିଁ । ଏସବୁ ମିଥ୍ୟା କଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ । ଶାମୁକାରେ ମୁକ୍ତା, ଭ୍ରମ, ରଜ୍ଜୁରେ ସର୍ପଭ୍ରମ ପରି ଏହା ପ୍ରତୀତ ହୁଏ । ଶ୍ରୀହରି ହିଁ ଏକମାତ୍ର ସତ୍ୟ ଓ ତ୍ରିକାଳ-ବାଧା ରହିତ । ଆପଣ ମର୍ତ୍ତ୍ୟର ଅନିତ୍ୟ କଳ୍ପନା ମିଛ କଳ୍ପନାରେ ଭୁଲନ୍ତୁ ନାହିଁ ।''

ପୁରୋହିତ କହିଲେ 'ଭଗବାନ୍ ! ଏସବୁର ଯେତେବେଳେ କିଛି ଅସ୍ତିତ୍ୱ ନାହିଁ ସେତେବେଳେ ଜନ୍ମ, ମୃତ୍ୟୁ, ସୃଷ୍ଟି, ସ୍ଥିତି, ପ୍ରଳୟର ମୂଲ୍ୟ କଣ ?''

ହସି ହସି ମହର୍ଷି ଅଙ୍ଗିରା କହିଲେ—"ବତ୍ସପ୍ରବର ! ସର୍ବଭୂତପତି, ଅଜ, ସଚ୍ଚିଦାନନ୍ଦ ପରମେଶ୍ୱରଙ୍କର ଏସବୁ ଲୀଳା ମାତ୍ର । ତାଙ୍କର ସ୍ୱତଃ କୌଣସି ଇଚ୍ଛା ନାହିଁ । ସେ ସର୍ବଦା ନିର୍ଗୁଣ, ନିସ୍ପୃହ, ତଥାପି ବାଳସୁଲଭ ଲୀଳାରେ ସେ ଏହି ଖେଳନାଗୁଡ଼ିକ ସୃଷ୍ଟି କରନ୍ତି । ସୃଷ୍ଟି ଓ ଲାଳନ ପାଳନ ପରେ, ପୁଣି କାଳ ରୂପରେ ସେ ସମସ୍ତ ସଂହାର କରନ୍ତି । ବାସ୍ତବରେ ଏହାଦ୍ୱାରା ତାଙ୍କର କୌଣସି ପ୍ରୟୋଜନ ସିଦ୍ଧ ହୁଏନାହିଁ । କେବଳ ଲୀଳା ବିନୋଦ ବ୍ୟତୀତ ଏଥିରେ ଲେଶମାତ୍ର ସତ୍ୟତା ନାହିଁ । ଏହା ଏକପ୍ରକାର ପାଲି ଖେଳ । 'ପାଲିର ଗୋଟିକୁ ଯେପର୍ଯ୍ୟନ୍ତ ଖେଳାଳୀ ବୁଦ୍ଧିବଳରେ ସ୍ଥାନାନ୍ତର କରି ନଥାଏ, ସେପର୍ଯ୍ୟନ୍ତ ତାହା ଗୋଟିଏ ସ୍ଥାନରେ ରହିଥାଏ । ଖେଳାଳୀ ଦ୍ୱାରାହିଁ ଗୋଟି ସହିତ ଅନ୍ୟ ଗୋଟିର ମିଳନ ବା ସଂଘର୍ଷ ଘଟେ । ସେହିପରି ଦେହ ସହିତ ଦେହର ମିଳନ ବା ରଜ ଓ ବୀର୍ଯ୍ୟର ସଂଯୋଗରେ ତୃତୀୟ ଦେହ ସୃଷ୍ଟି ହୁଏ ଏବଂ କ୍ରମଶଃ ସୃଷ୍ଟିଚକ୍ର ଗଡ଼ିଚାଲେ । ତେଣୁ ଯାହାଦ୍ୱାରା ଏହି କାର୍ଯ୍ୟ ସମ୍ପାଦିତ ହେଉଛି ସେ ହେଉଛନ୍ତି ନିତ୍ୟ ଓ ସତ୍ୟ ଏବଂ ଯେ ଉତ୍ପନ୍ନ ହେଉଛି ତାହାକୁ ମିଥ୍ୟା ଓ କଳ୍ପନା କୁହାଯାଏ ।

ପୁରୋହିତ ଭଲଭାବରେ ଏହି ତତ୍ତ୍ୱ ବୁଝାଇଦେବା ପାଇଁ ଅନୁରୋଧ କରିବାରୁ ମହର୍ଷି ଅଙ୍ଗିରା କହିବାକୁ ଲାଗିଲେ—"ଦେଖନ୍ତୁ, ମାଟିରୁ ବିଭିନ୍ନ ପ୍ରକାର ପାତ୍ର ତିଆରି ହେଉଛି । ଆକୃତି ଦୃଷ୍ଟିରୁ ଓ ବ୍ୟବହାର ଦୃଷ୍ଟିରୁ ସେଗୁଡ଼ିକ ଭିନ୍ନ ଭିନ୍ନ ନାମରେ ଅଭିହିତ କିନ୍ତୁ ଏସବୁ ମିଥ୍ୟା ଓ ନାଶବାନ୍, ଏକମାତ୍ର ମୃତ୍ତିକାହିଁ ସତ୍ୟ । ମୃତ୍ତିକାର ଅସ୍ତିତ୍ୱ ତିନି କାଳରେ ବିଦ୍ୟମାନ । ଘଟ, ଦୀପ ଆଦି ନିର୍ମିତ ହେବାପୂର୍ବରୁ ମାଟି ଥିଲା । ଆକାର ଗ୍ରହଣ ପରେ ମଧ୍ୟ ତା'ର ମୃତ୍ତିକାଭାବ ଲୋପ ପାଇଯାଏ ନାହିଁ । କାରଣ ଘଟର ଆକାର ନଷ୍ଟ ହୋଇଗଲେ ତାହା ପୁଣି ମାଟିରେ ପରିଣତ ହୁଏ । ତେଣୁ ଘଟର ରୂପ ଓ ନାମ ପୂର୍ବରୁ ମାଟି ଥିଲା ଏବଂ ପରେ ତାହା ମାଟିରେ ମିଶିଲା । ଯେତେବେଳେ ଘଟ ନାମରେ ତାହା ପରିଚିତ ହେଉଥିଲା ସେତେବେଳେ ବି ତାହା ମାଟି ଥିଲା; କାରଣ ମୃତ୍ତିକା ହେଉଛନ୍ତି ନିତ୍ୟ, ନାମ ଓ ରୂପ ମିଥ୍ୟା କଳ୍ପନା । ସେହିପରି ଜାତି ଓ ବ୍ୟକ୍ତି ପୃଥକ୍ ନୁହେଁ । କେବଳ କଳ୍ପନାଦ୍ୱାରା ଆମେ ସେଥିରେ ପୃଥକ୍‌ଭାବ ସ୍ଥାପନ କରିଛୁ । ଦୀପ, ଘଟ ଆଦି ଜାତି ପରି ବ୍ୟକ୍ତିର ବିଭାଗ ବ୍ୟବହାରଦ୍ୱାରା ପରିକଳ୍ପିତ ହୋଇଛି । ଦେହର ବିଭାଗ ଅବିଦ୍ୟା ପରିକଳ୍ପିତ । ବିବେକଦ୍ୱାରା ଏପ୍ରକାର ଅବିଦ୍ୟାଜନିତ କଳ୍ପନାକୁ ବିନାଶ କରାଯାଇପାରେ ।

ଶ୍ରୀ ଶୁକଦେବ କହିଲେ—'ରାଜନ୍ ! ମହାରାଜ ଚିତ୍ରକେତୁ ଯେତେବେଳେ ଅଙ୍ଗିରା ଋଷିଙ୍କଠାରୁ ଏପ୍ରକାର ଗୂଢ଼ତତ୍ତ୍ୱ ଶୁଣିଲେ ସେତେବେଳେ ସେ କିଛିମାତ୍ରାରେ ଆଶ୍ୱସ୍ତ ହେଲେ । ରାଜା ଥିଲେ ବିବେକୀ ଓ ସତ୍‌ସଙ୍ଗପରାୟଣ । ଦୀର୍ଘକାଳ ଧରି ମହାପୁରୁଷମାନଙ୍କର ସେବା କରି ଆସିଥିଲେ । ଖୁବ୍ ଅଳ୍ପକାଳ ପାଇଁ ତାଙ୍କର ମୋହ ଜାତ ହୋଇଥିଲା । ମୁନି ଯେତେବେଳେ ଅକାଟ୍ୟ ଯୁକ୍ତିଦ୍ୱାରା ଏସଂସାରକୁ ଅଜ୍ଞାନଜନିତ ମୋହର କାରଣ ବୋଲି

ବୁଝାଇଦେଲେ ସେତେବେଳେ ରାଜାଙ୍କର ଜ୍ଞାନୋଦୟ ହେଲା । ତାଙ୍କର ଅସହ୍ୟ ମାନସିକ ବେଦନା କିଛି ଲାଘବ ହୋଇଗଲା । ସେ ଉଠି ବସିଲେ । ତାଙ୍କର ମୁଖ ମଳିନ ଥିଲା, ଆଖିରୁ ଲୁହଧାର ବହିଯାଉଥିଲା । ରାଜା ନିଜ ହାତରେ ଆଖିରୁ ଲୁହ ପୋଛିଦେଲେ । ଆଗରେ ବସିଥିବା ଦୁଇ ମୁନିଙ୍କୁ ସେ ପ୍ରଣାମ କଲେ । ଅସ୍ଫୁଟ ସ୍ୱରରେ ଦୁଃଖର କାରଣ ପଚାରିବାପାଇଁ ରାଜ୍ୟ ଉଦ୍ୟତ ହେଲେ ।

## ଛପ୍‌ପୟ

ହେ ନରୀହ ଅଖିଳେଶ ଅଜନ୍ମା ଭୂମା ଶ୍ରୀହରି ।
ଶିଶୁ ସମ ଖେଲେ ସଦା ଯୋଗମାୟା ଆଶ୍ରୟ କରି ॥
ରଚେଂ ଜୀବ ତେ ଜୀବ ଜୀବ ତେଂ ପୁନ ମରଓ୍ୱାଓ୍ୱେଁ ।
କବହୁଁ ଜଗ କରି ଜଗେଂ କବହୁଁ ଲୟ କରି ସୋ ଜାଓ୍ୱେଁ ॥
ନହିଁ ତ୍ରିକାଳ-ବାଧିତ ଅଜର, ଅମର ନିତ୍ୟ ପ୍ରଭୁ ଜଗତପତି ।
ତଜି ତିନ ପଦ ଭ୍ରମବଶ କରହିଁ, ଅଜ୍ଞ ଜଗତ ମୋହ ମୋହ ରତି ॥



# ଅଙ୍ଗିରାମୁନିଙ୍କ ଉପଦେଶ

ସର୍ବେଽପି ଶୂରସେନେମେ ଶୋକମୋହଭୟାର୍ତ୍ତିଦାଃ ।
ଗନ୍ଧର୍ବନଗରପ୍ରଖ୍ୟାଃ ସ୍ୱପ୍ନମାୟାମନୋରଥାଃ ॥
ଦୃଶ୍ୟମାନା ବିନାର୍ଥେନ ନ ଦୃଶ୍ୟନ୍ତେ ମନୋଭବାଃ ।
କର୍ମଭିର୍ଧ୍ୟାୟତୋ ନାନାକର୍ମାଣି ମନସୋଽଭବନ୍ ॥

(ଶ୍ରୀମଦ୍ଭାଗବତ—୬ସ୍କନ୍ଧ-୧୫ଅ-୨୩, ୨୪ଶ୍ଳୋ)

## ଛପ୍ପୟ

ସୁନି ସଚେତ ନୃପ ଭୟେ ମୁନିନି ସନ ବୋଲେ ବାନୀ ।
କୋ ହୈଁ ଦୋନୌଁ ଆପ ପରମ ତେଜସ୍ୱୀ ଜ୍ଞାନୀ ॥
କହୈଁ ଅଙ୍ଗିରା—"ଭୂପ ! ଅଙ୍ଗିରା ମୋକୂଁ ଜାନୌ ॥
ବ୍ରହ୍ମାଜୀ କେ ପୁତ୍ର ଇନ୍ହେଁ ନାରଦ ମୁନି ମାନୌଁ ॥
ଜ୍ଞାନ ଦେନ ଆୟେ ଉଭୟ, ଆପ ଶୋକ ସନ୍ତପ୍ତ ହୈଁ ।
ଶୋଚେଁ ନାହିଁ ମୋହ, ଭ୍ରମ ଜେ ନର ଭଗବଦ୍‌ଭକ୍ତ ହୈଁ ॥

(ଯାହାର ଯାହା ମୂଳ ସ୍ୱଭାବ, କିଛିକାଳ ପାଇଁ କୌଣସି କାରଣରୁ ବିକ୍ଷିପ୍ତ ହୋଇ ଯାଇଥିଲେ ମଧ୍ୟ ତାହା ପୁଣି କିଛିକାଳ ମଧ୍ୟରେ ସ୍ୱାଭାବିକ ଅବସ୍ଥାକୁ ଫେରିଆସେ । ଜଳ ସ୍ୱଭାବତଃ ଶୀତଳ । ଯଦି ଅଗ୍ନି ଅଥବା ପ୍ରଚଣ୍ଡ ସୂର୍ଯ୍ୟ କାରଣରେ ଜଳ ଗରମ ହୋଇଯାଏ ତେବେ କିଛିକାଳ ପରେ ପୁଣି ତାହା ଶୀତଳ ହୋଇଯାଏ) ଯେ ସର୍ବଦା ସାଧୁସଙ୍ଗ ଓ ସଜ୍ଜନ ସେବାରେ ଲାଗିଥାନ୍ତି, କୌଣସି କାରଣରୁ ବିପଦରେ ପଡ଼ି ସ୍ୱଭାବ ବିରୁଦ୍ଧ ଆଚରଣ ଯଦି କରନ୍ତି, ତେବେ ତାଙ୍କୁ ବୁଝାଇଦେଲେ ସେ ପୁଣି ପ୍ରକୃତିସ୍ଥ ହୋଇଯାଆନ୍ତି । ସାଧୁସେବା, ସଜ୍ଜନସଙ୍ଗ, ସାଧୁଶିକ୍ଷା କେବେ ହେଲେ ବ୍ୟର୍ଥ ହୁଏନାହିଁ । ସାଧୁ ଉପଦେଶ ପାତ୍ର-ଭେଦରେ କେଉଁଠି ଶୀଘ୍ର ସଫଳ ହୁଏ ଏବଂ ଆଉ କେଉଁଠି ବିଳମ୍ବରେ ସଫଳ ହୁଏ । କେତେକ ମଞ୍ଜି ଅଛି ଯାହା ମାଟିରେ ପଡ଼ିବାମାତ୍ରେ ଅଙ୍କୁରିତ ହୋଇ ବଢ଼େ ଏବଂ ଅଳ୍ପ-କାଳ ମଧ୍ୟରେ ଫୁଲଫଳରେ ପୂରିଉଠେ; କିନ୍ତୁ ଆଉ କେତେକ ମଞ୍ଜି ଅଛି ଯାହା ଦୀର୍ଘଦିନ ମାଟିରେ ପଡ଼ି ରହେ ଏବଂ ଅନୁକୂଳ ପରିସ୍ଥିତି ଆସିଲେ ଅଙ୍କୁରିତ ହୁଏ । ରାଜା ଚିତ୍ରକେତୁ

ପୁତ୍ର ଶୋକରେ ପାଗଳ ହୋଇ ନିଜର ସାଧୁସ୍ୱଭାବକୁ ଭୁଲି ଯାଇଥିଲେ । ମହର୍ଷି ଅଙ୍ଗିରା ଯେତେବେଳେ ତାଙ୍କୁ ସାନ୍ତ୍ୱନା ଦେଲେ ସେତେବେଳେ ସେ କିଛିମାତ୍ରାରେ ପ୍ରକୃତିସ୍ଥ ହେଲେ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ମହର୍ଷି ଅଙ୍ଗିରାଙ୍କ ତତ୍ତ୍ୱଜ୍ଞାନପୂର୍ଣ୍ଣ ବଚନ ଶୁଣି ମହାରାଜ ଚିତ୍ରକେତୁ ତାଙ୍କୁ ପଚାରିଲେ—"ମହାଭାଗ ! ଆପଣ ଦୁହେଁ କିଏ ? କେଉଁଠୁ ଆସିଛନ୍ତି ? ଆପଣମାନେ ମୋ'ପରି ଦୀନହୀନ, ମତିଭ୍ରଷ୍ଟ, ପାମର ଉପରେ ଏତେ ଦୟା ପ୍ରକାଶ କଲେ ? ଆପଣମାନଙ୍କ କଥା ଶୁଣି ମନେ ହେଉଛି ଆପଣମାନେ ମହାଜ୍ଞାନୀ, ପରମ ଭଗବଦ୍ ଭକ୍ତ । ରାଗ, ଦ୍ୱେଷ, ମମତା ରହିତ, ତତ୍ତ୍ୱଜ୍ଞାନୀ ମହାନ୍ ଋଷି । ଆପଣ ଦୁହେଁ ଅବଧୂତ ବେଶ ଧାରଣ କରିଛନ୍ତି । ଆପଣମାନେ କଣ ସିଦ୍ଧପୁରୁଷ ?"

ମହର୍ଷି ଅଙ୍ଗିରା ହସି ହସି ପ୍ରଶ୍ନ କଲେ—"ମହାରାଜ ! ଆମମାନଙ୍କଠାରେ ତୁମେ ଋଷିମାନଙ୍କର କି କି ଚିହ୍ନ ଦେଖିଲ ?"

ମହାରାଜ ଚିତ୍ରକେତୁ କହିଲେ—"ପ୍ରଭୋ ! ଆପଣମାନେ ସାଧାରଣ ଭିକ୍ଷୁକ ବୋଲି ମନେ ହେଉନାହାନ୍ତି । ଆପଣମାନେ ଯଥାର୍ଥ ସ୍ୱରୂପକୁ ନିଜ ଭିତରେ ଲୁଚାଇ ରଖିଛନ୍ତି । ବହୁ ଭଗବଦ୍ ଭକ୍ତ, ଜ୍ଞାନୀ, ବ୍ରାହ୍ମଣ ନିଜର ସ୍ୱରୂପକୁ ଗୋପନ ରଖି ଛଦ୍ମବେଶରେ ପୃଥିବୀରେ ବୁଲୁଛନ୍ତି । କେତେକ ଅବଧୂତ ବେଶରେ ଥାଆନ୍ତି, କେତେକ ପାଗଳପ୍ରାୟ ଦେଖାଯାନ୍ତି ଓ ଆଉ କେତେକ ପିଶାଚ ଆକୃତି ଧାରଣ କରିଥାନ୍ତି । ସେମାନେ ଦୟାର୍ଦ୍ର ହୋଇ ମୋ' ପରି ମୂଢ଼ମତି ପୁରୁଷଙ୍କୁ ଅହେତୁକ କୃପା ପ୍ରଦର୍ଶନ ଦ୍ୱାରା ମାୟା ସଂସାରରୁ ମୁକ୍ତିଲାଭ କରିବାରେ ସହାୟକ ହୁଅନ୍ତି । ବହୁ ସିଦ୍ଧପୁରୁଷଙ୍କ ନାମ ମୁଁ ଜାଣେ, ଯେଉଁମାନେ ସୃଷ୍ଟିର ଅନ୍ତିମ କାଳ ପର୍ଯ୍ୟନ୍ତ ଜୀବିତ ରହି ଲୋକମାନଙ୍କ ମଧ୍ୟରେ ବିଚରଣ କରନ୍ତି । ସେମାନଙ୍କ ମଧ୍ୟରେ ସନକ, ସନନ୍ଦନ, ସନତ୍କୁମାର, ସନାତନ, ନାରଦ, ଅଙ୍ଗିରା, ଭୃଗୁ, ଦେବଳ, ଅସିତ, ବେଦବ୍ୟାସ, ମାର୍କଣ୍ଡେୟ, ଗୌତମ, ବଶିଷ୍ଠ, ପରଶୁରାମ, କପିଳ, ଶ୍ରୀ ଶୁକ, ଦୁର୍ବାସା, ଯାଜ୍ଞବଲ୍କ୍ୟ, ଜାତୂକର୍ଣ୍ଣ୍ୟ, ଆରୁଣି, ଲୋମଶ, ଚ୍ୟବନ, ଦତ୍ତାତ୍ରେୟ' ଅତ୍ରି, ପତଞ୍ଜଳି, ବେଦଶିରା, ବୌଧାୟନ, ପଞ୍ଚଶିଖ, ହିରଣ୍ୟନାଭ, ଶ୍ରୁତଧ୍ୱଜ, ଋତୁଧ୍ୱଜ ପ୍ରଭୃତିଙ୍କ ନାମ ଚିରସ୍ମରଣୀୟ । ଏମାନଙ୍କ ବ୍ୟତୀତ ଆହୁରି ଅନେକ ସିଦ୍ଧପୁରୁଷ ଅଛନ୍ତି, ଯେଉଁମାନେ ସର୍ବବିଧ କର୍ମବନ୍ଧନରୁ ମୁକ୍ତ ରହି ସ୍ୱେଚ୍ଛାରେ ବିଚରଣ କରନ୍ତି । ଆପଣମାନେ ସେହି ସିଦ୍ଧ ମହାପୁରୁଷଙ୍କ ମଧ୍ୟରୁ କେହି ହୋଇଥିବେ ବୋଲି ଭାବୁଛି । ବିଧ୍ୟାନକ୍ର ମୋ' ପରି ମୂର୍ଖକୁ ତତ୍ତ୍ୱଜ୍ଞାନ ଉପଦେଶ ଦେବା ପାଇଁ ଆପଣ ଆସିଛନ୍ତି । ଅଜ୍ଞାନବଶତଃ ମୁଁ ପଶୁ ପାଲଟି ଯାଇଛି । ସଂସାର ସାଗରର ମୋହ ରୂପକ କୁମ୍ଭୀର ମୁଖ ଆଡ଼କୁ ଟାଣି ହୋଇ ଯାଉଥିବା ମୋ' ପରି ହତଭାଗ୍ୟକୁ ହାତଧରି ଉଦ୍ଧାର କରିବା ନିମିତ୍ତ ସ୍ୱତଃପ୍ରବୃତ୍ତ ହୋଇ ଆପଣମାନେ ଆସିଛନ୍ତି । ଆପଣ ପରିଚୟ ଦେଇ ବିପଦ-ସାଗରରେ ନିମଗ୍ନପ୍ରାୟ ମୋତେ ଉଦ୍ଧାର କରନ୍ତୁ । ମୁଁ ଆପଣମାନଙ୍କର ଶରଣାର୍ଥୀ ହୋଇଛି ।"

ରାଜାଙ୍କ ବିନୀତ ବାଣୀ ଶୁଣି ଭଗବାନ୍ ଅଙ୍ଗିରା କହିଲେ—"ରାଜନ୍ ! ଆପଣ ମୋତେ ଭୁଲିଗଲେ କିପରି ?"

ରାଜା ଉତ୍ତର ଦେଲେ—"ଭଗବନ୍ ! ଏବେ ପୁତ୍ରଶୋକରେ ମୋର ବୁଦ୍ଧି ଭ୍ରଷ୍ଟ ହୋଇଯାଇଛି । ଏଣୁ ଆପଣ ଖରାପ ନ ଭାବି ମୋର ଧୃଷ୍ଟତାକୁ କ୍ଷମା ଦିଅନ୍ତୁ । ମୁଁ ଆପଣଙ୍କୁ ମନେ ପକାଇ ପାରୁନାହିଁ ।"

ଅଙ୍ଗିରା କହିଲେ—"ରାଜନ୍ ! ମୁଁ ହେଉଛି ସେହି ଅଙ୍ଗିରା, ଯେ ତୁମକୁ ପୁତ୍ର ପ୍ରଦାନ ପାଇଁ ଅତ୍ୟଧିକ ଆଗ୍ରହୀ ହୋଇଥିଲେ । ତୁମର ପ୍ରବଳତର ପୁତ୍ରବାନ୍ ହେବାର ଆକାଙ୍‌କ୍ଷା ଦେଖି ତୁମକୁ ଏହି ପୁତ୍ର ପ୍ରଦାନ କରିଥିଲି ।"

ଏହା ଶୁଣି ରାଜା ସମ୍ଭ୍ରମର ସହିତ କହିଲେ—"ହଁ, ହଁ ଗୁରୁଦେବ ! ଏବେ ମନେ ପଡ଼ିଲା । ମୁଁ ମୂଢ଼ ସଂସାରର ମୋହରେ ମୋହିତ ହୋଇ ଆପଣଙ୍କୁ ଭୁଲିଯାଇଥିଲି । କିନ୍ତୁ ଆପଣ ମୋତେ ଯେ ଭୁଲି ନାହାନ୍ତି, ଏହା ମୋର ସୌଭାଗ୍ୟ ! ସଂସାରୀ ଲୋକ ଭୁଲିବା, ଭୁଲ୍ କରିବା ସ୍ୱାଭାବିକ । କିନ୍ତୁ ଆପଣ ଭୁଲିବେ କିପରି ? ଆପଣଙ୍କ ବ୍ୟତୀତ ମୋ'ପରି ସଂସାରୀ ଲୋକଙ୍କୁ କିଏ ସଦ୍‌ଗତି ଦେବ ? ଦ୍ୱିତୀୟ ମହାପୁରୁଷ ଜଣକ କିଏ ?"

ଅଙ୍ଗିରା ମୁନି କହିଲେ—"ତାଙ୍କୁ ବି କଣ ଭୁଲିଗଲ ? ଏ ମୋର ଭାଇ, ବ୍ରହ୍ମାଙ୍କ ପୁତ୍ର ଦେବର୍ଷି ନାରଦ । ଏହା ଶୁଣିବାମାତ୍ରେ ରାଜା ଉଠିପଡ଼ି ଉଭୟଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି କାନ୍ଦି କାନ୍ଦି କହିଲେ—ମୁନିଗଣ ! ଶୋକସାଗରରୁ ଏ ମୂର୍ଖକୁ ଉଦ୍ଧାର କରନ୍ତୁ ।"

ରାଜାଙ୍କ ବିନୀତ ବଚନରେ ପ୍ରୀତ ହୋଇ ଅଙ୍ଗିରା ମୁନି ସ୍ନେହର ସହିତ କହିଲେ—"ରାଜନ୍ ! ଏପରି ଅଧୀର ହେବା ଆପଣଙ୍କର ସୁଶୋଭିତ ହେଉନାହିଁ । ଦେଖନ୍ତୁ,(ଯେ କୌଣସି ବିପଦରେ ପଡ଼ିଲେ ଶୁଦ୍ଧ ଭଗବଦ୍ ଭକ୍ତ କେବେ ବିଚଳିତ ହୁଅନ୍ତି ନାହିଁ କି ଦୁଃଖରେ ଅଧୀର ହୋଇପଡ଼ନ୍ତି ନାହିଁ )। ଆପଣ ପୁତ୍ର-ମୋହ ରୂପକ ଦୁସ୍ତର ଅଜ୍ଞାନ ସାଗରରେ ନିମଗ୍ନ ଥିଲେ । ସେଥିରୁ ଆପଣଙ୍କୁ ଉଦ୍ଧାର କରିବା ପାଇଁ ଆମେ ଦୁହେଁ ଆସିଛୁ । ଆପଣ ଶ୍ରଦ୍ଧାର ସହିତ ଆମର କଥା ଶୁଣନ୍ତୁ । ଆପଣ ଜଣେ ଭଗବଦ୍ ଭକ୍ତ ଓ ପଣ୍ଡିତଙ୍କର ପ୍ରିୟ । ଆପଣଙ୍କ ପକ୍ଷରେ ଏପରି କାନ୍ଦିବା, ଦୁଃଖ କରିବା, ବ୍ୟସ୍ତ ହେବା ବିଶେଷ କରି ନିଜକୁ ନିଜେ ଭୁଲିଯିବା ଉଚିତ ନୁହେଁ । ଆପଣ ଜଣେ ପରମାର୍ଥ ତତ୍ତ୍ୱର ଅଧିକାରୀ ଓ ଉତ୍ତମ ମୁମୁକ୍ଷୁ । ମୁଁ ଆପଣଙ୍କୁ ଜ୍ଞାନ ଉପଦେଶ ଦେବା ପାଇଁ ଆସିଛୁ ।"

ମହର୍ଷିଙ୍କ କଥା ଶୁଣି ରାଜା ପଚାରିଲେ—"ପ୍ରଭୋ ! ଆପଣ ସେହି ସମୟରେ ମୋତେ ଜ୍ଞାନ ଉପଦେଶ ଦେଲେ ନାହିଁ କାହିଁକି ? ସେତେବେଳେ ମୋର ଜ୍ଞାନୋଦୟ ହୋଇ ଯାଇଥିଲେ ଆଜି ଏ ଦୁଃଖ ଭୋଗିବାକୁ ପଡ଼ି ନଥାନ୍ତା । ଏ ପ୍ରକାର ବିପଦରେ କାହିଁକି ନିମଗ୍ନ ହେବାକୁ ପଡ଼େ ?"

ମହାମୁନି ଅଙ୍ଗିରା କହିଲେ—"ରାଜନ୍ ! ମୁଁ ସେତେବେଳେ ଜ୍ଞାନ ଉପଦେଶ ଦେବା ପାଇଁ ତ ଆସିଥିଲି । କିନ୍ତୁ ମୁଁ ଦେଖିଲି ଆପଣଙ୍କର ସମସ୍ତ ଚିତ୍ତବୃତ୍ତି ପୁତ୍ରପ୍ରାପ୍ତି ନିମନ୍ତେ

ବ୍ୟାକୁଳ ହେଉଛ । ଆପଣଙ୍କର ଉତ୍କଟ ପୁତ୍ର ଅଭିଳାଷ ଦେଖି ମୁଁ ପୁତ୍ର ପ୍ରଦାନ କଲି । ସେତେବେଳେ ମୁଁ ଯାହା ଉପଦେଶ ଦେଇଥାନ୍ତି ତାହା ବ୍ୟର୍ଥ ହୋଇଥାନ୍ତା ଏବଂ ଜ୍ଞାନ ଉପଦେଶ ଗ୍ରହଣ କରିବା ପାଇଁ ଆପଣ ମଧ୍ୟ ପ୍ରସ୍ତୁତ ନଥିଲେ । ବର୍ତ୍ତମାନ ଆପଣ ପୁତ୍ରଜନିତ ଦୁଃଖ ଅନୁଭବ କଲେ । ଏବେ ପୁତ୍ର, ଦାରା ଆଦି ପରିଣାମରେ ଦୁଃଖଦାୟକ ବୋଲି ଆପଣ ଜାଣିପାରିଲେ । ଆପଣ ଏବେ ଜ୍ଞାନୋପଦେଶ ଗ୍ରହଣ କରିବା ପାଇଁ ଯୋଗ୍ୟ ଅଧିକାରୀ ହୋଇଛନ୍ତି । ସେଥିପାଇଁ ନାରଦଙ୍କୁ ସାଙ୍ଗରେ ଆଣି ମୁଁ ଆପଣଙ୍କ ପାଖକୁ ଆସିଛି । ଏବେ ତ ଆପଣ ଦେଖିଲେ ପୁତ୍ରବାନ୍ ଲୋକେ କି କି କଷ୍ଟ ବରଣ କରନ୍ତି । ଏସବୁ ଦୂରରୁ ପର୍ବତ ପରି ସୁନ୍ଦର ଓ ସୁଖକର ମନେ ହୁଅନ୍ତି । ପର୍ବତ ଉପରକୁ ଗଲେ କଣ୍ଟକାକୀର୍ଣ୍ଣ, ବନଜଙ୍ଗଲପୂର୍ଣ୍ଣ ଦୁର୍ଗମତାର ପରିଚୟ ଯେପରି ମିଳେ, ସେହିପରି ପୁତ୍ରର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପିତାମାତାଙ୍କୁ ବହୁ ଦୁଃଖ କଷ୍ଟ ସହିବାକୁ ପଡ଼େ । ପିଲାର ଜନ୍ମ ସମୟରେ ମା' ବହୁ କଷ୍ଟ ସହ୍ୟ କରନ୍ତି ! ପାଳନ, ପୋଷଣରେ ଆହୁରି ଅଧିକ କଷ୍ଟ ବରଣ କରିବାକୁ ପଡ଼େ । ପୁଅକୁ ଲେଖା ପଢ଼ାଠାରୁ ଆରମ୍ଭ କରି ବିବାହ କରାଇବାଯାଏ ତତୋଽଧିକ ଦୁଃଖ ସହିବାକୁ ହୁଏ । ଯଦି ପୁଅଟି ଅଯୋଗ୍ୟ ହେଲା ତେବେ ତାହାର ଚିନ୍ତାରେ ସର୍ବଦା ମନ ଅଶାନ୍ତ ଓ ଅସ୍ଥିର ହୁଏ । ତେଣୁ କେବଳ କଷ୍ଟ ହିଁ ସାର । ଅକାଳ-ମୃତ୍ୟୁ ଘଟିଲେ ପୁଅ ପାଇଁ କିପରି ଦୁଃଖ ହୁଏ ତାହା ଆପଣ ଅନୁଭବ କରୁଥିବେ ।''

ପୁତ୍ର ସମ୍ବନ୍ଧରେ ଯାହା କହିଲି ନିଜର ଦେହ ପକ୍ଷରେ ତାହାହିଁ ସତ୍ୟ ବୋଲି ଗ୍ରହଣ କରିବା ଉଚିତ । କାରଣ, ନିଜର ଦେହ ଓ ଦେହ ସହିତ ସମ୍ପୃକ୍ତ ଧନ, ସମ୍ପଦ, ସ୍ତ୍ରୀ, ଶବ୍ଦ, ରୂପ, ରସ, ଗନ୍ଧ ଓ ସ୍ପର୍ଶ ଗୁଣଯୁକ୍ତ ଭୋଗ୍ୟ ପଦାର୍ଥ ତଥା ରାଜ୍ୟବୈଭବ, ବନ୍ଧୁ-ବାନ୍ଧବ ସମସ୍ତେ ଦୁଃଖର କାରଣ । ଏସବୁ ଚଞ୍ଚଳ, ନଶ୍ୱର ଓ କ୍ଷଣସ୍ଥାୟୀ ।''

ରାଜା ପଚାରିଲେ—''ଭଗବନ୍ ! ସ୍ତ୍ରୀ, ପୁତ୍ର, କନ୍ୟା, ବସ୍ତ୍ର, ଆଭୂଷଣ, ବିଭିନ୍ନ ପ୍ରକାର ଖାଦ୍ୟପେୟ, ସୁଗନ୍ଧ ଦ୍ରବ୍ୟାଦି ଆମକୁ ପ୍ରତ୍ୟକ୍ଷ ଭାବେ ସୁଖକର ଦେଖାଯାଉଛି । ସେଥିରେ ଦୁଃଖାନୁଭୂତ ହେଉଛି କାହିଁକି ?''

ଅଙ୍ଗିରା କହିଲେ—''ରାଜନ ! ତାହାହିଁ ଭ୍ରମ । ଆପଣ ଯାହାକୁ ପ୍ରତ୍ୟକ୍ଷ ବୋଲି କହୁଛନ୍ତି ତାହାର ବାସ୍ତବତା କିଛି ନାହିଁ ।''

'ଯାହାର ପ୍ରତ୍ୟକ୍ଷ ଅନୁଭୂତି ଆସୁଛି ତାହାର କିପରି ଅସ୍ତିତ୍ୱ ନାହିଁ' ବୋଲି ରାଜା ପଚାରିବାରୁ ମହର୍ଷି ଅଙ୍ଗିରା କହିଲେ—''ରାଜନ୍ ! ଆପଣ କାହାକୁ ପ୍ରତ୍ୟକ୍ଷ ବୋଲି କହୁଛନ୍ତି ? ଆପଣ ଯେଉଁ ଚକ୍ଷୁ ଦ୍ୱାରା ଓ ଅନ୍ୟାନ୍ୟ ଇନ୍ଦ୍ରିୟ ଦ୍ୱାରା ପ୍ରତ୍ୟକ୍ଷ କରୁଛନ୍ତି ସେସବୁ ଇନ୍ଦ୍ରିୟ ତ ଅସତ୍ । ଆଉ ଦେଖିବା କଥା କହୁଛନ୍ତି, ଇନ୍ଦ୍ରଧନୁ ତ ଆକାଶରେ ଦେଖାଯାଏ । ଆକାଶ ମଧ୍ୟ ନୀଳ ଦେଖାଯାଏ । ବାସ୍ତବରେ ନୀଳରଙ୍ଗର କୌଣସି ପଦାର୍ଥ ଉପରେ ରଖାଯାଇଛି କି ? ସେହିପରି ରଙ୍ଗବେରଙ୍ଗର ବାସ୍ତବତା କିଛି ଅଛି କି ? ପ୍ରତ୍ୟକ୍ଷ ଅନୁଭବ କଥା ଛାଡ଼ନ୍ତୁ, ଆପଣ ସ୍ୱପ୍ନରେ ନାନା ପ୍ରକାର ବସ୍ତୁ ଦେଖୁଛନ୍ତି, ନାନାବିଧ

ଭୋଗ୍ୟ ସାମଗ୍ରୀ ଉପଭୋଗ କରୁଛନ୍ତି, ଦୁଃଖଦାୟକ ଦୃଶ୍ୟରେ ଦୁଃଖିତ ହେଉଛନ୍ତି । ମନରେ ନାନା ପ୍ରକାର କଳ୍ପନା କରୁଛନ୍ତି, କେତେ କେତେ ଯୋଜନା କରୁଛନ୍ତି, ଏହା କରିବି, ତାହା କରିବି, ଏପରି କଲେ ସୁଫଳ ମିଳିବ, ସେପରି କଲେ କୁଫଳ ମିଳିବ ଇତ୍ୟାଦି । କିନ୍ତୁ ଏଗୁଡ଼ିକର ସତ୍ୟତା, ବାସ୍ତବତା କିଛି ନାହିଁ । ତେଣୁ ମନର କଳ୍ପନା, ସ୍ୱପ୍ନଦୃଷ୍ଟ ପ୍ରତ୍ୟୟର ଅସ୍ତିତ୍ୱ ନଥିବାରୁ ସେହି ଅନିତ୍ୟବସ୍ତୁ ସଂଯୋଗରେ ସୁଖ ଦୁଃଖର ଅନୁଭୂତି ଆସେ । ଏଗୁଡ଼ିକ ମିଥ୍ୟା କଳ୍ପିତ ପଦାର୍ଥ, ପରିବର୍ତ୍ତନଶୀଳ ଓ କ୍ଷଣସ୍ଥାୟୀ । କାରଣ, ବାସ୍ତବ ରୂପ ନଥାଇ ମଧ୍ୟ ଏଗୁଡ଼ିକ ପ୍ରତ୍ୟକ୍ଷ ଦେଖାଯାନ୍ତି । ତେଣୁ ଆଜି ଯାହା ଦେଖୁଛୁ, କାଲି ତାହା ବଦଳିଯାଉଛି ।''

ରାଜା ଚିତ୍ରକେତୁ ପଚାରିଲେ—''ଭଗବନ୍ ! ସୁଖଦୁଃଖ ଅନୁଭୂତି ତ ସମସ୍ତଙ୍କର ହୁଏ । ସମସ୍ତେ କଣ ସଞ୍ଚିତ କର୍ମଫଳରୁ ଏହା ଅନୁଭବ କରନ୍ତି ?''

ଅଙ୍ଗିର ମୁନି କହିଲେ—''ରାଜନ୍ ! ତାହା ଠିକ୍ ନୁହେଁ । ଜ୍ଞାନୀ ପୁରୁଷର ଦ୍ୱୈତ ଭାବନା ରହେନାହିଁ । ସେ କୌଣସି ଆକାଙ୍‌କ୍ଷା ରଖି କୌଣସି କାର୍ଯ୍ୟ କରେ ନାହିଁ । ତା' ଶରୀରରେ ଇନ୍ଦ୍ରିୟଗୁଡ଼ିକ ଇନ୍ଦ୍ରିୟର ପ୍ରୟୋଜନ ବିଷୟରେ ପ୍ରବୃତ୍ତ ହୁଅନ୍ତି । ଇନ୍ଦ୍ରିୟ ସହିତ ତା'ର କି ସମ୍ବନ୍ଧ ଅଛି ? ତେଣୁ ତତ୍‌ସମ୍ବନ୍ଧୀୟ କୌଣସି କାର୍ଯ୍ୟରେ ସେ ଲିପ୍ତ ହୁଏ ନାହିଁ । ତା'ର ସଞ୍ଚିତ କର୍ମ ନଷ୍ଟ ହୋଇଯାଏ । କିନ୍ତୁ ଯେ କର୍ମବାସନା ଦ୍ୱାରା ପ୍ରେରିତ ହୋଇ ବିଷୟ ଚିନ୍ତା କରେ ତାହାର ମନରେ ନାନା ପ୍ରକାର କର୍ମ ଉଦିତ ହୁଏ । ତେଣୁ ସଦ୍‌ବୁଦ୍ଧି ଦ୍ୱାରା ଅସତ୍ ପଦାର୍ଥ ଭାବନାରୁ ନିଜକୁ ମୁକ୍ତ ରଖିବା ଉଚିତ । ଅନିତ୍ୟ ପଦାର୍ଥ-ଭ୍ରମ୍‌ରେ ମଧ୍ୟ ନିତ୍ୟ ବୋଲି ଭାବିବା ଉଚିତ ନୁହେଁ । କାରଣ, ପରିଣାମରେ ଦୁଃଖଦାୟକ ବିଷୟରୁ କେବେହେଲେ ସୁଖ ଇଚ୍ଛା କରିବା ଜ୍ଞାନୀ ଲୋକର କାର୍ଯ୍ୟ ନୁହେଁ ।''

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—''ପ୍ରଭୋ ! ଜୀବାତ୍ମା ସୁଖ ଦୁଃଖ ରହିତ ହୋଇଥିଲାବେଳେ କେଉଁ କାରଣରୁ ତାକୁ ସୁଖଦୁଃଖ ଭୋଗ କରିବାକୁ ପଡ଼ୁଛି ?''

ଅଙ୍ଗିର ମୁନି କହିଲେ—''ରାଜନ୍ ! ଦଶ ଇନ୍ଦ୍ରିୟ ଓ ମନକୁ ନେଇ ଗଠିତ ପଞ୍ଚଭୂତାତ୍ମକ ସୂକ୍ଷ୍ମ ଶରୀର ଜୀବାତ୍ମାକୁ ନାନା ପ୍ରକାର ଦୁଃଖ କଷ୍ଟ ଦିଏ ଓ ସନ୍ତପ୍ତ କରାଏ । ତେଣୁ ଆପଣ ଶାନ୍ତ ଚିତ୍ତରେ ବିଚାର କରି ସଂସାରର ଆସକ୍ତିକୁ ତ୍ୟାଗ କରନ୍ତୁ । ସ୍ୱପ୍ନଦୃଷ୍ଟ ପଦାର୍ଥ ପରି ସଂସାରର ପ୍ରତ୍ୟକ୍ଷୀଭୂତ ପଦାର୍ଥ ମିଥ୍ୟା । ରାତିର ସ୍ୱପ୍ନ ପ୍ରାତଃକାଳରେ ମିଥ୍ୟା ପ୍ରତୀତ ହେଲା ପରି ଜାଗ୍ରତ ଅବସ୍ଥାରେ ଇନ୍ଦ୍ରିୟଗ୍ରାହ୍ୟ ସମସ୍ତ ପଦାର୍ଥ ଅଜ୍ଞାନତା ହେତୁ ସତ୍ୟ ବୋଲି ପ୍ରତୀତ ହୁଏ । ସେଥିପାଇଁ ଜୀବ ଚୌରାଶି ଲକ୍ଷ ଯୋନିରେ ଘୂରିବୁଲେ । ଆପଣ ବିକ୍ଷିପ୍ତ ଚିତ୍ତବୃତ୍ତିକୁ ନିରୋଧ କରନ୍ତୁ । ଏ ଶରୀର ମୁଁ, ଶରୀର ସହିତ ସମ୍ବନ୍ଧିତ ସ୍ତ୍ରୀ, ପୁତ୍ର, ପରିବାର, ରାଜ୍ୟ, ଧନ, ଦେହ ସବୁ କିଛି ମୋର, ଏହି ବିଚାର ପରିତ୍ୟାଗ କରନ୍ତୁ । ବୈରାଗ୍ୟଭାବ ପୋଷଣ ପୂର୍ବକ ଦ୍ୱୈତ ଭାବନା ଦ୍ୱାରା ଯେଉଁ ମିଥ୍ୟା ବୁଦ୍ଧି ଜାତ ହୋଇଛି

ତାହା ପରିହାର କରନ୍ତୁ । ଆତ୍ମଚିନ୍ତନ ଦ୍ୱାରା ଆପଣ ସମସ୍ତ ଶୋକ, ମୋହ ଭୁଲି ପରମ ଶାନ୍ତି ଲାଭ କରିବେ ।''

ଶ୍ରୀ ଶୁକଦେବ କହିଲେ—''ରାଜନ୍ ! ଅଙ୍ଗିରା ମୁନି ରାଜା ଚିତ୍ରକେତୁଙ୍କୁ ଆତ୍ମ ଓ ଅନାତ୍ମ ପଦାର୍ଥ ମଧ୍ୟରେ ଥିବା ପାର୍ଥକ୍ୟ ବୁଝାଇ ଦେଇଥିଲେ । ମୁନିଙ୍କଠାରୁ ଇଙ୍ଗିତ ପାଇ ନାରଦ କହିବାକୁ ଆରମ୍ଭ କଲେ ।''

## ଛପ୍ପୟ

କୋ କଳତ୍ର, କୋ ମିତ୍ର, ପୁତ୍ର, କୋ କା କୋ ଭାଇ ।
ଜଗତେ ସବ ସମ୍ବନ୍ଧ ଅନ୍ତମହିଁ ଅତି ଦୁଃଖଦାଇ ॥
ସମ୍ପତ୍ତି ସବ ଐଶ୍ୱର୍ଯ୍ୟ, ବିଷୟ-ସୁଖ, ରାଜ, କୋଷ, ଧନ ।
ପୃଥିବୀ, ସେନା, ଭୃତ୍ୟ ସୁହୃଦ୍ ଅମାତ୍ୟ ବନ୍ଧୁଗନ ॥
ସ୍ୱପ୍ନ ସମାନ ଅନିତ୍ୟ ଯେ, ଶୋକ ମୋହ ଭୟ ଦେହିଁ ଦୁଖ ।
ତଜୋ ଦ୍ୱୈତ ଭ୍ରମ-ଜାଲ କୁଁ, ନିବ ପାଓ ନୃପ ନିତ୍ୟ-ସୁଖ ॥



# ଦେବର୍ଷି ନାରଦଙ୍କ ଉପଦେଶ

ଏତାଂ ମନ୍ତ୍ରୋପନିଷଦଂ ପ୍ରତୀଚ୍ଛ ପ୍ରୟତୋ ମମ ।
ଯାଂ ଧାରୟନ୍‌ସପ୍ତରାତ୍ରାଦ୍ ଦ୍ରଷ୍ଟା ସଂକର୍ଷଣମ୍-ପ୍ରଭୁମ୍ ॥

(ଶ୍ରୀମଦ୍ଭାଗବତ-୬ଷ୍ଠ ସ୍କନ୍ଧ-୧୫ଅ-୨୭ ଶ୍ଲୋ)

## ଛପ୍‌ପୟ

କହେଁ୍ୟା ଅଙ୍ଗିରା ଜ୍ଞାନ, ଫେରି ବୋଲେ ନାରଦ ମୁନି ।
ଦେହୁଁ ମନ୍ତ୍ର ଉପନିଷଦ୍ ତାହି ନୃପ ସାବଧାନ ସୁନି ॥
ଜଗ କେ ସବ ସମ୍ବନ୍ଧ ସଙ୍ଗ ତନକେ ଛି ଜାୱେଁ ।
ମାତା ପତ୍ନୀ ବନେ ପିତା ପୁତ୍ର ସୁତ କହାୱେଁ ॥
ଦ୍ୟୋ କହି ମୃତକ କୁମାରକୁଁ, ମୁନି ଜୀବିତ-ସୋ କରି ଦୟୋ ।
ଦୁଃଖିତ ଭୂପ ତେଁ ଜୀବ ନେ, ଆତ୍ମଜ୍ଞାନ ଅତି ପ୍ରିୟ କହେଁ୍ୟା ॥

ଜୀବ କର୍ମଫଳ ଅନୁସାରେ ସଂସାରରେ ଘୂରିବୁଲେ । ଏହି ବୁଲିବା ମଧ୍ୟରେ ସଂଯୋଗବଶତଃ ଅନେକଙ୍କ ସହିତ ତା'ର ସମ୍ବନ୍ଧ ସ୍ଥାପିତ ହୋଇଥାଏ । କିନ୍ତୁ କାଳକ୍ରମେ ସେସବୁ ସମ୍ବନ୍ଧକୁ ସେ ଭୁଲିଯାଏ । ତାକୁ ତ କର୍ମଫଳ ଭୋଗ କରିବାର ପଡ଼େ । ସେଥିପାଇଁ ବାସନାର ପଛେ ପଛେ ସେ ବୁଲିଥାଏ । ଜଣେ ଶ୍ରେଷ୍ଠୀ ଧନ ଅର୍ଜନ ପାଇଁ ବିଭିନ୍ନ ଦେଶକୁ ଯାଏ । ନାନା ଲୋକଙ୍କ ସହିତ ସେ ସମ୍ପର୍କ ସ୍ଥାପନ କରେ । କାହା ପାଖରୁ କିଛି କିଣେ ଓ ଅନ୍ୟ କାହାକୁ କିଛି ବିକେ । କାହା ସହିତ ସହଯାତ୍ରୀ ହୁଏ ତ କାହା ଘରେ ଆଶ୍ରୟ ନିଏ । କାହାକୁ ପୁଣି ସେ କାର୍ଯ୍ୟରେ ଲଗାଏ । କାମ କରାଇବାବେଳେ ସ୍ନେହରେ କେତେ ମିଠା ମିଠା କଥା କହେ । କିନ୍ତୁ ବଣିଆ ଯେପରି କାହାରି ବନ୍ଧୁ ନୁହେଁ ଏବଂ ତା'ର ବନ୍ଧୁତା ଯେପରି ନିଜର ସ୍ୱାର୍ଥ ଉପରେ ଆଧାରିତ, ସେହିପରି ଜୀବର କାହାରି ସହିତ ମିତ୍ରତା ନଥାଏ । ଶରୀର ତ୍ୟାଗ କରିବାମାତ୍ରେ ସେ ସମସ୍ତ ସମ୍ପର୍କ ତୁଟାଇ ଦିଏ । ପୂର୍ବଜନ୍ମ ବା ପରଜନ୍ମ କଥା ଛାଡ଼ନ୍ତୁ, ଏ ଜନ୍ମରେ ଯାହା ସହିତ ସାଙ୍ଗ ହୋଇ ପାଠ ପଢ଼ିଛୁ, ଏକା ସାଙ୍ଗରେ ଖାଇଛୁ, ପିଇଛୁ ଆଉ ଖେଳିଛୁ, ଖୁବ୍ ଘନିଷ୍ଠ ହୋଇଛୁ, ସେ ପୁଣି ଦଶ କୋଡ଼ିଏ ବର୍ଷ ବ୍ୟବଧାନରେ ଦେଖା ହେଲେ ଆଦୌ ଚିହ୍ନି ହୁଏ ନାହିଁ । ତେଣୁ ପର-

ଜନ୍ମରେ ଯେତେବେଳେ ଅନ୍ୟପ୍ରକାର ଶରୀରକୁ ଆଶ୍ରୟ କରେ ସେତେବେଳେ ତାହା-ପରିଚୟ ରହିବ କିପରି ? ଦେହ ନଷ୍ଟ ହେବା ସଙ୍ଗେ ସଙ୍ଗେ ସମସ୍ତ ସମ୍ପର୍କ ନଷ୍ଟ ହୋଇଯାଏ । ପିତା ପୁତ୍ର ରୂପରେ, ସ୍ତ୍ରୀ ଜନନୀ ରୂପରେ, ଏବଂ ଭଗିନୀ ପତ୍ନୀ ରୂପରେ ଜନ୍ମ ହୋଇପାରେ । ମନୁଷ୍ୟରୁ କେହି ପଶୁ ପାଲଟି ଯାଏ ତ କେହି ଦେବତା ହୋଇଯାଏ । ଏଥିରୁ ସାଂସାରିକ ସମ୍ବନ୍ଧରେ ଯେ କୌଣସି ସ୍ଥିରତା ନାହିଁ ତାହା ପ୍ରମାଣିତ ହୁଏ । ଆତ୍ମା ସହିତ ଏହାର କୌଣସି ସମ୍ପର୍କ ନାହିଁ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ୍ ଅଙ୍ଗିରା ମୁନି ଯେତେବେଳେ ଉପଦେଶ ଦେଇସାରି ନୀରବ ହେଲେ ସେତେବେଳେ ରାଜା ଚିତ୍ରକେତୁ ତାଙ୍କ ମୁହଁକୁ ବଲବଲ କରି ଚାହିଁ ରହିଲେ । କିଛି ସମୟ ପରେ ସେ ପଚାରିଲେ—'ଭଗବନ୍ ! ଏବେ ମୋର କର୍ତ୍ତବ୍ୟ କଣ ?"

ଏହା ଶୁଣି ଅଙ୍ଗିରା ମୁନି କହିଲେ—"ରାଜନ୍ ! ଗୁରୁଙ୍କ ଆଶ୍ରୟ ବିନା ଉଦ୍ଧାର ପାଇବାର ଅନ୍ୟ କୌଣସି ଉପାୟ ନାହିଁ । ତୁମର ସୌଭାଗ୍ୟ ହେତୁ ସମସ୍ତ ବିଦ୍ୟାର ଆଚାର୍ଯ୍ୟ ବ୍ରହ୍ମାଙ୍କ ପୁତ୍ର ଦେବର୍ଷି ନାରଦ ସ୍ୱୟଂ ଏଠାରେ ଉପସ୍ଥିତ ଅଛନ୍ତି । ତୁମେ ତାଙ୍କର ଶରଣାପନ୍ନ ହୁଅ । ତାଙ୍କଠାରୁ ମନ୍ତ୍ରଦୀକ୍ଷା ନିଅ । ମନ୍ତ୍ରଦୀକ୍ଷା ପରେ ସେ ତୁମକୁ ଶିକ୍ଷା ଦେବେ । ତାଙ୍କ ଶିକ୍ଷା ଅନୁସାରେ ତୁମେ ଯଦି ଆଚରଣ କରିବ ତେବେ ଶାନ୍ତି ଲାଭ କରିବ ଓ ମୁକ୍ତି ପାଇବ ।"

ଭଗବାନ୍ ଅଙ୍ଗିରାଙ୍କ ଆଦେଶ ଅନୁସାରେ ମହାରାଜ ଚିତ୍ରକେତୁ ନାରଦଙ୍କ ଶରଣାପନ୍ନ ହୋଇ ମନ୍ତ୍ରଦୀକ୍ଷା ଦେବା ପାଇଁ ପ୍ରାର୍ଥନା କଲେ । କିନ୍ତୁ ନାରଦ ଆଜିକାଲିର କାନଫୁଙ୍କା ଗୁରୁ ପରି ଗୁରୁ ନଥିଲେ । ଶିଷ୍ୟକୁ ପରୀକ୍ଷା କରି, ତା'ର ସାମର୍ଥ୍ୟ ଓ ଅଧିକାରକୁ ବୁଝି ଯଥାଯୋଗ୍ୟ ଉପଦେଶ ଦେବା ଥିଲା ନାରଦଙ୍କ କାମ । ତେଣୁ ନାରଦ ଭାବିଲେ—"ରାଜାଙ୍କର ଯଥାର୍ଥ ବୈରାଗ୍ୟ ଆସି ନାହିଁ । ଅତ୍ୟଧିକ ଶୋକ ହେତୁ ତାଙ୍କ ମନରେ ବୈରାଗ୍ୟ ଭାବନା ଆସିଛି, ତାହା ପୁଣି ତମୋଗୁଣ କାରଣରୁ ଘଟିଛି । ତେଣୁ ରାଜାଙ୍କୁ ତମୋଗୁଣରେ ଦେବଙ୍କ ଉପାସନା ପାଇଁ ଉପଦେଶ ଦିଆଯାଇପାରେ । ତପର ପରାକାଷ୍ଠା ବା ସତ୍ତ୍ୱର ପରାକାଷ୍ଠା ଉପରେ ମୁକ୍ତି ଆଧାରିତ । ସତ୍ତ୍ୱ ମୂର୍ତ୍ତି ଭଗବାନ୍ ଲକ୍ଷ୍ମୀନାରାୟଣଙ୍କ ଉପାସନା କରି ଅସଂଖ୍ୟ ଶାନ୍ତସ୍ୱଭାବ ଭଗବଦ୍‌ଭକ୍ତ ସଂସାର ବନ୍ଧନରୁ ମୁକ୍ତିଲାଭ କରିଛନ୍ତି । ସେହିପରି ତମୋଗୁଣସମ୍ପନ୍ନ ମଧୁ, କୈଟଭ, ରାବଣ, ହିରଣ୍ୟକଶିପୁ ଆଦି ବଡ଼ ବଡ଼ ଅସୁରମାନେ ମଧ୍ୟ ମୁକ୍ତି ହୋଇଛନ୍ତି । ତେଣୁ ରାଜାଙ୍କୁ ଭଗବାନଙ୍କ ତମୋମୟୀ ମୂର୍ତ୍ତି ସଙ୍କର୍ଷଣଙ୍କ ଉପାସନା ପାଇଁ ଉପଦେଶ ଦେବା ଉଚିତ । ଭଗବାନ୍ ସଙ୍କର୍ଷଣଙ୍କ ଦୟାରୁ ସେ ଭକ୍ତି ଓ ମୁକ୍ତି ଲାଭ କରିବେ ।"

ଦେବର୍ଷି ନାରଦ ରାଜାଙ୍କ ଉଦ୍ଦେଶ୍ୟରେ କହିଲେ—"ରାଜନ୍ ! ମୁଁ ତୁମକୁ ଭଗବାନ୍ ସଙ୍କର୍ଷଣଙ୍କ ମନ୍ତ୍ର ଉପଦେଶ ଦେଉଛି । ଏହି ମନ୍ତ୍ର ଗ୍ରହଣ କରି ତୁମେ ସାତଦିନ ଯାଏ ନିରନ୍ତର ରହି ଅହୋରାତ୍ର ଜପ କଲେ ଭଗବାନ୍ ସଙ୍କର୍ଷଣଙ୍କ ସାକ୍ଷାତ୍ ଲାଭ କରି ପାରିବ ।

ରାଜା ପଚାରିଲେ—"ଭଗବନ୍ ! ଏହି ମନ୍ତ୍ର ଜପର ଫଳ କଣ ହୁଏ ?"

ସାମାନ୍ୟ ଗମ୍ଭୀର ହୋଇ ନାରଦ କହିଲେ—"ମହାରାଜ ! ଏହା ଅମୋଘ ଫଳଦାୟକ । ଏହାଦ୍ୱାରା ତୁମେ ପରମାନନ୍ଦ ଲାଭ କରିବ ।"

ରାଜା ପଚାରିଲେ—"ଭଗବନ୍ ! ଏହି ମନ୍ତ୍ର ଦ୍ୱାରା କାହାକୁ ପରମାନନ୍ଦ ମିଳିଛି କି ?"

ରାଜାଙ୍କ ପ୍ରଶ୍ନ ଶୁଣି ନାରଦ ଦୃଢ଼ ସ୍ୱରରେ କହିଲେ "ହେ ରାଜେନ୍ଦ୍ର ! ପୂର୍ବକାଳରେ ଭଗବାନ୍ ସଙ୍କର୍ଷଣ ଆଶ୍ରୟ ନେଇ ତମୋଗୁଣଶାଳୀ, ଯୋଗୀଶ୍ରେଷ୍ଠ ଶଙ୍କର ଓ ଅନ୍ୟାନ୍ୟ ବହୁ ସିଦ୍ଧଯୋଗୀ ସାମ୍ୟାତିଶୟ୍ୟହୀନ ମହାମହିମା ଲାଭ କରିଛନ୍ତି । ସେଥିପାଇଁ ଏ ମନ୍ତ୍ର ମୁଁ ତୁମକୁ ଉପଦେଶ ଦେଉଛି । ଏହାଦ୍ୱାରା ତୁମେ ଶୋକ, ମୋହଜନିତ କର୍ମବନ୍ଧନ ତ୍ୟାଗକରି ପରମପଦ ଲାଭ କରିବ । ଅଜ୍ଞାନତା ଜନିତ ଦ୍ୱୈତ ଭାବନା ତୁମ ମନରୁ ଦୂର ହୋଇଯିବ ଏବଂ ଚିର ସୁଖମୟ ଶ୍ରୀହରିଙ୍କଠାରେ ଲୀନ ହେବ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏହିପରି ପ୍ରଥମେ ମନ୍ତ୍ରର ମହିମା କହି ଓ ତା'ର ପ୍ରଭାବ ସମ୍ବନ୍ଧରେ ସୂଚନା ଦେଇ ନାରଦ ରାଜାଙ୍କୁ ସଙ୍କର୍ଷଣ ମନ୍ତ୍ର ଉପଦେଶ ଦେବା ପାଇଁ ଆଶ୍ୱାସନା ଦେଲେ ।"

ଏହା ଶୁଣି ମହର୍ଷି ଶୌନକ ପଚାରିଲେ—"ହେ ସୂତ ! ଭଗବାନ୍ ନାରଦ ରାଜାଙ୍କୁ କିପରି ମନ୍ତ୍ରଦୀକ୍ଷା ଦେଲେ ତାହା ଆମକୁ କୁହନ୍ତୁ ।"

ମହର୍ଷି ସୂତ କହିଲେ—'ଭଗବନ୍ ! ମନ୍ତ୍ରର ବିଷୟ ବଡ଼ ରହସ୍ୟପୂର୍ଣ୍ଣ । ଅଧିକାରୀ, ଅନଧିକାରୀ ସମସ୍ତଙ୍କ ଆଗରେ ସେହି ରହସ୍ୟ ଉଦ୍‌ଘାଟନ କରାଯାଏ ନାହିଁ । ରହସ୍ୟ ବିଷୟ, ସଂସ୍କାରୀ, ଅଧିକାରୀ ଯେ ତାହା ବୁଝିବେ ଓ ଗ୍ରହଣ କରିବେ କେବଳ ତାଙ୍କୁ ହିଁ କୁହାଯାଏ । ଅନଧିକାରୀମାନଙ୍କ ବୁଦ୍ଧିରେ ତାହା ସ୍ଥାନ ପାଇପାରେ ନାହିଁ । ସେମାନେ ତାକୁ ଗାଳୁକଥା ଭାବି ପରିତ୍ୟାଗ କରନ୍ତି । ତେଣୁ ଏଠାରେ ମୁଁ ସେକଥା କହିବା ପାଇଁ ଇଚ୍ଛା କରୁନାହିଁ । ଯେତେବେଳେ ସ୍ୱତନ୍ତ୍ରଭାବେ ମନ୍ତ୍ର ଉପାସନା ପ୍ରସଙ୍ଗ ଆସିବ ସେତେ-ବେଳେ ଯଥାସ୍ଥାନରେ ଯଥାସମୟରେ ମୁଁ ସେହି ରହସ୍ୟ ବର୍ଣ୍ଣନା କରିବି ।"

ଏହା ଶୁଣି ଶୌନକ କହିଲେ—"ହେ ମହର୍ଷେ ! ଆପଣ ଯାହା ଉଚିତ ମନେ କରୁଛନ୍ତି ତାହା କରନ୍ତୁ । ଆଚ୍ଛା, ଦୀକ୍ଷା ପ୍ରସଙ୍ଗ ତ ରହସ୍ୟମୟ । କିନ୍ତୁ ଦେବର୍ଷି ନାରଦ ରାଜାଙ୍କୁ କି ଶିକ୍ଷା ଦେଲେ ତାହା ତ କହିବାରେ ଆପଣଙ୍କର ଆପତ୍ତି ନାହିଁ ।"

ମହର୍ଷି ସୂତ କହିଲେ—"ଭଗବନ୍ ! ଶୋକାତୁର ଅର୍ଜ୍ଜୁନଙ୍କୁ ଅଭିମନ୍ୟୁ ଦ୍ୱାରା ଭଗବାନ୍ ଶ୍ରୀକୃଷ୍ଣ ଯେପରି ଶିକ୍ଷା ଦେଇଥିଲେ ସେହିପରି ନାରଦ ଜୀବ ମାଧ୍ୟମରେ ରାଜା ଚିତ୍ରକେତୁଙ୍କୁ ଶିକ୍ଷା ପ୍ରଦାନ କରିଥିଲେ ।"

ଶୌନକ ପଚାରିଲେ—"ଭଗବାନ୍ ଅର୍ଜ୍ଜୁନଙ୍କୁ କିପରି ଶିକ୍ଷା ଦେଇଥିଲେ ? ପ୍ରଥମେ ଏହା କହି ପରେ ନାରଦୋକ୍ତ ଉପଦେଶ କଥା କହିବେ । ଏହା ଦ୍ୱାରା ନାରଦୋପଦେଶ ବୁଝିବା ସହଜ ହେବ ।"

ମହର୍ଷି ସୂତ ପ୍ରସନ୍ନ ହୋଇ କହିଲେ—"ମୁନିଗଣ ! ଶୁଣନ୍ତୁ, ଅଭିମନ୍ୟୁଙ୍କୁ ଅର୍ଜ୍ଜୁନ ଖୁବ୍ ଭଲ ପାଉଥିଲେ । ସେ ଶ୍ରୀକୃଷ୍ଣଙ୍କ ଭଗିନୀ ସୁଭଦ୍ରାଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲା । ସେ ଅତି ସୁନ୍ଦର, ସୁଶୀଳ ଓ ପିତୃମାତୃଭକ୍ତ ଥିଲା । ରୂପରେ ସେ ଠିକ୍ ଅର୍ଜ୍ଜୁନଙ୍କ ପରି ଥିଲା । ସ୍ୱଭାବ, ଗୁଣ ଓ ଅସ୍ତ୍ରଶସ୍ତ୍ର ବିଦ୍ୟାରେ ସେ ଅର୍ଜ୍ଜୁନଙ୍କଠାରୁ କିଛି ଅଧିକ ଥିଲା । ଅର୍ଜ୍ଜୁନ ତାକୁ ପ୍ରାଣଠାରୁ ବଳି ଅଧିକ ଆଦର କରୁଥିଲେ । ସେ ବିବାହ ହୋଇ ସାରିଥିଲେ ମଧ୍ୟ ଅର୍ଜ୍ଜୁନ ତାକୁ ଛୋଟ ପିଲା ପରି ସ୍ନେହ କରୁଥିଲେ । ବାପା କୋଳରେ ବସାଇ ଆଦର କଲାବେଳେ ଅଭିମନ୍ୟୁ ଲଜ୍ଜିତ ହୋଇ ପଡୁଥିଲା । ବାପାଙ୍କ କୋଳରେ ବସିଥିବାବେଳେ ସେ ଜଣେ ତ୍ରୈଲୋକ୍ୟ ବିଜୟୀ ବୀର ବୋଲି ଜଣାଯାଉ ନଥିଲେ । ଅଭିମନ୍ୟୁ ଧର୍ମରାଜ ଯୁଧିଷ୍ଠିରଙ୍କ ସହିତ ସବୁ ଭାଇଙ୍କର ଆଦରର ଧନ ଥିଲେ । ପାଞ୍ଚ ପାଣ୍ଡବଙ୍କ ମଧ୍ୟରୁ ଯେ ଯେଉଁ ଆଦେଶ ଦେଉଥିଲେ ଅଭିମନ୍ୟୁ ତାହା ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ସମସ୍ତେ ତାଙ୍କୁ ସ୍ନେହ କରୁଥିଲେ ମଧ୍ୟ ସେ ଥିଲେ ଅର୍ଜ୍ଜୁନଙ୍କ ଆତ୍ମା ସଦୃଶ ।

ମହାଭାରତ ଯୁଦ୍ଧରେ ଶତ୍ରୁମାନେ ଅନ୍ୟାୟ ଭାବରେ ଯୁଦ୍ଧର ନିୟମ ଭଙ୍ଗ କରି ସମସ୍ତେ ଘେରିଯାଇ ଅଭିମନ୍ୟୁଙ୍କୁ ମାରିଦେଲେ । ଏହାଦ୍ୱାରା କେବଳ ପଞ୍ଚପାଣ୍ଡବ ନୁହେଁ ସମଗ୍ର ପାଣ୍ଡବ ବାହିନୀ ଦୁଃଖରେ ଅଭିଭୂତ ହୋଇପଡ଼ିଲେ । ମହାବୀର ଅର୍ଜ୍ଜୁନଙ୍କ ମାନସିକ ଅବସ୍ଥା ଅତୀବ ଶୋଚନୀୟ ହୋଇଗଲା । ସେ କାନ୍ଧରୁ ଧନୁକୁ କାଢ଼ି ତଳେ ଥୋଇଦେଲେ । ତୂଣୀରକୁ ଖୋଲିଦେଲେ । ଶ୍ରୀକୃଷ୍ଣଙ୍କ ଆଗରେ ଜାନୁପାତପୂର୍ବକ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ଅର୍ଜ୍ଜୁନ କହିଲେ—"ପ୍ରଭୋ ! ବହୁତ କିଛି ହୋଇଗଲା । ଏବେ ଆଉ ମୁଁ ଯୁଦ୍ଧ କରିବି ନାହିଁ । ଯୁଦ୍ଧ କରିବି ଯଦି କାହା ପାଇଁ କରିବି ? ପୁତ୍ରକୁ ମରାଇ ତା'ରି ରକ୍ତରେ ରଞ୍ଜିତ ରାଜ୍ୟକୁ ଭୋଗ କରିବା ପାଇଁ ମୋର ଇଚ୍ଛା ନାହିଁ ।"

ଅର୍ଜ୍ଜୁନଙ୍କ କଥାରେ ଦୃଢ଼ତା ଥିଲା । ସେଥିରେ ଯୁଦ୍ଧ ଆରମ୍ଭକାଳୀନ ଆଶଙ୍କା ନଥିଲା, ଯାହାକୁ ଭଗବାନ ଶ୍ରୀକୃଷ୍ଣ ଗୀତାଜ୍ଞାନ ଦ୍ୱାରା ଶାନ୍ତ କରି ଦେଇଥିଲେ । ଅର୍ଜ୍ଜୁନଙ୍କର ସିଦ୍ଧାନ୍ତ ଥିଲା ଅଟଳ । ଭଗବାନ୍ ନାନା ପ୍ରକାରେ ତାଙ୍କୁ ବୁଝାଇଲେ, ଅନେକ ଉଦାହରଣ ଦେଲେ, ମୃତ୍ୟୁ ଅନିବାର୍ଯ୍ୟ ବୋଲି କହିଲେ, କର୍ମର ଗହନ ଗତି ପ୍ରସଙ୍ଗ କହିଲେ; କିନ୍ତୁ ଅର୍ଜ୍ଜୁନ ନିଜ ସିଦ୍ଧାନ୍ତରୁ ଟଳେ ହେଲେ ବିଚ୍ୟୁତ ହେଲେ ନାହିଁ । ସେ ଯୁଦ୍ଧ କରିବେ ନାହିଁ ବୋଲି ସ୍ପଷ୍ଟ କହିଦେଲେ ।

ଭଗବାନ୍ ପଚାରିଲେ—"ଆଚ୍ଛା, ଠିକ୍ ଅଛି । ତୁମେ କଣ ଚାହୁଁଛ ? କଣ କଲେ ତୁମେ ଯୁଦ୍ଧ କରିବ ?"

ଅର୍ଜ୍ଜୁନ କହିଲେ—"ହଁ, ଅଭିମନ୍ୟୁ ଯଦି ଫେରିଆସିବ ତେବେ ମୁଁ ଯୁଦ୍ଧ କରିବି । ଯୁଦ୍ଧ କେବଳ ନୁହେଁ, ଆପଣ ଯାହା ଆଦେଶ ଦେବେ ତାହା ପାଳନ କରିବି ।"

ଭଗବାନ୍ କହିଲେ—"ଠିକ୍ ଅଛି, ଚାଲ ମୁଁ ତୁମକୁ ଅଭିମନ୍ୟୁ ସହିତ ସାକ୍ଷାତ କରାଇଦେବି । ଏବେ ତାକୁ ତୁମେ ଆଣିବ କି ନ ଆଣିବ ତାହା ତୁମ ଉପରେ ନିର୍ଭର କରେ ।"

ଅର୍ଜୁନ ଚମକି ପଡ଼ି କହିଲେ—"ହଁ ପ୍ରଭୋ ! ଥରେ ମାତ୍ର ମୁଁ ତାକୁ ଦେଖିବା ପାଇଁ ଇଚ୍ଛୁକ । ତାକୁ ଆଣିବା, ବୁଝାଇବା ଯେସବୁ ଦାୟିତ୍ୱ ମୋର । ଆଉ କିଛି ଆପଣଙ୍କୁ କରିବାକୁ ପଡ଼ିବ ନାହିଁ । ଆପଣ ତାକୁ ପଦଟିଏ ପଛେ କିଛି ନ କୁହନ୍ତୁ, ମୋ' ସହିତ ସାକ୍ଷାତ୍ କରାଇ ଦିଅନ୍ତୁ ।"

ଏହା ଶୁଣି ଭଗବାନ୍ ଅର୍ଜୁନଙ୍କୁ ଏକ ଦିବ୍ୟ ରଥରେ ବସାଇ ବାହାରିଲେ । ରଥଟି ପୃଥିବୀରେ ନୁହେଁ, ଶୂନ୍ୟ ମାର୍ଗରେ ବାୟୁବେଗରେ ଉଡ଼ି ଚାଲିଲା । ଅଳ୍ପ ସମୟ ମଧ୍ୟରେ ରଥଟି ସାତ ସମୁଦ୍ର, ସାତଦ୍ୱୀପ ପାର ହୋଇ ଲୋକାଲୋକ ପର୍ବତର ଅପର ପାଖରେ ପହଞ୍ଚିଗଲା । ସେଠାରେ ପୃଥିବୀ ନଥିଲା କି ଆଲୋକ ନଥିଲା । ଏକ ଅନ୍ଧକାରାବୃତ ଭୂଭାଗରେ ଚକ୍ର ସୁଦର୍ଶନ ଥିଲା । ତାହାର ଆଲୋକରେ ସମଗ୍ର ଭୂଭାଗ ଆଲୋକିତ ହେଉଥିଲା । ଅର୍ଜୁନ ଦେଖିଲେ, ଏକ ବଡ଼ ଚକ୍ର ଖୁବ୍ ଦ୍ରୁତ ବେଗରେ ଘୂରୁଛି । ସେହି ଚକ୍ରର ଆଖପାଖରେ ଗୁଡ଼ିଏ ଶ୍ରେଷ୍ଠ ପିଲା ଖେଳୁଛନ୍ତି । ଭଗବାନ୍ ଶ୍ରୀକୃଷ୍ଣ କହିଲେ—"ଅର୍ଜୁନ ! ଏହି ପିଲାମାନଙ୍କ ମଧ୍ୟରୁ ତୁମର ପୁତ୍ର ଅଭିମନ୍ୟୁକୁ ତୁମେ ଚିହ୍ନ ।" ଏହା କହି ଭଗବାନ୍ ସେ ଘୂର୍ଣ୍ଣାୟମାନ ଚକ୍ର ପାଖରେ ବସିପଡ଼ିଲେ ।

ଅର୍ଜୁନ ଦେଖିଲେ, ଚକ୍ରର ଚାରିପାଖରେ ଘୂରିବୁଲୁଥିବା ପିଲାମାନଙ୍କ ମଧ୍ୟରୁ ଜଣେ ଜଣକୁ ବଳି ସୁନ୍ଦର ଦେଖାଯାଉଛନ୍ତି । ସମସ୍ତେ ଚଞ୍ଚଳ, ହସ ହସ ମୁଖ ଏବଂ ନାନାପ୍ରକାର ବସ୍ତ୍ର ଓ ଭୂଷଣରେ ସୁସଜ୍ଜିତ ହୋଇଛନ୍ତି । କେହି କାହାର ଆଡ଼କୁ ଚାହୁଁ ନାହାନ୍ତି । ନିଜ ନିଜର ରେଖାରେ ଦୌଡ଼ୁଛନ୍ତି, କେହି ଥକି ପଡ଼ୁ ନାହାନ୍ତି କି ଧଇଁସଇଁ ହେଉ ନାହାନ୍ତି । ଅର୍ଜୁନ ଦୀର୍ଘ ସମୟ ଧରି ନିର୍ନିମେଷ ନୟନରେ ଚାହିଁ ରହିଥାନ୍ତି । ଏହି ସମୟରେ ଅଭିମନ୍ୟୁ ସୁସଜ୍ଜିତ ହୋଇ ହସି ହସି ଆସିଗଲା । ସେ ଅର୍ଜୁନଙ୍କୁ ଦେଖି ମଧ୍ୟ ପଦଟିଏ କିଛି ନକହି ପୂର୍ବପରି ଦୌଡ଼ିବାରେ ଲାଗିଗଲା । ଅର୍ଜୁନ ତା' ପଛରେ ଦୌଡ଼ିଲେ; କିନ୍ତୁ ଅଭିମନ୍ୟୁକୁ ପାଇଲେ ନାହିଁ ।

ଭଗବାନ୍ କହିଲେ—"ଅର୍ଜୁନ ! ଏବେ ଦେଖିଲ ତ ପୁତ୍ରର ପ୍ରେମ ?"

ଅର୍ଜୁନ ନିଜ କଥା ଉପରେ ଜୋର୍ ଦେଇ କହିଲେ—"ଭଗବନ୍ ! ସେ ମୋତେ ଭଲଭାବରେ ଦେଖିନାହିଁ । ଦେଖିଥିଲେ ନିଶ୍ଚୟ ଠିଆହୋଇଥାନ୍ତା ।"

ଭଗବାନ୍ କହିଲେ—"ହେଉ, ସେ ପୁଣି ବୁଲି ବୁଲି ତ ଫେରିଆସିବ । ସେ ପର୍ଯ୍ୟନ୍ତ ଅପେକ୍ଷା କର ।"

କିଛି ସମୟ ପରେ ଅଭିମନ୍ୟୁ ପୁଣି ଆସିଲା । ଅର୍ଜୁନ ଅପେକ୍ଷା କରିଥିଲେ, ଦୌଡ଼ିଯାଇ ତାର ହାତ ଧରିପକାଇ କହିଲେ—"ବାବୁ !"

କିନ୍ତୁ ଅଭିମନ୍ୟୁ ପ୍ରଣାମ କରିବାତ ଦୂରରେ ଥାଉ, ଅର୍ଜୁନଙ୍କ ଆଡ଼କୁ ଚାହିଁଲା ବି ନାହିଁ । ଜୋର୍ କରି ନିଜ ହାତ ଛଡ଼େଇ ନେଇ ଦୌଡ଼ି ପଳାଇଗଲା । ଭଗବାନ୍ ପଚାରିଲେ

—"ଆଉ କିଛି ସନ୍ଦେହ ରହିଲା କି ?" ଅର୍ଜୁନଙ୍କ ମୁହଁ ଫିକା ପଡ଼ିଗଲା । ଶ୍ରୀକୃଷ୍ଣଙ୍କ ଆଗରେ ଲଜ୍ଜିତ ହୋଇପଡ଼ିଲେ । ସେ ଅନୁରୋଧ କରି କହିଲେ—"ଆଉ ଥରେ ମାତ୍ର ମୋତେ ଅଭିମନ୍ୟୁକୁ ଦେଖିବାର ସୁଯୋଗ ଦିଅନ୍ତୁ ।"

ଭଗବାନ୍ କହିଲେ—"ଅରେ ନୁହେଁ, ଦଶଥର ଦେଖ । କିନ୍ତୁ ତାକୁ ଏହିପରି ଘୂରିବୁଲିବାର ଦେଖିବ । କିଛି ସମୟ ପରେ ଅଭିମନ୍ୟୁକୁ ପୁଣି ଦେଖି ଅର୍ଜୁନ ତାକୁ ଜାବୁଡ଼ି ଧରି କାନ୍ଦି କାନ୍ଦି କହିଲେ—"ବାବୁ ! ତୁ ଏତେ ନିଷ୍ଠୁର ହୋଇଗଲୁ କାହିଁକି ? ତୁ ମୋତେ କେତେ ଆଦର କରୁଥିଲୁ । ଏବେ ତୁ ମୋ ଆଡ଼କୁ ଚାହୁଁନାହୁଁ କାହିଁକି ? ତୋ' ବିନା ମୁଁ ବଞ୍ଚିବି କିପରି ? ତୁ, ମୋର ନନ୍ଦନ, ଅନ୍ଧର ଲଉଡ଼ି । ତୁ ଏ ଖେଳ ଛାଡ଼ି ମୋ' ସହିତ ଚାଲ । ତୋ' ମା' କାନ୍ଦୁଛନ୍ତି, ସେ ଏପର୍ଯ୍ୟନ୍ତ କିଛି ଖାଇନାହାନ୍ତି । ତୋ'ର କାଳିଆ ମାମୁଁଙ୍କୁ ଛାଡ଼ି ଅନ୍ୟ ସମସ୍ତେ ବିକଳ ହେଉଛନ୍ତି ।"

ଅର୍ଜୁନଙ୍କ ବିକଳ ବାଣୀ ଶୁଣି ଅଭିମନ୍ୟୁ ଧମକପୂର୍ଣ୍ଣ ସ୍ୱରରେ କହିଲେ—"ଯା, ଯା ! ମୋର ବାଧା ହେବାକୁ ଆସିଛୁ । ତୁ ଜାଣୁ, କେତେଥର ତୁ ମୋର ପୁଅ ହୋଇସାରିଛୁ ? କେତେଥର ମୁଁ ତୋ'ର ବାପା ହୋଇଛି ? ଏହା ଗୁଣପ୍ରବାହ ମାତ୍ର । ଏଥିରେ କେହି କାହାରି ବାପ ନୁହେଁ କି କେହି କାହାରି ପୁଅ ନୁହେଁ । ଯେପର୍ଯ୍ୟନ୍ତ ଦେହ ଅଛି ସେପର୍ଯ୍ୟନ୍ତ ସମ୍ବନ୍ଧ ଅଛି । ଛାଞ୍ଚ ଥିବାଯାଏ ସେଥିରେ ତରଳ ସୀସା ଢାଳିଲେ ଟଙ୍କା ବାହାରେ । କିନ୍ତୁ ଛାଞ୍ଚରେ ନ ପକାଇ ତାକୁ ଝୁରି ଝୁରି କରିଦେଲେ ତାହା ଆଉ ଟଙ୍କା ହେବ ନାହିଁ । ଆକାର ପ୍ରକାର ଅନୁସାରେ ବସ୍ତୁର ନାମକରଣ କରାଯାଏ । ତେଣୁ ସଂସାରଚକ୍ରରେ ଥିବା ସମ୍ପର୍କ କ୍ଷଣିକ ଓ ଅସ୍ଥିର ରହିତ । ମୋ' ଖେଳରେ ବାଧା ଦେଉଛୁ କାହିଁକି ? ଯା, ବାହାରି ଯା ।"

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ଏହା କହି ଅଭିମନ୍ୟୁ ଛଟିପିଟି ହୋଇ ପଳାଇଗଲା । ଅର୍ଜୁନଙ୍କର ମୋହ ଭାଙ୍ଗିଗଲା । ସେ ଫେରିଆସି ପୁଣି ଯୁଦ୍ଧ କଲେ । ଦେବର୍ଷି ନାରଦ ଯୋଗବଳରେ ମୃତପୁତ୍ରର ଜୀବାତ୍ମାକୁ ଡକାଇ ମହାରାଜ ଚିତ୍ରକେତୁଙ୍କୁ ଦେଖାଇଦେଲେ । ଜୀବନ ପାଇଲା ପରି ମୃତ ପୁତ୍ର ଉଠିବସିଲା । ସମସ୍ତଙ୍କୁ ଶୁଣାଇଲା ପରି ନାରଦ ତାକୁ କହିଲେ—"ହେ ଜୀବାତ୍ମନ୍ ! ଦେଖ, ତୁମର ପିତାମାତା ଏଠାରେ ଉପସ୍ଥିତ । ସେମାନଙ୍କ ସହିତ ତୁମର ମାଉସୀ, ବନ୍ଧୁ, ସ୍ୱଜନ ସମସ୍ତେ ତୁମ ବିୟୋଗରେ ଶୋକାକୁଳ ହୋଇପଡ଼ିଛନ୍ତି । ସମସ୍ତେ କାନ୍ଦୁଛନ୍ତି । ତୁମେ ସେମାନଙ୍କ ପ୍ରତି ସଦୟ ହୁଅ । ତୁମେ ଏହି ଦେହରେ ପ୍ରବେଶ କରି ସେମାନଙ୍କୁ ସୁଖୀକର । ଏହି ବୃଦ୍ଧରାଜା ଚିତ୍ରକେତୁ ତୁମକୁ ରାଜ୍ୟଭାର ଦେଇଦେବେ । ତୁମେ ଶାସକ ହେବ, ତୁମ ମସ୍ତକ ଉପରେ ଛତ୍ର ରହିବ । ସମସ୍ତେ ତୁମ ଆଦେଶ ପାଳନ କରିବେ, ତୁମର ଛତ୍ରଛାୟା ତଳେ ରହି ମନ୍ତ୍ରୀ, ପୁରୋହିତ, ଅମାତ୍ୟଗଣ ଆନନ୍ଦିତ ହେବେ । ପୈତୃକ ଭୋଗ ବିଳାସକୁ ଭୋଗ କରି ସମସ୍ତଙ୍କୁ ଆନନ୍ଦ ଦିଅ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ନାରଦଙ୍କ କଥା ଶୁଣି ଜୀବାତ୍ମା ହସି ଉଠିଲା ଓ ନାରଦଙ୍କ ଉଦ୍ଦେଶ୍ୟରେ ସମସ୍ତଙ୍କୁ ଶୁଣାଇଲା ପରି କହିବାକୁ ଆରମ୍ଭ କଲା ।"

### ଛପ୍ପୟ

ନାରଦ ବୋଲେ—ଜୀବ ! ପିତା ମାତ ୟେ ତେତରେ ।
ଶୋକାକୁଳ ଅତି ଭୟେ ପକଇ ପଗ ସେଓଁ ମେରେ ॥
ଜୀବିତ ହ୍ୱୈ କେ ସଜ୍ୟ-ବିଷୟ ସବ ଭେଗୋ ସୁଖ ତେଁ ।
ଅତି ଇ ଦୋନୋଁ ବିକଳ ଛୁଡ଼ାଓ ଇନ କୁଁ ଦୁଃଖ ତେଁ ॥
ସୁନି ହଂସି ବୋଲ୍ୟୋ ଜୀବ ଓ୍ୱହ, କାକେ କୋ ପିତୁ-ମାତ ହୈଁ ।
ସବ ମୁହଁ ଦେଖେ କେ ସ୍ୱଜନ, ସୁହୃଦ ବନ୍ଧୁ ସୁତ ତାତ ହୈଁ ॥



# ଜୀବାତ୍ମାର ଶିକ୍ଷାଦାନ

ଯଥା ବସ୍ତୂନି ପଣ୍ୟାନି ହେମାଦୀନି ତତସ୍ତତଃ ।
ପର୍ଯ୍ୟଟନ୍ତି ନରେଷ୍ୱେବଂ ଜୀବୋ ଯୋନିଷୁ କର୍ତ୍ତୃଷୁ ॥

(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୬ଅ-୬ ଶ୍ଳୋ)

**ଛପ୍ପୟ**

ଜୀବ ନିତ୍ୟ ଅତି ସୂକ୍ଷ୍ମ ପ୍ରକାଶକ ସ୍ୱୟଂ ନିରଞ୍ଜନ ।
ମାୟା କେ ଗୁଣ ରେପି କରେ ଯୋଗିନୀ ମନରଞ୍ଜନ ॥
ମାୟିକ ଗୁଣ ସମ୍ବନ୍ଧ ଭୟୋ ଦୀଖେ ମଦମାତୋ ।
ଜବ ତକ ରହେ ଶରୀର ମାହିଁ ତବ ତକ ଛି ନାତୋ ॥
ଅଗନିତ ଯୋନିନ ମହଁ ଭ୍ରମେ, କାକୁଁ ନିଜ ପର କହି ଗନେ ।
କବହୁଁ ନର, ପଶୁ ଦେବ ବନି, ପିତା, ପୁତ୍ର ଭ୍ରାତା ବନେ ॥

ଆମେ ଯାହାକୁ ଆଦର, ସ୍ନେହ କରୁଛୁ ଆଉ ତା' ଠାରୁ ସେହି ଆଶା ରଖୁଛୁ, ସେ ଯଦି ଆମକୁ କଷ୍ଟ ଦିଏ, ଆମକୁ ଉପେକ୍ଷା କରେ ତେବେ ଆମର ବୈରାଗ୍ୟ ଜାତ ହୁଏ । ସେଥିପାଇଁ ଯାହା ଅନ୍ତରରେ ଆଧ୍ୟାତ୍ମିକ ସଂସ୍କାର ଅଛି, ତାହାର ବୈରାଗ୍ୟ ଜାତ ହୁଏ ବୋଲି କହନ୍ତି । ଯେ ମାୟାମୋହରେ ଅବଲିପ୍ତ, ବାରମ୍ବାର ଅପମାନିତ, ତିରସ୍କୃତ ହେଲେ ମଧ୍ୟ ତା'ର ବୈରାଗ୍ୟ ଆସେନାହିଁ । ଅପବିତ୍ର ନର୍କସ୍ଥରେ ସେ ବୁଡ଼ିରହେ । ଜୀବ, ମାୟା ମୋହରେ ଏପରି ଜଡ଼ିତ ହୋଇପଡ଼େ ଯେ ନିଜେ ଚେଷ୍ଟା କଲେ ମଧ୍ୟ ସେଥିରୁ ସହଜରେ ମୁକ୍ତ ହୋଇପାରେ ନାହିଁ । ଭଗବାନ୍ ଦୟାକରି ସାଧୁ ରୂପରେ ନିଜେ ଆସି ବାଟ ବତାଇଦେଲେ ଜୀବ ସଂସାରଚକ୍ରରୁ ମୁକ୍ତି ପାଇପାରେ, ଅନ୍ୟଥା କାଳଚକ୍ରରୁ ମୁକ୍ତ ହେବା ଏକାନ୍ତ ଅସମ୍ଭବ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ନାରଦ ଯେତେବେଳେ ଜୀବାତ୍ମାକୁ ଡକାଇ ପୁନର୍ବାର ଜୀବିତ ହୋଇ ମାତାପିତାଙ୍କୁ ସୁଖୀ କରିବାପାଇଁ ପ୍ରସ୍ତାବ ଦେଲେ, ସେତେବେଳେ ଜୀବାତ୍ମା ହସି ହସି କହିଲା—"ଭଗବାନ୍ ! ଆପଣ ଏମାନଙ୍କୁ ମୋର ମାତାପିତା ବୋଲି କେଉଁ କାରଣରୁ କହୁଛନ୍ତି ?"

ନାରଦ ଉତ୍ତର ଦେଲେ—"ତୁମକୁ ଏମାନେ ଜନ୍ମ ଦେଇଛନ୍ତି । ତେଣୁ ଏ ତୁମର ଜନକ ଓ ଜନନୀ ।"

ଜୀବାତ୍ମା କହିଲା—"ଭଗବନ୍ ! ଯଦି ଜନ୍ମଦାତା ଓ ଜନ୍ମଦାତ୍ରୀଙ୍କୁ ପିତା ଓ ମାତା କୁହାଯିବ ତେବେ ମୋର ସହସ୍ର ଜନ୍ମର ସ୍ମୃତି ଆସିଯାଉଛି । ସହସ୍ର ଯୋନିରେ ମୁଁ ଅନେକଥର ଜନ୍ମ ଗ୍ରହଣ କଲିଣି । ତେଣୁ ମୋର ମାତା ଓ ପିତାଙ୍କ ସଂଖ୍ୟା ଅନେକ । କେଉଁ ଜନ୍ମରେ କିଏ ମୋର ମାତା, ପିତା ଥିଲେ ତାହା ମୁଁ କେମିତି କହିବି । ମୁଁ ପୁଣି ଅନେକ ଯୋନିରେ ଜନକରୂପେ ବହୁ ସନ୍ତାନଙ୍କୁ ଜନ୍ମ ଦେଇଛି । ଯେଉଁମାନଙ୍କୁ ଆପଣ ମୋର ପିତା ମାତା ବୋଲି କହୁଛନ୍ତି ସେମାନେ ବହୁବାର ମୋର ପୁତ୍ର, କନ୍ୟାରୂପେ ଜନ୍ମ ଗ୍ରହଣ କରିଛନ୍ତି । ସବୁ ଯୋନିରେ ଯେ ମାତା, ପିତା, ବନ୍ଧୁ, ଭୃତ୍ୟ ଏକ ହେବେ ସେପରି କୌଣସି ନିୟମ ନାହିଁ । ପୁଅ କେତେବେଳେ ପିତା ହେଲାଣି ତ ଭାଇ ହେଲାଣି ଶ୍ୟାଳକ ଏବଂ ସ୍ତ୍ରୀ ମାତା ବା ମାତା ସ୍ତ୍ରୀ ହୋଇଯାଉଛି । ଉଚ୍ଚକୁଳଜାତ ନୀଚକୁଳରେ ଏବଂ ନୀଚ-କୁଳଜାତ ଉଚ୍ଚକୁଳରେ ଜନ୍ମଗ୍ରହଣ କରୁଛି । ମିତ୍ର ଶତ୍ରୁ ବା ଶତ୍ରୁ ମିତ୍ର ପାଲଟି ଯାଉଛି । ସାରକଥା ହେଉଛି, ଜ୍ଞାତି, ଶତ୍ରୁ, ମିତ୍ର, ବନ୍ଧୁ, ବାନ୍ଧବ ସମସ୍ତେ ପରିବର୍ତ୍ତିତ ହେଉଛନ୍ତି ।"

ନାରଦ କହିଲେ—"ପରିବର୍ତ୍ତନ ଘଟିଲେ ମଧ୍ୟ ଏ ଜନ୍ମରେ ତ ସେମାନେ ତୁମର ମାତା ପିତା ହୋଇଛନ୍ତି ।"

ଜୀବାତ୍ମା କହିଲା—"ଭଗବନ୍ ! ଏବେ ଅଛନ୍ତି ବୋଲି ନକହି ଥିଲେ ବୋଲି କହନ୍ତୁ । ଯେପର୍ଯ୍ୟନ୍ତ ଯାହା ସହିତ ସମ୍ପର୍କ ଥାଏ ସେପର୍ଯ୍ୟନ୍ତ ତା' ପ୍ରତି ମମତା ଥାଏ । ଏ ସମ୍ପର୍କର ମୂଳ ହେଉଛି ଶରୀର । ଶରୀରଠାରୁ ସମ୍ପର୍କ କଟିବା ସଙ୍ଗେ ସଙ୍ଗେ ମମତା ମଧ୍ୟ ତୁଟିଯାଏ । ଟଙ୍କା, ପଇସା, ସୁନା. ରୂପା ଆମ ପାଖରେ ଥିବା ପର୍ଯ୍ୟନ୍ତ ଆମେ କହୁ ସେସବୁ ଆମର । ପ୍ରାଣଠାରୁ ବଳି ଆମେ ତାକୁ ଯତ୍ନରେ ସାଇତି ରଖୁ । ଆମେ ତାକୁ ବ୍ୟୟ କରିବା ପାଇଁ କୁଣ୍ଠିତ ହେଉ । କିନ୍ତୁ ସେଗୁଡ଼ିକ ଆମ ପାଖରୁ ଚାଲିଗଲେ ଆମର ମମତା ତୁଟିଯାଏ । ଅନ୍ୟପାଖକୁ ଯାଇ ସେଗୁଡ଼ିକ ହଜିଗଲେ, ନଷ୍ଟ ହୋଇଗଲେ ବା କିଏ ନେଇଗଲେ ଆମର ଆଦୌ ଦୁଃଖ ହୁଏ ନାହିଁ । ଆମର ଘରଟିଏ ଅଛି ଯେପର୍ଯ୍ୟନ୍ତ ତାହା ଆମ ନାମରେ ଅଛି, ସେଥିପ୍ରତି ଆମର ମମତା ରହୁଛି । କାଳେ ଭାଙ୍ଗିଯିବ, ନଷ୍ଟ ହୋଇଯିବ ବୋଲି ଆମେ ଚିନ୍ତା କରୁଛୁ । କିନ୍ତୁ ଏହା ଅନ୍ୟର ଅଧିକାରକୁ ଚାଲିଗଲା ପରେ ତାହା ନଷ୍ଟ ହୋଇଯିବାର ଜାଣିଲେ ମଧ୍ୟ ଆମ ମନରେ ଆଦୌ ଦୁଃଖ ଆସେ ନାହିଁ । ସେହିପରି ଶରୀର ନଷ୍ଟ ହେବା ସଙ୍ଗେ ସଙ୍ଗେ ପୁରୁଣା ସମ୍ପର୍କ ବି ନଷ୍ଟ ହୋଇଯାଏ । ତେଣୁ ଏମାନଙ୍କ ସହିତ ବର୍ତ୍ତମାନ ମୋର କୌଣସି ସମ୍ପର୍କ ନାହିଁ ।"

ବାସ୍ତବରେ ଦେଖିବାକୁ ଗଲେ ଜୀବ ନିତ୍ୟ, ଶୁଦ୍ଧ, ବୁଦ୍ଧ ଜନ୍ମ ଓ ମରଣ ରହିତ । ସେ ସ୍ୱୟଂ ପ୍ରକାଶିତ ହୁଏ । ସେ ସର୍ବସମର୍ଥ, ନିଜେ ମାୟା ରଚନା କରି ଜୀବ ସ୍ୱୟଂ ତା' ମଧ୍ୟରେ ପ୍ରବେଶ କରେ । ବୁଢ଼ିଆଣୀ ଯେପରି ନିଜ ମୁଖରୁ ସୂତା ବାହାର କରି ଜାଲ ବୁଣେ ଓ

ସେହି କାଳରେ ରହେ, ସେହିପରି ଜୀବ ଏହି ଦୃଶ୍ୟମାନ ପ୍ରପଞ୍ଚ ସୃଷ୍ଟି କରେ ଓ ତାହାରି ମଧ୍ୟରେ ରହେ । ଆତ୍ମାରୂପେ ଏହା ନିତ୍ୟାସ୍ଥାନ । ଏହା କେବଳ ବୁଦ୍ଧିର ବିଷୟ । ତେଣୁ ଜୀବାତ୍ମାଠାରେ ଆତ୍ମପର ଭେଦଭାବ ନାହିଁ । ପ୍ରିୟତା, ମିତ୍ରତା, ଅପ୍ରିୟତା, ଶତ୍ରୁତା ଆଦିରୁ ଜୀବାତ୍ମା ମୁକ୍ତ । ଆତ୍ମାର ବନ୍ଧନ ନାହିଁ, ଏହା କାର୍ଯ୍ୟକାରଣର ସାକ୍ଷୀ ମାତ୍ର । ଯେ କର୍ତ୍ତା ସେ କ୍ରିୟାର ଫଳଭୋଗୀ ହୁଏ । କିନ୍ତୁ ଆତ୍ମା ଶୁଦ୍ଧ, ବୁଦ୍ଧ ହୋଇଥିବାରୁ ଗୁଣ, ଦୋଷ ଓ କ୍ରିୟାଫଳ ରହିତ । ଏହା ସର୍ବଦା ଉଦାସୀନ ଭାବରେ ଅବସ୍ଥାନ କରେ ।

ଏମାନଙ୍କ ସହିତ ଯେତିକି ସମ୍ବନ୍ଧ ଥିଲା ତାହା ଶେଷ ହୋଇଛି । ତେଣୁ ଏବେ ସେମାନେ ଯେତେ କାନ୍ଦିଲେ ମଧ୍ୟ ମୁଁ ଫେରିପାରିବି ନାହିଁ । କାଳର ଗତି ଦୁର୍ନିବାର । ବିଧିର ବିଧାନ ଅକାଟ୍ୟ, ଅପରିବର୍ତ୍ତନୀୟ । ସେ ବିଧାନରୁ ଧାରେ କମିବ ନାହିଁ କି ବଢ଼ିବ ନାହିଁ । ଆପଣ ସର୍ବସମର୍ଥ ! ଆପଣ ଯୋଗ ଶକ୍ତି ବଳରେ ମୋତେ ଡାକିଥିଲେ, ଏବେ ମୋତେ ଫେରିଯିବା ପାଇଁ ଆଦେଶ ଦିଅନ୍ତୁ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏହା କହି ଜୀବାତ୍ମା ଚାଲିଗଲା । ରାଜପୁତ୍ରର ଦେହ ପୁନର୍ବାର ମୃତବତ୍ ପଡ଼ିରହିଲା । ରାଜାଙ୍କ ଚେତନା ଫେରିଆସିଲା । ସେ ଭାବିଲେ, ଯାହାପାଇଁ ଏତେ ଦୁଃଖ କରୁଛି, ଯାହାପାଇଁ ଏତେ ଅଧୀର ହେଉଛି, ସେ ମୋ' ପ୍ରତି ଉଦାସୀନ । ମୋର ଏ ମୋହକୁ ଧିକ୍ । ଏହି ମୁହୂର୍ତ୍ତରୁ ଶୋକ, ମୋହ ଓ ଦୁଃଖର ମୂଳ କାରଣ ମମତାକୁ ତ୍ୟାଗ କରିବି । ମନକୁ ସମଅବସ୍ଥାରେ ରଖି ଏହି ମହାତ୍ମାଙ୍କ ପ୍ରଦର୍ଶିତ ମାର୍ଗ ଅନୁସରଣ କରିବି । ଏହି ସିଦ୍ଧାନ୍ତରେ ପହଞ୍ଚି ରାଜା ବୋହିଆସୁଥିବା ଆଖିର ଲୁହକୁ ପୋଛି ପକାଇଲେ । ଦେହରୁ ଧୂଳିସବୁ ଝାଡ଼ିଦେଲେ, ବାଳକୁ ବାନ୍ଧିଦେଲେ । ବାଳକ ପ୍ରତି ଥିବା ସମସ୍ତ ସ୍ନେହ ବନ୍ଧନକୁ ଛିଡ଼ାଇ ଦେଇ ଶୋକରହିତ ହୋଇ ନାରଦଙ୍କ ପାଦତଳେ ଲୋଟିପଡ଼ିଲେ ।"

ରାଜା ପଚାରିଲେ—"ହେ ଋଷିଗଣ ! ମୋର ଏବେ କର୍ତ୍ତବ୍ୟ କଣ ?"

ଅଙ୍ଗିରା ମୁନି କହିଲେ—"ରାଜନ୍ ! ପ୍ରଥମେ ମୃତ ବାଳକର ଅନ୍ତ୍ୟେଷ୍ଟି କାର୍ଯ୍ୟ ଶେଷକରିବା ଉଚିତ ।" ମୁନିଙ୍କ ଆଦେଶ ଅନୁସାରେ ରାଜା ନିଜର ଜ୍ଞାତିମାନଙ୍କ ସାହାଯ୍ୟରେ ଯଥାବିଧି ବାଳକର ଅନ୍ତ୍ୟେଷ୍ଟି ସଂସ୍କାର କଲେ । ପୁରୋହିତ ଓ ବ୍ରାହ୍ମଣମାନଙ୍କ ପରାମର୍ଶ ଅନୁସାରେ ଯଥୋଚିତ ଶ୍ରାଦ୍ଧବିଧାନ ପାଳନ କଲେ । ବାଳକର ଅନ୍ତ୍ୟେଷ୍ଟି ସଂସ୍କାର ପରେ ବାଳକକୁ ବିଷ ଦେଇଥିବା ରାଣୀମାନଙ୍କ ମନରେ ଘୋର ପଶ୍ଚାତ୍ତାପ ଜାତ ହେଲା । ଜୀବାତ୍ମା ବାଳକର ମୃତ ଶରୀରରେ ପ୍ରବେଶ କରି ଯେଉଁ ଗୂଢ଼ଜ୍ଞାନ ପ୍ରକାଶ କଲା ତାହାଦ୍ୱାରା ସମସ୍ତେ ପ୍ରଭାବିତ ହୋଇପଡ଼ିଲେ । କିନ୍ତୁ ରାଣୀମାନଙ୍କର ଆତ୍ମଗ୍ଳାନି ବଢ଼ିଯାଇଥିଲା । କାରଣ ସ୍ୱଭାବତଃ ସେମାନେ ସେପରି କଠୋର ହୃଦୟା ନଥିଲେ । ସଦ୍‌ବଂଶଜା ହୋଇଥିଲେ ମଧ୍ୟ ପରିସ୍ଥିତିରେ ପଡ଼ି ସେମାନଙ୍କ ବୁଦ୍ଧି ବାମ ହୋଇଯାଇଥିଲା । ଈର୍ଷା ହିଁ ସେମାନଙ୍କ ପ୍ରକୃତିକୁ କ୍ରୂର କରିଦେଇଥିଲା । ଶତ୍ରୁତା ଶେଷ ହେବାପରେ ସେମାନଙ୍କ ହୃଦୟ ଅନୁତାପରେ ପୁରିଗଲା ।

ସେହି ରାଣୀମାନେ ମୁନିଙ୍କ ପାଖକୁ ଯାଇ ପାଦଧରି କାନ୍ଦିକାନ୍ଦି କହିଲେ—"ପ୍ରଭୋ ! ଆମ ପରି ହତଭାଗିନୀମାନଙ୍କ ପାପର କୌଣସି ପ୍ରକାର ପ୍ରାୟଶ୍ଚିତ୍ତ ଅଛି କି ?"

ଶ୍ରୀ ଶୁକଦେବ କହିଲେ —"ରାଜନ୍ ! ମୁନି ତ ସର୍ବଜ୍ଞ ଥିଲେ । ସବୁକଥା ଜାଣିଥିଲେ ମଧ୍ୟ ସେ ପାପକଥା ପ୍ରକାଶ କରିବା ପାଇଁ ରାଣୀମାନଙ୍କୁ ଆଦେଶ ଦେଲେ । କାରଣ, ପ୍ରକାଶ କରିଦେଲେ ପାପର ମାତ୍ରା କମିଯାଏ । ପାପର କିଛି ଅଂଶ ନିନ୍ଦୁକମାନଙ୍କ ପାଖକୁ ଚାଲିଯାଏ ।"

ମୁନିଙ୍କ ଆଦେଶ ପାଇ ରାଣୀମାନେ ବ୍ୟାକୁଳ ହୋଇପଡ଼ି କହିଲେ —"ପ୍ରଭୋ ! ଆପଣ ସବୁକିଛି ଜାଣି ମଧ୍ୟ ଆମକୁ ଯେତେବେଳେ ପଚାରୁଛନ୍ତି, ଆମେ କହୁଛୁ । ଆମେ ଈର୍ଷାରେ ବଶୀଭୂତ ହୋଇ ଏହି ବାଳକକୁ ବିଷ ଦେଇ ମାରିଛୁ । ଏହି କ୍ରୂର କାର୍ଯ୍ୟ ପୂର୍ବରୁ ଆମେ ସମସ୍ତେ ପରାମର୍ଶ କରିଛୁ । ତେଣୁ ଆମେ ସମାନ ଭାବେ ଏ ପାପର ସମଭାଗିନୀ ହୋଇଛୁ । ଏହି ପାପର ଯଦି କିଛି ପ୍ରାୟଶ୍ଚିତ୍ତ ଅଛି, ତାହା ଦୟାକରି ଆମକୁ କୁହନ୍ତୁ । ଆପଣ ଯାହା ଆଦେଶ ଦେବେ ଆମେ ତାହା ପାଳନ କରିବାକୁ ପ୍ରସ୍ତୁତ ଅଛୁ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ରାଣୀମାନଙ୍କ ସ୍ୱୀକାରୋକ୍ତି ଶୁଣି ମୁନିବର ଅଙ୍ଗିରା ସେମାନଙ୍କ ପାପର ପ୍ରାୟଶ୍ଚିତ୍ତ ବିଧାନ ଚିନ୍ତା କଲେ ।"

## ଛପ୍‌ପୟ

ନିଜ ପର ତେଁ ହୈ ରହିତ ଆତମା ନିତ୍ୟ ନିରନ୍ତର ।
ଅକ୍ରିୟ ତ୍ରିଗୁଣ ବିହୀନ ସର୍ବଗତ ଅଜର ଶୁଦ୍ଧ ତର ॥
ସାକ୍ଷୀ ସର୍ବ ସ୍ୱତନ୍ତ୍ର ଦୋଷ ଗୁଣ ହୂଁ ତେ ନ୍ୟାରେ ।
କର୍ତ୍ତା ଭୋକ୍ତା ନହୀଁ ଦୀପବତ କରହି ଉଜାରେ ॥

ମୃତ କୁମାର କୋ ଆତମା, ଯ୍ୟୌଁ କହି ଅନ୍ତର୍ହିତ ଭୟୌ ।
ସୁନି ଜ୍ଞାନମୟ ବାତ ଜବ, ନୃପକୋ ଭ୍ରମ ଭଗି ଗୟୌ ॥



## ବିଷଦାତ୍ରୀ ରାଣୀମାନଙ୍କ ପ୍ରାୟଶ୍ଚିତ୍ତ

**ବାଳଘ୍ନ୍ୟୋ ବ୍ରୀଡ଼ିତାସ୍ତତ୍ର ବାଳହତ୍ୟାହତପ୍ରଭାଃ ।**
**ବାଳହତ୍ୟାବ୍ରତଂ ଚେରୁର୍ବ୍ରାହ୍ମଣୈର୍ଯନ୍ନିରୂପିତମ୍ ॥**
**ଯମୁନାୟାଂ ମହାରାଜ ସ୍ମରନ୍ତ୍ୟୋ ଦ୍ୱିଜଭାଷିତମ୍ ।**

(ଶ୍ରୀମଦ୍ଭାଗବତ— ୬ସ୍କନ୍ଧ-୧୬ଅ-୧୪ଶ୍ଳୋ)

**ଛପ୍‌ପୟ**

**ଜିନ ରାନନ ବିଷ ଦୟୋ ତନନ ହୁଁ ଅତି ଦୁଃଖ କୀହ୍ନେଁ ।**
**ପୂର୍ବଜନ୍ମ କୋ ବୈର ବିମାତା ବନକେ ଲୀହ୍ନେଁ ॥**
**ମୁନକେ ପକରେ ପାଁଇ ପାପ ନିଜ ସତ୍ୟ ସୁନାୟୋ ।**
**ସବ ସୁନ ପ୍ରାୟଶ୍ଚିତ ସକନ ତେଁ ସବଧି କରାୟୋ ॥**
**ହତପ୍ରଭା ଲଜ୍ଜିତ ନାରୀ ସବ, ଯମୁନାଜୀ ମେଂ ନ୍ହାଇକେ ।**
**ପଛିତାଇ କଲ୍ମଷ ରହିତ, ଭଈ କୃଷ୍ଣ ଗୁନ ଗାଇକେ ॥**

ସଙ୍କଳ୍ପ ଜନିତ, ଇଚ୍ଛା ବା ଅନିଚ୍ଛାଜନିତ ହେଲେ ମଧ୍ୟ ପାପର ଫଳ ଭୋଗକରିବାକୁ ପଡ଼େ । ତେଣୁ ଭୁଲ୍‌ରେ ବି କୌଣସି ପ୍ରକାର ପାପକାର୍ଯ୍ୟ କରିବା ଉଚିତ ନୁହେଁ । ଅସାବଧାନତାବଶତଃ ହେଲେ ମଧ୍ୟ ପାପକାର୍ଯ୍ୟ ନ କରିବା ପାଇଁ ସଦା ସାବଧାନ ରହିବା ଆବଶ୍ୟକ । ପୁଣି ପାପୀକୁ କେବେ ନିନ୍ଦା କରିବା ଉଚିତ ନୁହେଁ । ଆମେ ଯେପରି ବିଚାର କରିବା, ଭାବିବା ସେହିପରି ହୋଇଯିବା । ସମସ୍ତେ ସ୍ୱକର୍ମ ସୂତ୍ରରେ ବନ୍ଧାଥାଇ ନିରୁପାୟ ହୋଇ କାର୍ଯ୍ୟ କରନ୍ତି, ଏହା ମନେ ରଖିବା ଆବଶ୍ୟକ । ଭଲକାମ ବା ମନ୍ଦକାମ, ପୂର୍ବ ଜନ୍ମର ସଂସ୍କାର ଦ୍ୱାରା ସୃଷ୍ଟ ପ୍ରାରବ୍ଧ ଦ୍ୱାରା ଘଟିଥାଏ । ପ୍ରାରବ୍ଧର ପ୍ରେରଣାରେ ପ୍ରାଣୀ ମନ୍ଦକାର୍ଯ୍ୟ ବା ଭଲକାର୍ଯ୍ୟ କରିଥାଏ । ତେଣୁ ପାପୀକୁ ନିନ୍ଦାକରି ତା'ର ପାପରେ ଅଂଶୀଦାର ହେବା ଉଚିତ ନୁହେଁ । ପାପୀ ସହିତ କୌଣସି ସମ୍ପର୍କ ରଖିବା ଅନାବଶ୍ୟକ । ପାପ ଓ ପୁଣ୍ୟକୁ ପ୍ରଭୁଙ୍କ ଲୀଳା ରୂପେ ଗ୍ରହଣ କରିବା ଉଚିତ ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ରାଜକୁମାରଙ୍କୁ ବିଷ ଦେଇଥିବା ରାଣୀମାନେ ନିଜ କର୍ମ ପାଇଁ ଲଜ୍ଜିତ ହେବାରୁ ଅଙ୍ଗିରା ମୁନି ସେମାନଙ୍କୁ ପ୍ରାୟଶ୍ଚିତ୍ତ କରିବା ପାଇଁ କହିଲେ । ବ୍ରାହ୍ମଣମାନଙ୍କ ପରାମର୍ଶ ଅନୁସାରେ ରାଣୀମାନେ ଅନ୍ତଃପୁର ତ୍ୟାଗକରି କଳକଳ ନିନାଦିନୀ ଯମଭଗିନୀ କୃଷ୍ଣପ୍ରିୟା କାଳିନ୍ଦୀ ନଦୀ କୂଳକୁ ଯାଇ ବ୍ରତ ଓ ଉପବାସ କରିବାକୁ ଲାଗିଲେ । ବ୍ରାହ୍ମଣମାନେ ଯେପରି କହିଥିଲେ ଠିକ୍ ସେହିପରି ପ୍ରାୟଶ୍ଚିତ୍ତ କର୍ମ ଧୀରସ୍ଥିର ଚିତ୍ତରେ କରିବାକୁ ଲାଗିଲେ ।"

ଶ୍ରୀ ସୂତ କହିଲେ—"ହେ ମୁନିଗଣ ! ପାପ କାର୍ଯ୍ୟ କରିଥିବା କୌଣସି ଲୋକ ଯଦି ଆନ୍ତରିକତାର ସହିତ ଅନୁତାପ କରେ ଓ ଶାସ୍ତ୍ରୀୟ ରୀତିରେ ପ୍ରାୟଶ୍ଚିତ୍ତ କରେ ତେବେ ତାହାର ପାପ କିଛିକାଳ ମଧ୍ୟରେ ଦୂର ହୋଇଯାଏ ।"

ଏହା ଶୁଣି ଶୌନକ ପଚାରିଲେ—"ମହାଭାଗ ! ବଡ଼ ଆଶ୍ଚର୍ଯ୍ୟର କଥା ହେଉଛି, ମହାରାଣୀ ରାଜକୁମାରଙ୍କୁ ଏତେ ସାବଧାନତାର ସହିତ ଲାଳନପାଳନ କରୁଥିବାବେଳେ ତାଙ୍କରି ଆଖି ଆଗରେ କୁମାର ପ୍ରତି ବିଷ ପ୍ରୟୋଗ କିପରି ସମ୍ଭବ ହେଲା ? ପୁଣି ଜଣେ ଦୁଇଜଣ ନୁହେଁ ଲକ୍ଷାଧିକ ରାଣୀ ଥିଲେ । ସେମାନେ ସମସ୍ତେ ସଦ୍‌ବଂଶଜାତା ରାଜକୁମାରୀ ଥିଲେ । ସେମାନଙ୍କ ମଧ୍ୟରୁ ଜଣେ ହେଲେ ବି ଏପରି ନିନ୍ଦିତ କାର୍ଯ୍ୟର ବିରୋଧ କଲେନାହିଁ କାହିଁକି ? କଥାଟା ଚାରିଆଡ଼େ ପ୍ରଚାରିତ ହୋଇଥିଲେ ମଧ୍ୟ ରାଜମହଲରେ କେହି କିଛି ଜାଣିପାରିଲେ ନାହିଁ କିପରି ? ରାଣୀମାନଙ୍କ ମଧ୍ୟରେ ଘଟିଥିବା ବିଚାର ବିମର୍ଶକୁ ମହାରାଣୀ କିପରି ଜାଣି ପାରିଲେ ନାହିଁ ?'

ଶୌନକଙ୍କ ପ୍ରଶ୍ନ ଶୁଣି ହସି ହସି ଶ୍ରୀ ସୂତ କହିଲେ—"ଭଗବନ୍ ! ଆପଣଙ୍କର ଏ ସମସ୍ତ ପ୍ରଶ୍ନର ଉତ୍ତର ମୁଁ ଗୋଟିଏ ବାକ୍ୟରେ କହୁଛି । ତାହା ହେଉଛି—ଭବିତବ୍ୟତା ଯାହା ହେବାର ଥିବ ତାହାହିଁ ହେବ । ଯେତେ ଯତ୍ନ କଲେ ମଧ୍ୟ କେହି କେବେ ଭବିତବ୍ୟତାକୁ ଅନ୍ୟଥା କରିପାରିବ ନାହିଁ । ଯାହା ଘଟିବାର ଥିବ ସେ ଅନୁସାରେ ଯୋଗାଯୋଗ ସୃଷ୍ଟି ହୋଇଯିବ, ଉପାଦାନ ମଧ୍ୟ ଜୁଟିଯିବ । ଭଗବାନ୍ ଏହିପରି ଲୀଳା ରଚନା କରନ୍ତି—ଏକ ରାକ୍ଷସ ଥିଲା. ସେ କଠୋର ତପସ୍ୟା କଲା । ବ୍ରହ୍ମା ପ୍ରସନ୍ନ ହୋଇ ତାକୁ ବର ଦେଲେ, ବ୍ରହ୍ମଲୋକ ବ୍ୟତୀତ ଅନ୍ୟତ୍ର ତାର ମୃତ୍ୟୁ ହେବନାହିଁ । ରାକ୍ଷସ ବର ପାଇବା ପରେ ନାନାପ୍ରକାର ଅତ୍ୟାଚାର କରିବାରେ ଲାଗିଗଲା । ତାକୁ ମାରିବା ପାଇଁ ଯେତେ ଚେଷ୍ଟା କଲେ ବି ତାହା ସଫଳ ହେଲା ନାହିଁ । ମଲେ ତ ବ୍ରହ୍ମଲୋକକୁ ଯିବ । ପୃଥିବୀରେ ତା'ର ମୃତ୍ୟୁଯୋଗ ନାହିଁ, କିନ୍ତୁ ସେ ମରିବା ଆବଶ୍ୟକ । ତେଣୁ ସ୍ୱୟଂ ଭଗବାନ୍ ଏକ ସୁନ୍ଦର ହଂସ ରୂପ ଧାରଣ କରି ତା' ଆଗରେ ଉଡ଼ିବୁଲିଲେ । ସେହି ବିଚିତ୍ର ହଂସକୁ ଦେଖି ଅସୁର ତାକୁ ଧରି ପକାଇଲା ଆଉ ତା' ସହିତ ଖେଳୁ ଖେଳୁ ତା' ପିଠି ଉପରେ ବସିଗଲା । ହଂସ ଉଡ଼ିଗଲା ଆଉ ତାକୁ ନେଇଯାଇ ବ୍ରହ୍ମଲୋକରେ ପହଞ୍ଚିଲା । ବ୍ରହ୍ମଲୋକରେ ପହଞ୍ଚିବାମାତ୍ରେ ରାକ୍ଷସ ମୃତ୍ୟୁବରଣ କଲା ।"

ଆଉ ଏକ ଅସୁର ଥିଲା । ସେ ବର ମାଗିଲା ଜଳକୁ ଛାଡ଼ି ତା'ର ଅନ୍ୟାନ୍ୟ ମୃତ୍ୟୁ ହେବ ନାହିଁ । ବର ପାଇବା ପରେ ସେ ସବୁବେଳେ ଜଳଠାରୁ ଦୂରରେ ରହିଲା । ଭୁଲ୍‌ରେ ମଧ୍ୟ ଜଳରେ ପ୍ରବେଶ କଲା ନାହିଁ । ଯେତେବେଳେ ତା'ର ମୃତ୍ୟୁ ସମୟ ଉପସ୍ଥିତ ହେଲା ସେତେବେଳେ ସେ ଏକ ପର୍ବତର ଉଚ୍ଚ ଶିଖରକୁ ଚଢ଼ିଗଲା । କିନ୍ତୁ ସେଠାରେ ଯାଇ ଦେଖିଲା ସମୁଦ୍ର ଉତ୍ତାଳ ତରଙ୍ଗ ତୋଳି ମାଡ଼ି ଆସୁଛି । ସେ ଭାବିଲା, ସମୁଦ୍ର ନିଶ୍ଚୟ ପର୍ବତ ଶିଖରକୁ ବୁଡ଼ାଇଦେବ । ଅସୁର ଚାରିଆଡ଼କୁ ଚାହିଁ ଭୟଭୀତ ହୋଇଗଲା । ପ୍ରାଣ ବଞ୍ଚାଇବା ପାଇଁ ଆସି ଶେଷରେ ପ୍ରାଣ ଦେବାକୁ ପଡ଼ିବ, ଏହା ଭାବି ଭାବି ବିକଳରେ ସେ ପୁଣି ଚାରିଆଡ଼କୁ ଚାହିଁଲା । ଏହି ସମୟରେ ଏକ ବିରାଟ କୂର୍ମ ତା' ଦୃଷ୍ଟିପଥରେ ପଡ଼ିଲା । ଅସୁର ନିରୁପାୟ ହୋଇ ସେହି କୂର୍ମ ଉପରେ ଚଢ଼ିଗଲା । କିନ୍ତୁ ସେ କୂର୍ମ କୂର୍ମ ନଥିଲେ, ଥିଲେ କାଳ ସ୍ୱରୂପ କୃଷ୍ଣ । ଅସୁରକୁ ସଂହାର କରିବାପାଇଁ ସେ କୂର୍ମରୂପ ଧାରଣ କରିଥିଲେ । ଅସୁରଟି କୂର୍ମ ପିଠିରେ ବସି ପଡ଼ିବାମାତ୍ରେ ସେ ପାଣିରେ ବୁଡ଼ିଗଲା । ଅସୁରଟି ମୃତ୍ୟୁବରଣ କଲା ।

ହିରଣ୍ୟକଶିପୁ ନିଜକୁ ବଞ୍ଚାଇବା ପାଇଁ କେତେ ବର ପାଇଥିଲା । ସେ ଅସ୍ତ୍ରରେ କି ଶସ୍ତ୍ରରେ ମରିବ ନାହିଁ । ଦିନରେ କି ରାତିରେ ମରିବ ନାହିଁ, ସ୍ୱର୍ଗରେ କି ମର୍ତ୍ତ୍ୟରେ ମରିବ ନାହିଁ, ମନୁଷ୍ୟ କି ପଶୁଙ୍କଦ୍ୱାରା ମୃତ୍ୟୁ ବରଣ କରିବନାହିଁ । ଭଗବାନ୍ ନୃସିଂହ ରୂପରେ ନିଜର ଜାନୁ ଉପରେ ରଖି ତାକୁ ମାରିଥିଲେ । ତେଣୁ ରାଜକୁମାରର ସେହିପରି ମୃତ୍ୟୁଯୋଗ ଥିଲା । ତେଣୁ କୌଣସି କଥା ଜଣାପଡ଼ିଲା ନାହିଁ ଏବଂ ମହାରାଣୀ ମଧ୍ୟ ସେହି ସମୟରେ ଅସାବଧାନ ହୋଇଗଲେ ।

ଛାଡ଼ନ୍ତୁ ସେସବୁ କଥା । କେହି ଏହି କ୍ରୂର କାର୍ଯ୍ୟର ବିରୋଧ କଲେ ନାହିଁ କାହିଁକି ? କଲେ ନାହିଁ ନୁହେଁ କରିପାରିଲେ ନାହିଁ । କାରଣ, ଯୋଗ ସେହିପରି ଘଟିଥିଲା । ଯାହାର ମୃତ୍ୟୁଯୋଗ ଯେଉଁଠି ଥାଏ ସେ ସେଠି ଆସି ପହଞ୍ଚିଯାଏ । ଯେଉଁମାନେ ଏକତ୍ର ମରିବା କଥା ସେମାନେ ନାନା ସ୍ଥାନରୁ ଆସି ଏକ ସ୍ଥାନରେ ଏକାଠି ହୁଅନ୍ତି । ସମସ୍ତେ ଏକ ନୌକାରେ ଚଢ଼ିଯାଆନ୍ତି, ନୌକା ମଝି ନଈରେ ବୁଡ଼ିଯାଏ, ସମସ୍ତେ ମୃତ୍ୟୁବରଣ କରନ୍ତି । କୌଣସି ଘଟଣା କେବେହେଲେ ବିନା କାରଣରେ ଘଟେ ନାହିଁ । ପୂର୍ବଜନ୍ମରେ ଆମେ ଯାହାର ଅପକାର କରିଥିବା ସେ ଏ ଜନ୍ମରେ ଆମର ଅପକାର କରିବ । ପୂର୍ବଜନ୍ମରେ ଯାହାକୁ ଆମେ ହତ୍ୟା କରିଥିବା ସେ ଏ ଜନ୍ମରେ ଆମକୁ ହତ୍ୟା କରିବ । ପୂର୍ବଜନ୍ମରେ ସେଇ ପିଲାଟି ଯେଉଁ ସ୍ତ୍ରୀଲୋକମାନଙ୍କୁ ହତ୍ୟା କରିଥିଲା ସେମାନେ ଏ ଜନ୍ମରେ ରାଣୀ ହୋଇଥିଲେ ଏବଂ ସେଇ ସ୍ତ୍ରୀଲୋକମାନଙ୍କ ଦ୍ୱାରା ପିଲାଟି ମୃତ୍ୟୁବରଣ କଲା । ଏସବୁ ପ୍ରତିଶୋଧ ନେବାର ସଂକଳ୍ପ ଏବଂ ଏହାର ଫଳ ପ୍ରାରବ୍ଧ ଅନୁସାରେ ଭିନ୍ନ ଭିନ୍ନ ସ୍ଥାନରେ ପ୍ରକାଶ ପାଇଥାଏ । ଭାଗ୍ୟବଶତଃ ସେହି ରାଣୀମାନେ ପୁନର୍ଜନ୍ମ ହୋଇଥିଲେ ଏବଂ ଜଣେ ରାଜାଙ୍କର ପତ୍ନୀରୂପେ ଏକତ୍ର ବାସ କରୁଥିଲେ ।"

ଶୌନକ ପଚାରିଲେ—"ଭଗବନ୍ ! ପୂର୍ବଜନ୍ମରେ ସେହି ସ୍ତ୍ରୀଲୋକମାନେ କ'ଣ ଥିଲେ ? ଏ କୁମାର ସେମାନଙ୍କୁ ହତ୍ୟାକଲା କାହିଁକି ?"

ମହର୍ଷି ସୂତ କହିଲେ—"ମହାଭାଗ ! ସେହି ସ୍ତ୍ରୀଲୋକମାନେ ପୂର୍ବଜନ୍ମରେ ପିମ୍ପୁଡ଼ି ଯୋନିରେ ଜନ୍ମ ହୋଇଥିଲେ । ଲକ୍ଷ ଲକ୍ଷ, କୋଟି କୋଟି ସଂଖ୍ୟାରେ ସେମାନେ ବିଲରେ ରହୁଥିଲେ । ଧନେ ଭଗବାନଙ୍କ ଭୋଗ ଉଦ୍ଦେଶ୍ୟରେ ଥିବା ଗୁଡ଼ଗୁଳକୁ ନେଇ ସେମାନେ ବିଲ ଭିତରେ ପ୍ରବେଶ କରୁଥିଲେ । ସେହି କୁମାର ପୂର୍ବଜନ୍ମରେ । ଜଣେ ରାଜକୁମାର ଥିଲା । ସେ ବସି ବସି ପିମ୍ପୁଡ଼ିମାନଙ୍କର ଗୁଡ଼ଗୁଳ ବୋହିନେବା ଦୃଶ୍ୟ ଦେଖୁଥିଲା । ହଠାତ୍ ତା' ମନରେ ଏକ କ୍ରୂର ଭାବନା ସୃଷ୍ଟି ହେଲା । ଆଗରୁ ଜଳ ଗରମ କରାଯାଇଥିଲା ଏବଂ ପାଣି ଟକ୍‌ମକ୍ ହୋଇ ଫୁଟୁଥିଲା । କୁମାର ସେହି ଗରମ ପାଣି ନେଇ ପିମ୍ପୁଡ଼ି ବିଲରେ ଢାଳିଦେଲା । ସେହି ଗରମ ପାଣିରେ ସବୁ ପିମ୍ପୁଡ଼ି ମରିଗଲେ ।

ଭଗବାନଙ୍କ ନୈବେଦ୍ୟ ସ୍ପର୍ଶ କରିଥିବାରୁ ସେମାନେ ରାଣୀ ହେଲେ ଏବଂ ପ୍ରତିଶୋଧ ନେବାପାଇଁ କୁମାରକୁ ବିଷ ଦେଇ ହତ୍ୟା କଲେ । ସେହି ରାଜକୁମାର ଥିଲା ଜଣେ ଜ୍ଞାନୀ । ଭୁଲ୍‌ବଶତଃ ସେ ଏହି ଅକାର୍ଯ୍ୟ କରିଥିଲେ ମଧ୍ୟ ତା'ର ହୃଦୟରେ ଅବଶିଷ୍ଟ ସଂସ୍କାର ଥିଲା । ସେହି ଅକାର୍ଯ୍ୟର ଫଳ ଭୋଗ କରିବା ପାଇଁ ତାକୁ ପୁଣି ରାଜବଂଶରେ ଜନ୍ମ ହେବାକୁ ପଡ଼ିଲା । ରାଣୀମାନେ ବିଷ ଦେବାପରେ ରାଜକୁମାର ଅକାଳ ମୃତ୍ୟୁ ବରଣ କଲେ ମଧ୍ୟ ଜ୍ଞାନ ଥିବା ହେତୁ ସେ ମୁକ୍ତ ହୋଇଗଲେ ।

ହେ ମୁନିଗଣ ! ଏହିପରି ସମସ୍ତ କାର୍ଯ୍ୟ କୌଣସି ନା କୌଣସି କାରଣରୁ ଘଟିଥାଏ । ସମସ୍ତ ଜୀବ ପ୍ରାରବ୍ଧର ବଶୀଭୂତ ହୋଇ କାର୍ଯ୍ୟ କରନ୍ତି । ସମସ୍ତେ ସମୟର ଅଧୀନ । ତେଣୁ କୌଣସି ଘଟଣା ଦେଖି ଶୋଚନା କରିବା ଉଚିତ ନୁହେଁ । ଯାହା ଘଟୁଛି ସବୁ ଠିକ୍ ବୋଲି ଭାବି କୌଣସି ଘଟଣାରେ ବିସ୍ମିତ ହେବାର କିଛି ନାହିଁ । ଦୁଃଖୀର ଦୁଃଖ, ସୁଖୀର ସୁଖ, ସବୁକିଛି ସଂଯୋଗବଶତଃ ଘଟିଥାଏ । ଆପଣମାନଙ୍କୁ ଆଉ କ'ଣ କହିବି ?"

ମହର୍ଷି ଶୌନକ କହିଲେ—"ଭଗବନ୍ ! ରାଣୀମାନଙ୍କ କଥା ଶୁଣି ସାରିବା ପରେ ବର୍ତ୍ତମାନ ରାଜାଙ୍କ କଥା ଶୁଣିବା ପାଇଁ ଇଚ୍ଛା କରୁଛୁ । ତାଙ୍କର କ'ଣ ହେଲା ? ଭଗବାନ୍ ସଙ୍କର୍ଷଣଙ୍କ ଉପାସନା କରି ସେ ସିଦ୍ଧିଲାଭ କଲେ କି ନାହିଁ । ତେଣୁ ଦୟାକରି ରାଜାଙ୍କ ସମ୍ବନ୍ଧରେ ସୃଷ୍ଟି ହୋଇଥିବା ଆମର କୌତୂହଳ ଦୂର କରନ୍ତୁ ।"

ଋଷିମାନଙ୍କର ଅନୁରୋଧ ଓ ଉତ୍ସୁକତା ଦେଖି ସୂତଋଷି କହିଲେ—"ହେ ମୁନିଗଣ ! ବର୍ତ୍ତମାନ ମୁଁ ଚନ୍ଦ୍ରକେତୁଙ୍କ ଉତ୍ତର ଚରିତ କହୁଛି, ଆପଣମାନେ ସାବଧାନହୋଇ ଶୁଣନ୍ତୁ ।"

**ଛପ୍ପୟ**

**ରାଜନ୍ ! ସୁଖ ଦୁଃଖ ଦେଇ ନ କୋଇ କବହୁଁ ଅକାରନ ।**
**ପୂର୍ବ ବୈର କର ଯଦି କରେଁ ଉଚ୍ଚାଟନ ମାରନ ॥**
**ଚୀଁଟୀ ପୂରବ ଜନ୍ମ ମାହିଁ ଥେଁ ସବଇ ରାନୀ ।**
**କ୍ରୀଡ଼ା ମହିଁ ଉଷ୍ଣ କୁମର ନେ ଛୋଡ଼୍ୟୋ ପାନୀ ॥**
**ଉଷ୍ଣ ତୋଇ କେ ପରତଇ, ଟ୍ୟୁ ସବକୀ ସବ ମରି ଗଈ ।**
**ଚନ୍ଦ୍ରକେତୁ କେ ଭଓନ ମହଁ, ତେଇ ସବ ରାନୀ ଭଈ ॥**

# ଚିତ୍ରକେତୁଙ୍କ ବିଦ୍ୟାଧରାଧିପତ୍ୟ ଲାଭ

ଚିତ୍ରକେତୁସ୍ତୁ ବିଦ୍ୟାଂ ତାଂ ଯଥା ନାରଦଭାଷିତାମ୍ ।
ଧାରୟାମାସ ସପ୍ତାହମବ୍‌ଭକ୍ଷଃ ସୁସମାହିତଃ ॥
ତତଶ୍ଚ ସପ୍ତରାତ୍ରାନ୍ତେ ବିଦ୍ୟୟା ଧାର୍ଯ୍ୟମାଣୟା ।
ବିଦ୍ୟାଧରାଧିପତ୍ୟଂ ସ ଲେଭେଽପ୍ରତିହତଂ ନୃପଃ ॥

(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୬ଅ-୨୭,୨୮ ଶ୍ଲୋକ)

### ଛପ୍‌ପୟ

ରାଜନ କୀନ୍ହେଁ ଜାଇ ବାଲହତ୍ୟା ନାଶକ ବ୍ରତ ।
ନାରଦ ତେ ଲୈ ମନ୍ତ୍ର ନୃପତି ଘର ତେଁ ନିକସେ ଇତ ॥
କେବଲ ଜଲ ପୀ ରହେଁ ସାତ ଦିନ ମନ୍ତ୍ର ଜପତ ନିତ ।
ଶୋକ ମୋହ ସବ ଗୟୌ ଲଗ୍ୟୋ ସଙ୍କର୍ଷଣ ମହଁ ଚିତ ॥
ବିଦ୍ୟାଧର ପତି ହ୍ୱୈ ଗୟେ ମନୁଜ ଦେହ ଛି ତେଁ ନୃପତି ।
ପହୁଁଚେ ସଙ୍କର୍ଷଣ ! ନିକଟ, ବଢ଼ୀ ଯୋଗ ତେଁ ବିପୁଲ ଗତି ॥

ଶ୍ରୋତ୍ରିୟ, ବ୍ରହ୍ମନିଷ୍ଠ, ସିଦ୍ଧଗୁରୁଙ୍କ ପ୍ରଦତ୍ତ ବିଦ୍ୟା କେବେହେଲେ ବିଫଳ ହୁଏ ନାହିଁ । ଗୁରୁଙ୍କ ଉପଦେଶ ଅନୁସାରେ ସାବଧାନତାର ସହିତ ସମସ୍ତ ବିଧିବିଧାନ ପାଳନ ପୂର୍ବକ ଯେଉଁ କାର୍ଯ୍ୟ କରାଯାଏ ତାହା ନିଶ୍ଚିତଭାବେ ସଫଳ ହୁଏ । ଅବଶ୍ୟ ପାତ୍ରଭେଦରେ ଏହି ଫଳାଫଳରେ ବ୍ୟତିକ୍ରମ ଘଟେ ବା ଅବାନ୍ତର ବିଘ୍ନ ସୃଷ୍ଟି ହୁଏ । କିନ୍ତୁ ବିଦ୍ୟା ହେଉଛି ଅମୋଘ । ତେଣୁ ଶ୍ରୋତ୍ରିୟ, ବ୍ରହ୍ମନିଷ୍ଠ ଗୁରୁଙ୍କ ଶରଣ ନେବା ଉଚିତ । ସଂସାର ସାଗରରୁ ପାରିହେବା ନିମିତ୍ତ ଗୁରୁଦେବ ହିଁ ସହାୟକ ହୁଅନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଯେତେବେଳେ ରାଜା ନିଜର ମୃତ ପୁତ୍ରର ଅନ୍ତ୍ୟେଷ୍ଟି କାର୍ଯ୍ୟ ଶେଷ କଲେ ଏବଂ ରାଣୀମାନେ ବାଲହତ୍ୟା ରୂପକ ପାପର ପ୍ରାୟଶ୍ଚିତ୍ତ କରିସାରିଲେ ସେତେବେଳେ ମହାରାଜ ଚିତ୍ରକେତୁ, ପଙ୍କରେ ପଡ଼ିଯାଇଥିବା ହାତୀ ଯେପରି ନିଜକୁ ପୁରୁଷମାନଙ୍କ ସହାୟତାରେ ମୁକ୍ତିଲାଭ କରେ, ସେହିପରି ରାଜ୍ୟ, ଧନ, ପରିବାର,

ହନ୍ତୁ, ସ୍ୱଜନଙ୍କର ମୋହ ତ୍ୟାଗକରି ଘରୁ ଚାଲିଗଲେ । ପ୍ରଥମେ ସେ ପାପନାଶିନୀ କାଳିନ୍ଦୀରେ ସ୍ନାନକଲେ । ସ୍ନାନ, ତର୍ପଣ ଆଦି ଶେଷକରି ମୌନ ଅବଲମ୍ବନ ପୂର୍ବକ ପ୍ରଥମେ ଭଗବାନ୍ ଅଙ୍ଗିରା ଓ ଦେବର୍ଷି ନାରଦଙ୍କ ପାଦପଦ୍ମରେ ପ୍ରଣାମ ଜଣାଇଲେ । ରାଜାଙ୍କୁ ମନ୍ତ୍ରଦୀକ୍ଷା ଦେବାପାଇଁ ଅଙ୍ଗିରା ମୁନି ଦେବର୍ଷି ନାରଦଙ୍କୁ ଅନୁରୋଧ କଲେ । ନାରଦ ରାଜାଙ୍କୁ ଅଷ୍ଟାକ୍ଷର ମନ୍ତ୍ର ଉପଦେଶ ଦେଲେ ଏବଂ ଦୀକ୍ଷା ଲାଭକରି ରାଜା ଗୁରୁଦେବ ନାରଦଙ୍କୁ ପ୍ରଣାମ କଲେ ।"

ନାରଦ କହିଲେ—"ରାଜନ୍ ! ଆପଣ ସାବଧାନତାର ସହିତ ଏହି ମନ୍ତ୍ର ପୁରଶ୍ଚରଣ କରିବେ । ବର୍ତ୍ତମାନ ଆମ୍ଭେମାନେ ବିଦାୟ ନେଉଛୁ ।" ଏହା କହି ଅଙ୍ଗିରା ମୁନିଙ୍କୁ ସଙ୍ଗରେ ନେଇ ନାରଦ ବ୍ରହ୍ମଲୋକକୁ ଫେରିଗଲେ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ନାରଦ ଓ ଅଙ୍ଗିରା ମୁନି ଚାଲିଯିବା ପରେ ରାଜା ଚିତ୍ରକେତୁ ଏକାଗ୍ର ଚିତ୍ତରେ ଖୁବ୍ ସାବଧାନତାର ସହିତ ମନ୍ତ୍ର ଜପକଲେ । ଆହାର, ନିଦ୍ରା ପରିତ୍ୟାଗ କରି ସାତଦିନ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ ମନ୍ତ୍ର ପୁରଶ୍ଚରଣ କଲେ । ସାତଦିନ ପରେ ଏକ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । ମୃତ୍ୟୁ ବରଣ ନକରି ମଧ୍ୟ ରାଜାଙ୍କ ଶରୀର ଦିବ୍ୟ ଶରୀର ହୋଇଗଲା । ସେ ମାନବରୁ ଦେବତା ହୋଇଗଲେ । ଦେବତା-ମାନଙ୍କ ମଧ୍ୟରେ ବିଦ୍ୟାଧରମାନେ ଅତି ସୁନ୍ଦର । ସେମାନେ ଦିବ୍ୟ ବସ୍ତ୍ର, ଭୂଷଣ ପରିଧାନ କରି ସ୍ୱେଚ୍ଛାରେ ବିହାର କରନ୍ତି । ମହାରାଜ ଚିତ୍ରକେତୁ ସାଧାରଣ ବିଦ୍ୟାଧର ନୁହେଁ, ସେମାନଙ୍କର ଅଧିପତି ହେଲେ । ସର୍ବତ୍ର ତାଙ୍କର ଗତି ଅବାରିତ ଥିଲା । ନାରଦଙ୍କ ଉପଦିଷ୍ଟ ମନ୍ତ୍ରର ଅମୋଘ ପ୍ରଭାବ ଥିଲା । ତେଣୁ ରାଜା ଚିତ୍ରକେତୁ ବିଦ୍ୟାଧରମାନଙ୍କ ଆଧିପତ୍ୟ ଲାଭକଲେ ମଧ୍ୟ ମନ୍ତ୍ର ପୁରଶ୍ଚରଣ ଯଥାବିଧି ପାଳନ କରୁଥିଲେ । ସେହି ମନ୍ତ୍ରର ପ୍ରଭାବରେ ସେ ତମୋଗୁଣର ସାକ୍ଷାତ୍ ମୂର୍ତ୍ତି ଭଗବାନ୍ ସଙ୍କର୍ଷଣଙ୍କ ପାଖରେ ପହଞ୍ଚିଲେ ।"

ମହାରାଜା ଚିତ୍ରକେତୁ ଦେଖିଲେ ସହସ୍ର ଫଣାଯୁକ୍ତ ଭଗବାନ୍ ସଙ୍କର୍ଷଣ ଗୋଟିଏ ଫଣା ଉପରେ ଏକ ଶୋରିଷ ରୂପେ ସମଗ୍ର ଭୂମଣ୍ଡଳ ଅବସ୍ଥିତ ହୋଇଅଛି । ତାଙ୍କ ଚାରିପାଖରେ ବଡ଼ ବଡ଼ ସିଦ୍ଧ ଯୋଗୀଗଣ ହାତଯୋଡ଼ି ଠିଆହୋଇଛନ୍ତି । ତାଙ୍କ ସହସ୍ର ଫଣାରେ ସହସ୍ର ମୁକୁଟ ଶୋଭାପାଉଛି । ମୁକୁଟରେ ଥିବା ବହୁମୂଲ୍ୟ ମଣିମାଣିକ୍ୟ ଜକ୍ ଜକ୍ କରୁଛି । ମଣିର ଆଲୋକରେ ସମଗ୍ର ପାତାଳ ବିବର ଆଲୋକିତ ହୋଇଛି । ଭଗବାନ୍ ସଙ୍କର୍ଷଣ ମୃଣାଳ ସଦୃଶ ଶୁଭ୍ର ଓ ତେଜୋମୟ ଦେଖାଯାଉଛନ୍ତି । ଦିବ୍ୟ ନୀଳାମ୍ବର ବସ୍ତ୍ର ଓ ଉତ୍ତରୀୟ ପରିଧାନ କରିଛନ୍ତି । କଣ୍ଠହାର, କେୟୂର, କଟିସୂତ୍ର, କଙ୍କଣ ଆଦି ଭୂଷଣରେ ସୁଶୋଭିତ ତାଙ୍କର ଶରୀର ଝିଲ୍‌ମିଲ୍ ହୋଇ ଉଠୁଛି । ମାଧୁରୀ ସୁଧାପାନ ହେତୁ କମଳ ନୟନ ଅରୁଣ ବର୍ଣ୍ଣ ଧାରଣ କରିଛି । ମନ୍ଦହାସଯୁକ୍ତ ମୁଖର ଶୋଭା ଅତୀବ ଆକର୍ଷଣୀୟ ହୋଇଛି । ଭଗବନ୍ନାମ କୀର୍ତ୍ତନ କରୁଥିବାରୁ ତାଙ୍କର ଅଧରପୁଟ ଧୀରେ ଧୀରେ ଆନ୍ଦୋଳିତ ହେଉଛି ।

ବଦ୍ଧାଧରରୂପେ ରାଜର୍ଷି ଚନ୍ଦ୍ରକେତୁ ସ୍ନେହ ଓ ଭକ୍ତି ପରିପୂର୍ଣ୍ଣ ହୃଦୟରେ ନିଜର ଇଷ୍ଟ-ଦେବଙ୍କୁ ଦର୍ଶନ କଲେ । ଦର୍ଶନମାତ୍ରେ ତାଙ୍କର ସମସ୍ତ ପାପ, ତାପ, ନଷ୍ଟ ହୋଇଗଲା । ଅନ୍ତଃକରଣର ସବୁ ଶେଷ ଆବିଳତା ଦୂର ହୋଇଗଲା । କ୍ଷୁଧାର୍ତ୍ତ ସୁସ୍ୱାଦୁ ଖାଦ୍ୟଲାଭ କଲେ, ଚିରବିରହିଣୀ ପ୍ରିୟତମଙ୍କ ସାକ୍ଷାତ୍ ମିଳନରେ, 'ଧାନଦରିଦ୍ର ଜନ ଅପରିମିତ ସମ୍ପତ୍ତି ଲାଭ କଲେ' ଯେପରି ଆନନ୍ଦିତ ହୁଅନ୍ତି ସେହିପରି ରାଜର୍ଷି ଚନ୍ଦ୍ରକେତୁ ସେମାନଙ୍କଠାରୁ ସହସ୍ରଗୁଣ ଆନନ୍ଦ ଲାଭ କଲେ । ସେ ଭକ୍ତିଭାବରେ ପ୍ରେମାଶ୍ରୁ ବିସର୍ଜନ ପୂର୍ବକ ପୁଲକିତ ହୋଇ ଉଠିଲେ ଏବଂ ଭଗବାନ୍ ସଙ୍କର୍ଷଣଙ୍କ ପାଦପଦ୍ମରେ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ପ୍ରଥମେ ପାଦ୍ୟ, ଅର୍ଘ୍ୟ ଓ ଆଚମନୀୟ ଦେଇ ଭଗବାନ୍‌ଙ୍କ ପାଦପୀଠ ପୂଜା କରାଯାଏ । ତେଣୁ ଚନ୍ଦ୍ରକେତୁ ସ୍ନେହବାରିଦ୍ୱାରା ପାଦପୀଠକୁ ଧୋଇ ପ୍ରେମାଶ୍ରୁଦ୍ୱାରା ପାଦ୍ୟ, ଅର୍ଘ୍ୟାଦି କୃତ୍ୟ ସମ୍ପାଦନ କଲେ । ପବିତ୍ରକୀର୍ତ୍ତି ଭଗବାନ୍ ଆଦିଦେବ ସଙ୍କର୍ଷଣଙ୍କ ଚରଣ-ଦ୍ୱୟ ପ୍ରେମାଶ୍ରୁ ଜଳରେ ଧୋଇ ଦେଲେ । ପ୍ରେମୋଦ୍‌ବେଗ ହେତୁ ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା । ତେଣୁ ଅତ୍ୟୁତ୍କଟ ଇଚ୍ଛା ଥିଲେ ମଧ୍ୟ ସେ ଭଗବାନ୍‌ଙ୍କ ସ୍ତୁତିଗାନ କରିପାରିଲେ ନାହିଁ ।

ପ୍ରେମର ବେଗ କିଛି ଊଣା ହୋଇଯିବା ପରେ ସେ ନିଜକୁ ପ୍ରକୃତିସ୍ଥ କଲେ । କିଛି କହିବାପାଇଁ ତାଙ୍କର ଶକ୍ତି ଆସିଲା । ବୁଦ୍ଧି ପୂର୍ବକ ବିକ୍ଷିପ୍ତ ଚିତ୍ତବୃତ୍ତିକୁ ନିରୋଧ କରି ସମାହିତ ହୋଇ, ବାହ୍ୟ ଓ ଅନ୍ତଃକରଣ ପ୍ରବୃତ୍ତିକୁ ସଂଯତ କରି ଜଗଦ୍‌ଗୁରୁ ଭଗବାନ୍‌ଙ୍କୁ ସ୍ତୁତି କରିବା ପାଇଁ ଉଦ୍ୟତ ହେଲେ ।

ସୂତ କହିଲେ—"ହେ ମୁନିଗଣ ! ରାଜା ଚନ୍ଦ୍ରକେତୁ ଭଗବାନ୍‌ଙ୍କର ଯେଉଁ ଦିବ୍ୟ, ମଧୁର ସ୍ତୁତି ଗାନ କରିଥିଲେ ତାହା ମୁଁ ସ୍ତୁତି ପ୍ରକରଣରେ ଆପଣମାନଙ୍କୁ କହିବି । ରାଜର୍ଷି ଚନ୍ଦ୍ରକେତୁଙ୍କ ସ୍ତୁତିରେ ଭଗବାନ୍ ସଙ୍କର୍ଷଣ ପ୍ରସନ୍ନ ହୋଇ ଯେଉଁ ଉପଦେଶ ଦେଇଥିଲେ ତାହା କହୁଛି, ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।"

### ଛପ୍‌ପୟ

କନକ ମୁକୁଟ ମଣିଜଟିତ ଫଣିନିପେ ଚହୁଁ ଦିଶି ଚମକେଁ ।
ଗୌରବର୍ଣ୍ଣ ବପେ ପରମ ରମ୍ୟ ନୀଳାମ୍ବର ଦମକେଁ ।।
କଙ୍କଣାଦି କଟିସୂତ୍ର ସବନ ତେଁ ଶୋଭେ ଅଦ୍‌ଭୁତ ।
ସୁଧାପନ ତେଁ ଅରୁନ ନୟନ ଅତି ଇ ଆନନ୍ଦଯୁତ ।।
ଶ୍ରୀ ଅନନ୍ତ ଦର୍ଶନ କରତ, ବଢ଼ୀ ହୃଦୟ ମହ ଭକ୍ତି ଅତି ।
ଗଦ୍‌ଗଦ ବାନୀ ତେଁ ବିନୟ, ପ୍ରେମ ସହିତ କୀନ୍ହି ନୃପତି ।।

# ଭଗବାନ୍ ସଙ୍କର୍ଷଣଙ୍କ ଉପଦେଶ

ଲବଧ୍ୱେହ ମାନୁଷୀଂ ଯୋନିଂ ଜ୍ଞାନ ବିଜ୍ଞାନ ସମ୍ଭବାମ୍ ।
ଆତ୍ମାନଂ ଯୋ ନ ବୁଦ୍ଧ୍ୟେତ ନ କ୍ୱଚିତ୍କ୍ଷେମମାପ୍ନୁୟାତ୍ ॥

(ଶ୍ରୀମଦ୍ଭାଗବତ—୬ଷ୍ଠସ୍କନ୍ଧ-୧୬ଅ-୫୮ ଶ୍ଳୋକ)

**ଛପ୍ପୟ**

ଚିତ୍ରକେତୁ କୋ ବିନୟପାଠ ମୁନି ଶେଷ ସିହାୟେ ॥
ତତ୍ତ୍ୱ ଜ୍ଞାନମୟ ଗୂଢ଼ବଚନ ହିତକର ସମୁଝାୟେ ॥
ଦୁର୍ଲଭ ହୈ ନରଦେହ ଭାଗ୍ୟ ତେଁ କୋଈ ପାୱେ ।
ପାଇ କରେଁ ନହୀଁ ଭକ୍ତି ଅନ୍ତ ମହଁ ତେ ପଛୁତାୱେଁ ॥
ଜ୍ଞାନ ଦୟୋ ଶ୍ରୀ ଶେଷ ନେ ଭକ୍ତ ପ୍ରବର ଭୂପତି ଭୟେ ।
ପୂଜା କରି ସେବକ ଶ୍ରମ ସଫଲ ଅନ୍ତର୍ହିତ ହରି ହୈ ଗୟେ ॥

ଗୁରୁଦେବଙ୍କ ଉପଦିଷ୍ଟ ଜ୍ଞାନକୁ ଇଷ୍ଟଦେବ ସମର୍ଥନ କରନ୍ତି । ଗୁରୁମନ୍ତ୍ର ଜପର ଫଳ ହେଉଛି ଇଷ୍ଟଦେବଙ୍କ ଦର୍ଶନ ଲାଭ । ଯେ ଇଷ୍ଟଲାଭ କରିଛି ତାର ଜୀବନ ସାର୍ଥକ ହୋଇଯାଏ । ତା'ର ଆଉ କିଛି କରିବାର ନ ଥାଏ । କେବଳ କର୍ତ୍ତବ୍ୟ ବୁଦ୍ଧିରେ ଭଗବାନ୍ଙ୍କ ସେବା ବ୍ୟତୀତ ତା'ର ଆଉ କୌଣସି କର୍ମବନ୍ଧନ ଅବଶିଷ୍ଟ ରହେ ନାହିଁ । ଇଷ୍ଟଦେବତା ଯେଉଁ ଉପଦେଶ ଦିଅନ୍ତି ତାହା ସାଧନାର ମହତ୍ତ୍ୱକୁ ବଢ଼ାଇଥାଏ । ସେହି ଉପଦେଶର ଉଦ୍ଦେଶ୍ୟ ହେଉଛି ସାଧକର ମନକୁ ପ୍ରସନ୍ନ କରିବା । ପ୍ରଭୁଙ୍କ ଉପଦେଶ ତାଙ୍କର ଶ୍ରୀମୁଖରୁ ଶୁଣିବା ପାଇଁ ସେବକର ସବୁବେଳେ ଇଚ୍ଛା ହେଉଥାଏ । ସେଇ ଇଚ୍ଛାର ପୂରଣ ପାଇଁ ପ୍ରଭୁ ଉପଦେଶ ଦିଅନ୍ତି । ସେହି ଉପଦେଶ ଅନ୍ୟ ସାଧକମାନଙ୍କୁ ମାର୍ଗ ପ୍ରଦର୍ଶନ କରେ । ଅନେକ ସାଧକ ତା'ଦ୍ୱାରା ସାଧି ଇଷ୍ଟଦେବଙ୍କ ସାନ୍ନିଧ୍ୟ ଲାଭ କରନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବିଦ୍ୟାଧରମାନଙ୍କ ଅଧିପତି ରାଜର୍ଷି ଚିତ୍ରକେତୁ ଯେତେବେଳେ ଭଗବାନ୍ ସଙ୍କର୍ଷଣଙ୍କ ପ୍ରତ୍ୟକ୍ଷ ଦର୍ଶନ ଲାଭ କଲେ ଓ ପ୍ରେମ ବିଭୋର ହୋଇ ଦୀର୍ଘ ସ୍ତୁତିଗାନ କଲେ ସେତେବେଳେ ଭଗବାନ୍ ପ୍ରସନ୍ନ ହୋଇ ହସି ହସି କହିଲେ—ରାଜନ୍ ! ଏବେ ଆଉ ସ୍ତୁତିର ଆବଶ୍ୟକତା ନାହିଁ । ତୁମେ ବର୍ତ୍ତମାନ ସିଦ୍ଧ ହୋଇସାରିଛ । ଇଷ୍ଟବସ୍ତୁ ଲାଭ ପର୍ଯ୍ୟନ୍ତ ସାଧନା କରାଯାଏ । ଇଷ୍ଟବସ୍ତୁ ଲାଭ ପରେ ବା ଇଷ୍ଟଦେବତାଙ୍କର ସାନ୍ନିଧ୍ୟ ଲାଭ ପରେ ସାଧନା ନ କଲେ ମଧ୍ୟ କୌଣସି ଆପତ୍ତି ନାହିଁ ।

ଏଇ ଦେହ ଥିବା ପର୍ଯ୍ୟନ୍ତ ସାଧକକୁ କୌଣସିମତେ ନବାନ୍ଦ କରିବାକୁ ପଡ଼ିବ । ମାତ୍ର ଦେହର ସୁରକ୍ଷା ପାଇଁ ବିଶେଷ କର୍ତ୍ତବ୍ୟ କରିବା ଆବଶ୍ୟକ ନାହିଁ । ସ୍ୱାଭାବିକ ଭାବରେ ଶ୍ୱାସ ପ୍ରଶ୍ୱାସ କ୍ରିୟା ଯେପରି ଚାଲିଥାଏ ସେହିପରି ସିଦ୍ଧ ସାଧକମାନଙ୍କର ସାଧନା କାର୍ଯ୍ୟ ଯଥାରୀତି ଅନୁଷ୍ଠିତ ହୋଇଥାଏ । ଯେଉଁଦିନ ତୁମକୁ ମହର୍ଷି ଅଙ୍ଗିରା ଓ ଦେବର୍ଷି ନାରଦ ମୋ' ବିଷୟରେ ତୁମକୁ ଉପଦେଶ ଦେଲେ ତୁମେ ସେହିଦିନରୁ ସିଦ୍ଧିଲାଭ କରିସାରିଛ । ଯାହା କିଛି ଅଭାବ, ଅପୂର୍ଣ୍ଣତା ଥିଲା ତାହା ମୋର ଦର୍ଶନଦ୍ୱାରା ପୂର୍ଣ୍ଣ ହୋଇଗଲା । ବର୍ତ୍ତମାନ ତୁମେ ଅନୁଭବ କର ଯେ ମୁଁ ହେଉଛି ସର୍ବଭୂତର ପାଳନକର୍ତ୍ତା । ମୁଁ ସମସ୍ତଙ୍କର ଅନ୍ତରାତ୍ମା । ସମସ୍ତଙ୍କ ହୃଦୟରେ ମୁଁ ବିରାଜିତ ଏବଂ ସମସ୍ତ ପ୍ରେରଣା ମୋ'ଠାରୁ ସୃଷ୍ଟି ହୁଏ । ମୋର ଦୁଇଟି ରୂପ ଅଛି ।"

ରାଜା ପଚାରିଲେ—"ଭଗବନ୍ ! ଆପଣଙ୍କର ସେହି ଦୁଇ ରୂପର ସ୍ୱରୂପ କଣ ? ତନ୍ମଧ୍ୟରେ ପ୍ରଥମ ରୂପ କଣ ଓ ଦ୍ୱିତୀୟ ରୂପ କଣ ?"

ଭଗବାନ୍ ଅନନ୍ତ କହିଲେ—"ରାଜନ୍ ! ମୋର ମୂର୍ତ୍ତି ନିତ୍ୟ, ସନାତନ । ଶବ୍ଦ ବ୍ରହ୍ମ ଓ ପରଂବ୍ରହ୍ମ ହେଉଛି ମୋର ଦୁଇମୂର୍ତ୍ତି । ଏହି ଦୁଇ ମୂର୍ତ୍ତି ମଧ୍ୟରେ କୌଣସି ଭେଦ-ଭାବ ନାହିଁ କି ପୃଥକ୍‌ଭାବ ନାହିଁ । ମୋର ଏଇ ଉଭୟ ମୂର୍ତ୍ତି ସନାତନ ।"

ମହାରାଜ ଚିତ୍ରକେତୁ ପଚାରିଲେ—"ଭଗବନ୍ ! ଯେଉଁ ପ୍ରପଞ୍ଚ ପ୍ରତ୍ୟକ୍ଷଭାବେ ଦୃଷ୍ଟିଗୋଚର ହେଉଛି ଜୀବାତ୍ମା ସହିତ ତା'ର କି ସମ୍ପର୍କ ଅଛି ?"

ଭଗବାନ୍ ସଙ୍କର୍ଷଣ ବୁଝାଇବାକୁ ଯାଇ କହିଲେ—"ରାଜନ୍ ! ଏଇ ଦେଖାଯାଉଥିବା ପ୍ରପଞ୍ଚ ଜୀବାତ୍ମାର ଅନ୍ତର୍ଗତ । ପ୍ରପଞ୍ଚ ବିନା ଜୀବର କୌଣସି ପ୍ରୟୋଜନ ନାହିଁ । ତେଣୁ ଜୀବ ଓ ପ୍ରପଞ୍ଚ ପରସ୍ପର ସମ୍ବନ୍ଧିତ । ପ୍ରପଞ୍ଚ ଓ ଜୀବ ଉଭୟରେ ମୁଁ କାରଣ ରୂପେ ବିଦ୍ୟମାନ । ବାସ୍ତବରେ ସବୁର କାରଣ ହେଉଛି ମୁଁ ।"

ରାଜା ପଚାରିଲେ—"ଭଗବନ୍ ! ମୁଁ କିଛି ବୁଝିପାରିଲି ନାହିଁ । ଜୀବ ଓ ପ୍ରପଞ୍ଚ ମଧ୍ୟରେ ଅନ୍ୟୋନ୍ୟ ସମ୍ବନ୍ଧ ଥିଲାବେଳେ ଏବଂ ଆପଣ ସେସବୁର ଏକମାତ୍ର କାରଣ ହୋଇଥିବାବେଳେ ଆପଣହିଁ ସତ୍ୟ ସ୍ୱରୂପ ହେବେ, ଆପଣହିଁ ସୁଖ ସ୍ୱରୂପ ଓ ରସମୟ । ଏସମସ୍ତ ଦୃଶ୍ୟ ପ୍ରପଞ୍ଚ ମଧ୍ୟରେ ରହିବା ଆବଶ୍ୟକ ।"

ଭଗବାନ୍ କହିଲେ—"ରାଜନ୍ ! ଏହା ସତ୍ୟ ନୁହେଁ । ମୋର ମାୟାଦ୍ୱାରା ଏସବୁ ପରିକଳ୍ପିତ । ଉଦାହରଣ ସ୍ୱରୂପ, ଜଣେ ଲୋକ ଶୋଇଛି । ଶୋଇଥିବା ଅବସ୍ଥାରେ ସେ ସ୍ୱପ୍ନରେ ଦେଖୁଛି ସବୁଭିତରେ ସେ ଅଛି ଅର୍ଥାତ୍ ନିଜ ଭିତରେ ସବୁକୁ ବା ସମସ୍ତ ପ୍ରପଞ୍ଚ ମଧ୍ୟରେ ନିଜକୁ ଦେଖୁଛି । ଆଉଥରେ ସ୍ୱପ୍ନରେ ଦେଖୁଛି ସେ କାହାରି ଭିତରେ ନାହିଁ । ଜଗତ୍ ତା'ଠାରୁ ପୃଥକ୍ ଓ ସେ ଜଗତଠାରୁ ପୃଥକ । କିନ୍ତୁ ସ୍ୱପ୍ନ ଦେଖିବାଲୋକ ହେଉଛି ଜଣେ । ସେ ଭିନ୍ନ ଭିନ୍ନ ସ୍ୱପ୍ନରେ ନିଜକୁ ଭିନ୍ନ ଭିନ୍ନ ଅବସ୍ଥାରେ ଦେଖୁଛି । ବାସ୍ତବରେ ଦୁଇଟିଯାକ ଅନୁଭୂତ ହେଉଛି ସ୍ୱପ୍ନ, ଏଥିରେ ଲେଶମାତ୍ର ସତ୍ୟତା ନାହିଁ । ତେଣୁ ଏ

ପ୍ରପଞ୍ଚ ହେଉଛି ଜୀବର ଜାଗ୍ରତ୍ ଅବସ୍ଥାକାଳର ଏକ ସ୍ୱପ୍ନ, ଏହା ଅସତ୍ୟ ଓ ପରମେଶ୍ୱରଙ୍କ ମାୟାମାତ୍ର । ସମସ୍ତ କାର୍ଯ୍ୟର ଏକମାତ୍ର କାରଣ, ସମସ୍ତଙ୍କର ଏକମାତ୍ର ସାକ୍ଷୀ ହେଉଛନ୍ତି ମାୟାଖୀତ ମହେଶ୍ୱର ଏବଂ ମୁଁ ହେଉଛି ସେହି ମହେଶ୍ୱର । ତେଣୁ ସର୍ବଦା ମାୟିକ ପ୍ରପଞ୍ଚକୁ ଭୁଲି ନିରନ୍ତର ମୋତେ ସ୍ମରଣ କରିବା ଉଚିତ ।"

ରାଜା ପଚାରିଲେ—"ଜାଗ୍ରତ ସ୍ୱପ୍ନ ଓ ସୁଷୁପ୍ତି, ଏହି ତିନୋଟିର ଅଭିମାନୀ ବିଶ୍ୱକୁ ତେଜସ୍ ଓ ପ୍ରାଜ୍ଞ ବୋଲି କୁହାଯାଏ । କିନ୍ତୁ ଏମାନଙ୍କରୁ ଆତ୍ମା କିଏ ତାହା ଆମେ କିପରି ଜାଣିବା ।"

ଏହା ଶୁଣି ଭଗବାନ୍ କହିଲେ—"ଏହି ତିନୋଟିର ସାକ୍ଷୀକୁ ହିଁ ଆତ୍ମା କୁହାଯାଏ । ଉଦାହରଣ ସ୍ୱରୂପ, ସ୍ୱପ୍ନକାଳରେ ସମସ୍ତେ ଶୋଇଥାନ୍ତି ଓ ନିଦ୍ରାସୁଖ ଅନୁଭବ କରୁଥାନ୍ତି । ସେତେବେଳେ ଦୃଶ୍ୟ ପ୍ରପଞ୍ଚ ରହେ ନାହିଁ । ଯାହାଦ୍ୱାରା ବିଷୟ ଗ୍ରହଣ କରାଯାଏ ସେହି ଇନ୍ଦ୍ରିୟମାନେ ବି ଅଚେତନ ରହନ୍ତି । ତଥାପି ଆମେ ଅନୁଭବ କରୁ ଯେ ଆମେ ସୁଖରେ ଶୋଇଛୁ । ବର୍ତ୍ତମାନ ଦୁଇଟି କଥା ହେଲା, ଗୋଟିଏ ହେଲା ନିଦ୍ରାଜନିତ ସୁଖ ଓ ଅନ୍ୟଟି ହେଲା ଅତୀନ୍ଦ୍ରିୟ ସୁଖ । ଏହି ଉଭୟ ସୁଖକୁ ଯେ ଅନୁଭବ କରେ ସେ ହେଉଛି ଆତ୍ମା ଏବଂ ମୁଁ ହେଉଛି ସେହି ଆତ୍ମ ସ୍ୱରୂପ ବ୍ରହ୍ମ ।"

ରାଜା ପ୍ରଶ୍ନ କଲେ—"ଭଗବନ୍ ! ନିଦ୍ରା ତେବେ କାହାକୁ ଆସେ, ଆତ୍ମାକୁ ନା ଦେହକୁ ?"

ଭଗବାନ୍ ସଙ୍କର୍ଷଣ କହିଲେ—"ଆତ୍ମା ସହିତ ନିଦ୍ରାର ସମ୍ବନ୍ଧ କଣ ? ନିଦ୍ରା ଅବସ୍ଥାରେ ଯେ ଜାଗ୍ରତ ରହେ ସେ ହେଉଛି ଆତ୍ମା । ତେଣୁ ଆତ୍ମା ନିତ୍ୟ ଜାଗ୍ରତ । ନିଦ୍ରା ଜାଗୃତର ଏକ କଳ୍ପିତ ଅବସ୍ଥା ମାତ୍ର । ନିଦ୍ରା ଓ ଜାଗୃତର ଯେ ସାକ୍ଷୀ, ଯେ ଉଭୟ ଅବସ୍ଥାରେ ସମାନ ରୂପେ ଏବଂ ଯେ ସ୍ୱତନ୍ତ୍ର ଅବସ୍ଥାରେ ରହି ମଧ୍ୟ ବିକୃତି ଲାଭ କରେ ନାହିଁ ସେ ହେଉଛି ଶୁଦ୍ଧ, ଜ୍ଞାନସ୍ୱରୂପ ଓ ପରଂବ୍ରହ୍ମ ।"

ରାଜା ପଚାରିଲେ—"ପ୍ରଭୋ ! ଜୀବ ତାହାହେଲେ ମୋକ୍ଷ ଓ ବନ୍ଧନ ଚକ୍ରରେ ପଡ଼େ କାହିଁକି ? ନାନା ଯୋନିରେ ସେ କାହିଁକି ଜନ୍ମ ଗ୍ରହଣ କରେ ?"

ଭଗବାନ୍ କହିଲେ—"ରାଜନ୍ ! କେଉଁଠି କିଏ ଜନ୍ମ ନେଉଛି ? ମୋକ୍ଷର ଅସ୍ତିତ୍ୱ ନାହିଁ କି ବନ୍ଧନର ଅସ୍ତିତ୍ୱ ନାହିଁ । ବନ୍ଧନ ଓ ମୋକ୍ଷ ରୂପକ ମିଥ୍ୟା କଳ୍ପନାରେ ପଡ଼ି ଜୀବ ଅକାରଣ ଘୂରିବୁଲୁଛି । ବେକରେ ମାଳ ପଡ଼ିଛି ଅଥଚ ମାଳ ନାହିଁ ବୋଲି ବାହାରେ ଖୋଜିବୁଲୁଛି । ଜଣେ ଲୋକ ଥିଲା, ଥରେ ଆବଶ୍ୟକତାଠାରୁ ଅଧିକ ଭାଙ୍ଗ ସେବନ କଲା । ସେହି ଭାଙ୍ଗ ନିଶାରେ ପୁଅକୁ କାଖରେ ବସାଇ ଘରକୁ ଆସିଲା । ଘରେ ପହଞ୍ଚିବା ପରେ ତା'ର ମନେ ପଡ଼ିଲା ଯେ, ସେ ପୁଅକୁ ଆଣିନାହିଁ । ଏଠି ସେଠି ପୁଅକୁ ଖୋଜି ଖୋଜି ବଡ଼ ଚିନ୍ତିତ ଓ ଦୁଃଖିତ ହୋଇପଡ଼ିଲା । ଏହି ସମୟରେ ଜଣେ ଦୟାଳୁ ବ୍ୟକ୍ତି ତାଙ୍କର ବ୍ୟଗ୍ରତା ଓ ମାନସିକ ଅଶାନ୍ତି ଲକ୍ଷ୍ୟ କରି ପଚାରିଲେ—"ଆପଣ କଣ ଖୋଜୁଛନ୍ତି ଏବଂ ଏତେ ଦୁଃଖୀ ଓ ଚିନ୍ତିତ ଜଣାପଡ଼ୁଛନ୍ତି ?"

ଲୋକଟି କହିଲା—"ଆଜ୍ଞା, କଣ କହିବି ! ଘରୁ ଆସିବାବେଳେ ପୁଅକୁ ସାଙ୍ଗରେ ନେଇ ଆସିଥିଲି । ଏବେ କୁଆଡ଼େ ହଜିଗଲା, ତାକୁ ହିଁ ଖୋଜୁଛି ।"

ତପସ୍ୱୀଙ୍କୁ ଭଦ୍ରବ୍ୟକ୍ତି ହସି ହସି କହିଲେ—"ଆରେ, ପୁଅ ତ ଆପଣଙ୍କ କାଖରେ ବସିଛି । ଆପଣ ବୃଥା ଟାରେ ଏଣେ ତେଣେ ବୁଲିବୁଲନ୍ତି କାହିଁକି ?"

ସେତେବେଳେ ପୁଅକୁ କାଖରେ ଧରିଥିବାର ଦେଖି ଖୁସି ହୋଇ ଲୋକଟି କହିଲା—'ବାଃ, ପୁଅକୁ କାଖରେ ବସାଇ ଗାଁରେ ଢେଣ୍ଡୁରା ପିଟୁଛି' । "ହେ ରାଜନ୍ ! ସେହିପରି ଜୀବ ଯେତେବେଳେ ପରଂବ୍ରହ୍ମ ସ୍ୱରୂପ ମୋତେ ଭୁଲିଯାଏ ସେତେବେଳେ ଆତ୍ମ ସ୍ୱରୂପ ନିଜଠାରୁ ପୃଥକ୍‌ଭାବ ଅନୁଭବ କରେ । ନିଜକୁ ସଂସାର କର୍ମବନ୍ଧନରେ ବନ୍ଧା ହୋଇଥିବାର ମନେ କରି ନାନା ଯୋନିରେ ଘୂରିବୁଲେ । ସୁଖ, ଦୁଃଖ, ଜନ୍ମ, ମରଣକୁ ନିଜର ବୋଲି ମନେ କରି ସଂସାରୀ ହୋଇଯାଏ । ତେଣୁ ଆତ୍ମ ସ୍ୱରୂପ ପରମେଶ୍ୱର ଜ୍ଞାନ ଯାହାର ଉଦୟ ହୋଇଛି ସେ ସଂସାର ଦୁଃଖରୁ ମୁକ୍ତ ହୋଇଯାଇଛି ବୋଲି ବୁଝିବାକୁ ହେବ । ଯେ ସେହି ଜ୍ଞାନରୁ ବଞ୍ଚିତ ତାକୁ 'ପୁନରପି ଜନନଂ ପୁନରପି ମରଣଂ ପୁନରପି ଜନନୀ ଜଠରେ ଶୟନମ୍' ଚକ୍ରରେ ପଡ଼ି ଘୂରିବାକୁ ହେବ ଏବଂ ବାରମ୍ବାର ଘାତ, ଆଘାତ ଓ ପ୍ରତିଘାତ ସହିବାକୁ ପଡ଼ିବ । ଏହି ଜ୍ଞାନ କେବଳ ମନୁଷ୍ୟଠାରେ ସମ୍ଭବ । ତେଣୁ ମାନବ ଦେହ ପାଇ ଯେ ଏହି ତତ୍ତ୍ୱଜ୍ଞାନ ଲାଭକରେ ସେ ମଣିଷଜନ୍ମରୁ ତରିଯାଏ ।"

ରାଜା ଚନ୍ଦ୍ରକେତୁ ପଚାରିଲେ—"ପ୍ରାଣୀମାନେ ସର୍ବଦା ସୁଖ ପାଇଁ ଯତ୍ନ କରନ୍ତି । କିନ୍ତୁ ସେମାନେ ଦୁଃଖ ପାଆନ୍ତି କାହିଁକି ?"

ଭଗବାନ୍ କହିଲେ—"ରାଜନ୍ ! ଫଳପ୍ରାପ୍ତିର ଆକାଂକ୍ଷା ହେଉଛି ଦୁଃଖର କାରଣ । ସଂସାରୀ ଲୋକେ ବିଷୟ ସୁଖ ପାଇଁ ଦିନରାତି ପ୍ରବଳ ଯତ୍ନ କରନ୍ତି । ଅହୋରାତ୍ର ବ୍ୟଗ୍ର ରହୁଥିଲେ ସେମାନେ ସୁଖୀ ହୋଇପାରନ୍ତି ନାହିଁ କାରଣ ତାଙ୍କର ଫଳ ଆକାଂକ୍ଷା ଅନିତ୍ୟ ବସ୍ତୁ ଉପରେ ଆଧାରିତ । ଆପଣ ଗଛଟିଏ ଲଗାଇ ତା'ର ଯତ୍ନ ନେଉଛନ୍ତି । ସେଥିରେ ଯଦି ଭଲ ହେଲା ତେବେ ଆପଣଙ୍କ ଶ୍ରମ ସାର୍ଥକ ହେବ, ନୋହିଲେ ଦୁଃଖ ହେବ । ଆପଣ ବାବୁଲି କଣ୍ଟା ଗଛ ଲଗାଇ ସେଥିରୁ ମଧୁର ଫଳ ଆଶା କରିବା ବୃଥା, କାରଣ ସେ ଗଛର ଫଳ ତିକ୍ତ ଓ କଣ୍ଟକମୟ ହେବ ହିଁ ହେବ । ତେଣୁ ପୁରୁଷ ଯଦି ସାଂସାରିକ ସୁଖରେ ଲିପ୍ତ ନ ହୋଇ ଶ୍ରୀହରିଙ୍କ ଶରଣ ନେବ, କାମନାରୁ ମୁକ୍ତ ରହି ଫଳ ଆକାଂକ୍ଷା ପରିତ୍ୟାଗ କରିବ ତେବେ ସେ ହେବ ନିର୍ଭୟ ଓ ସୁଖୀ । ଭୟାକ୍ରାନ୍ତ ଓ ଆକାଂକ୍ଷିତ ବ୍ୟକ୍ତିର ସୁଖ କେଉଁଠୁ ଆସିବ ?"

ସବୁ ସ୍ତ୍ରୀ ପୁରୁଷ ଦୁଃଖମୁକ୍ତ ଓ ସୁଖପ୍ରାପ୍ତି ପାଇଁ ଯତ୍ନଶୀଳ ଥାଆନ୍ତି । ସେଥିପାଇଁ ବହୁ ଶ୍ରମ କରନ୍ତି, କିନ୍ତୁ ସେମାନଙ୍କର ଗତି ହେଉଛି ବିପରୀତ ଦିଗରେ । ସେମାନେ ଉତ୍ତର ଦିଗକୁ ଯିବାର ଥିଲେ ଯାଆନ୍ତି ପ୍ରକୃତରେ ଦକ୍ଷିଣ ଦିଗକୁ । ତେଣୁ ଗନ୍ତବ୍ୟ ସ୍ଥାନରେ ସେମାନଙ୍କର ପହଞ୍ଚିବା ସମ୍ଭବ ହୁଏ ନାହିଁ । ତେଣୁ ବିପରୀତ ଭାବନା ଓ ବିପରୀତ ମାର୍ଗ

ଅନୁସରଣ କରୁଥିବା ହେତୁ ଲୋକଙ୍କର ଦୁଃଖ ଦୂର ହୁଏ ନାହିଁ କି ସେମାନେ ଶାଶ୍ୱତ ସୁଖ ଉପଲବ୍ଧି କରିପାରନ୍ତି ନାହିଁ ।

ମହାରାଜ ଚିତ୍ରକେତୁ ପଚାରିଲେ—"ପ୍ରଭୋ ! ଏହି ଦୃଶ୍ୟମାନ ଜଗତ୍ ପ୍ରତି ଆସକ୍ତି ରହିତ ହୋଇ ମଣିଷ କିଣ କରିବ ? ପ୍ରେମ, ଆସକ୍ତି ବିନା ମଣିଷ ବଞ୍ଚିବ କିପରି ?"

ଭଗବାନ୍ ଅନନ୍ତ କହିଲେ—"ମୋତେ ପ୍ରେମ କର, ଭକ୍ତି କର, ମୋ'ଠାରେ ସର୍ବସ୍ୱ ଅର୍ପଣ କର, ଏତିକି କାର୍ଯ୍ୟ ଯଥେଷ୍ଟ । ସେଥିପାଇଁ ସଂସାର ତ୍ୟାଗର ଆବଶ୍ୟକତା ନାହିଁ । ମନେରଖ, ଏହି ପ୍ରାଣୀ ଅଭିମାନରେ ପରିପୂର୍ଣ୍ଣ ହୋଇ ନିଜକୁ ସର୍ବେସର୍ବା ମନେ କରୁଛି । ସେଥିପାଇଁ ସେ ବିପରୀତ ଫଳ ଭୋଗ କରୁଛି । ଆତ୍ମାର ଗତି ସୂକ୍ଷ୍ମାତିସୂକ୍ଷ୍ମ । ଜାଗ୍ରତ୍, ସ୍ୱପ୍ନ, ସୁଷୁପ୍ତି, ଏ ତିନି ଅବସ୍ଥାରୁ ସେ ମୁକ୍ତ । ଯେପର୍ଯ୍ୟନ୍ତ ଇହଲୋକର ବିଷୟ, ପଦାର୍ଥ ଓ ପରଲୋକର ଦିବ୍ୟ ପଦାର୍ଥ ପ୍ରତି ବିରାଗ ଜାତ ହୋଇନାହିଁ ସେପର୍ଯ୍ୟନ୍ତ ମୋ' ପ୍ରତି ତା'ର ଭକ୍ତି ଆସିବ ନାହିଁ । ବିଷୟ-ଭକ୍ତ ମୋର ଭକ୍ତ ହୋଇପାରିବ ନାହିଁ । ବାହ୍ୟ ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ଓ ମନ, ବୁଦ୍ଧି, ଚିତ୍ତ, ଅହଙ୍କାର ଯେ ପର୍ଯ୍ୟନ୍ତ ସଂସାରି ବସ୍ତୁରେ ସଂଲଗ୍ନ ରହନ୍ତି ଏବଂ ସଂସାରର ବିଷୟକୁ ସତ୍ୟ ବୋଲି ଗ୍ରହଣ କରନ୍ତି, ସେପର୍ଯ୍ୟନ୍ତ ଯୋଗ ମାର୍ଗରେ କୌଣସି ପ୍ରକାର କୁଶଳତା ଲାଭ ହୁଏନାହିଁ କିନ୍ତୁ ସମସ୍ତ ଇନ୍ଦ୍ରିୟ ଯେତେବେଳେ ସଚ୍ଚିଦାନନ୍ଦ, ପରଂବ୍ରହ୍ମ ସ୍ୱରୂପ ଶ୍ରୀହରିଙ୍କ ସାନ୍ନିଧ୍ୟ ଲାଭ କରନ୍ତି, ସେତେବେଳେ ବ୍ୟକ୍ତି ମୋକ୍ଷ ପଦର ଅଧିକାରୀ ହୁଏ, ସେ ହୁଏ ଶ୍ରେଷ୍ଠ ଭଗବଦ୍‌ଭକ୍ତ । ଶ୍ରୀହରି ନାମକୀର୍ତ୍ତନ ମଣିଷର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ଓ ପରମ ପୁରୁଷାର୍ଥ । ତେଣୁ ତୁମେ ଯଦି ମୋ' ଉପଦେଶ ଅନୁସାରେ କାଳ ଅତି-ବାହିତ କରିବ ତେବେ ଜ୍ଞାନ ବିଜ୍ଞାନ ପରିତୃପ୍ତ ନିତ୍ୟମୁକ୍ତ ଭଗବଦ୍ ଭକ୍ତ ହୋଇପାରିବ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏହିପରି ନାନା ଉପଦେଶ ଦେଇ ପ୍ରଭୁ ଅନନ୍ତ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ସେଠାରେ ଆଶ୍ଚର୍ଯ୍ୟ ଚକିତ ହୋଇ ରହିଗଲେ । 'ସ୍ୱପ୍ନଭାବ କଟିଗଲା ପରେ ଲୋକ ଯେପରି ଚାରିଆଡ଼କୁ ଚାହେଁ', ରାଜା ସେହିପରି ଆଶ୍ଚର୍ଯ୍ୟ ହୋଇ ଆଖି ମଳି ଚାରିଆଡ଼କୁ ଚାହିଁଲେ । ଭଗବାନ୍ ସଙ୍କର୍ଷଣ ଯେଉଁ ଦିଗରେ ଅନ୍ତର୍ଦ୍ଧାନ ହୋଇଥିଲେ ସେହି ଆଡ଼କୁ ଚାହିଁ ରାଜା ପ୍ରଣାମ କଲେ ।"

### ଛପ୍‌ପୟ

ହରି ଅନ୍ତର୍ହିତ ଭୟେ ରହେ ବିଦ୍ୟାଧର ବିସ୍ମିତ ।
ଭୌଁଚକେ ସେ ହୋଇ ନିହାରେଁ ପୁନି ପୁନି ଇତ ଉତ ।।
କରି ଧରନୀଧର ଦରଶ ମନୋରଥ ସଫଳ ଭୟେ ସବ ।
ମିଟ୍ୟୋ ସକଳ ସନ୍ତାପ କୃତାରଥ ଭୟେ ଭୂପ ଅବ ।।
ସଙ୍କର୍ଷଣ ଜିହି ଦିଶା ମହଁ, ଦେ ସିଖ ଅନ୍ତର୍ହିତ ଭୟେ ।
କରି ପ୍ରଣାମ ତିହି ଦିଶା କୁଁ ଚଢ଼ି ବିମାନ ମେଁ ଉଡ଼ି ଗୟେ ।।

●

## ଚ୍ୟବନେ‌ଶ୍ୱରଙ୍କଦ୍ୱାରା ଶିବଙ୍କ ଅପମାନ

ଏକଦା ସ ବିମାନେନ ବିଷ୍ଣୁଦତ୍ତେନ ଭାସ୍ୱତା ।
ଗିରିଶଂ ଦଦୃଶେ ଗଚ୍ଛନ୍ ପରୀତଂ ସିଦ୍ଧଚାରଣୈଃ ॥
ଆଲିଙ୍ଗ୍ୟାଙ୍ଗୀକୃତାଂ ଦେବୀଂ ବାହୁନା ମୁନିସଂସଦି ।
ଉବାଚ ଦେବ୍ୟାଃ ଶୃଣ୍ୱତ୍ୟା ଜହାସୋଚ୍ଚୈସ୍ତଦନ୍ତିକେ ॥

(ଶ୍ରୀମଦ୍ଭାଗବତ-୬ଷ୍ଠ ସ୍କନ୍ଧ-୧୭ଅ-୪, ୫ଶ୍ଳୋ)

### ଛପ୍ପୟ

ଅଷ୍ଟସିଦ୍ଧି ନବନିଧି ନୃପତି କେ ନିକଟ ବିରାଜେଁ ।
ବିଦ୍ୟାଧରପତି ଭୟେ ଚିତ୍ରକେତୁ ମହଁ ରବି ସମ ଭ୍ରାଜେଁ ॥
ଏକ ଦିନା କୈଲାସ ଗୟେ ଶିବ ଶିବା ସଙ୍ଗ ମହଁ ।
ବୈଠେ ଲୈକେ ଅଙ୍କ ମିଲାୟେଁ ଅଙ୍ଗ ଅଙ୍ଗ ମହଁ ॥
ହଁସେୟା ଦେଖି ଶିବ ସନ କହେ, ବଚନ କଠିନ ଅତି ବ୍ୟଙ୍ଗ ତେଁ ।
ତଜି ଲଜ୍ଜା ଲପଟେ ରହେଁ, ଶମ୍ଭୁ ଶିବା କେ ଅଙ୍ଗ ତେଁ ॥

ଆର୍ଯ୍ୟ ଧର୍ମ ଶାସ୍ତ୍ରରେ ନାମବାଚକ ଯେତେ ପଦାର୍ଥ ଅଛି ସମସ୍ତେ ସଜୀବ ବୋଲି କୁହାଯାଇଛି । ଅଣ୍ଡଜ, ପିଣ୍ଡଜ, ସ୍ୱେଦଜ ଓ ଜରାୟୁଜ, ଏମାନେ ମର୍ତ୍ତ୍ୟଲୋକର ପ୍ରାଣୀ । ଦେବ, ଦୈତ୍ୟ, ଦାନବ, ଋଷି, ଗନ୍ଧର୍ବ ଆଦି ଅନେକ ଊର୍ଦ୍ଧ୍ୱଲୋକର ବିଭିନ୍ନ ଜାତି ରୂପେ ପରିଚିତ । ଧର୍ମ, ଅଧର୍ମ ଆଦି ବ୍ୟକ୍ତି ବିଶେଷରୂପେ ପରିଚିତ । ସେମାନଙ୍କର ମଧ୍ୟ ବଂଶବୃଦ୍ଧି ଘଟେ । ବିଭିନ୍ନ ଜାତିରେ ସେମାନେ ବିଭକ୍ତ । କାମ, ତାର ସ୍ତ୍ରୀ ଓ ପିଲାମାନଙ୍କ କଥା ପୁରାଣରେ ବର୍ଣ୍ଣିତ ହୋଇଛି । ମଦର ଉତ୍ପତ୍ତି ସମ୍ବନ୍ଧରେ ଏଠାରେ ସୂଚନା ଦେବା ଆବଶ୍ୟକ । କାମ, କ୍ରୋଧାଦି ମଣିଷର ଛ' ଶତ୍ରୁ ଅଛନ୍ତି ବୋଲି ସମସ୍ତେ ଜାଣନ୍ତି । ସେମାନଙ୍କ ମଧ୍ୟରେ ମଦ ହେଉଛି ମଣିଷର ଅନ୍ୟତମ ଶତ୍ରୁ । ମଦର ଉତ୍ପତ୍ତି ସମ୍ବନ୍ଧରେ ଏକ ପୌରାଣିକ କଥା ଅଛି ଯାହା ମହର୍ଷି ବୃତ୍ରାସୁର କାହାଣୀ ମିଶିଯାଉଛି ।

ଥରେ ଭଗବାନ୍ ଚ୍ୟବନ ଋଷି କୌଣସି କାରଣରୁ ଇନ୍ଦ୍ରଙ୍କ ଉପରେ ରାଗିଗଲେ । ସେ ତପସ୍ୟା ବଳରେ ଇନ୍ଦ୍ରଙ୍କୁ ମାରିଦେବା ପାଇଁ ଏକ ଶତ୍ରୁ ସୃଷ୍ଟି କଲେ । ଇନ୍ଦ୍ର ଏହା

ଜାଣିବା ପରେ ବ୍ୟସ୍ତ ହୋଇପଡ଼ିଲେ । ଚ୍ୟବନଙ୍କ ତପସ୍ୟା ଓ ତେଜର ପ୍ରଭାବ ଇନ୍ଦ୍ରଙ୍କୁ ଭଲ ଭାବରେ ଜଣାଥିଲା । ଅନ୍ୟ କୌଣସି ଉପାୟ ନପାଇ ଇନ୍ଦ୍ର ମହର୍ଷି ଚ୍ୟବନଙ୍କ ପାଖରେ ଆସି ପହଞ୍ଚିଲେ । ତାଙ୍କ ପାଦତଳେ ମୁଣ୍ଡ ଲଗାଇ ବିନୀତଭାବେ ଚ୍ୟବନଙ୍କୁ ପ୍ରାର୍ଥନା କଲେ । ବ୍ରାହ୍ମଣର ହୃଦୟ ତ ଲହୁଣି ପରି ନରମ, ସାମାନ୍ୟ ଚେଷ୍ଟାରେ ତାହା ତରଳିଯାଏ । ସେହିପରି ଇନ୍ଦ୍ରଙ୍କ ପ୍ରାର୍ଥନାରେ ମୁନି ପ୍ରସନ୍ନ ହୋଇଗଲେ । ତାଙ୍କର କ୍ରୋଧ ଦୂର ହୋଇଗଲା । ସେ ଅତି ଶାନ୍ତ ହୋଇ କହିଲେ—"ହେ ଦେବରାଜ ! ଭଲ ହେଲା ତୁମେ ଆସିଗଲ । ନୋହିଲେ ମୋ'ଦ୍ୱାରା ସୃଷ୍ଟି ହୋଇଥିବା ଅସୁର ତୁମକୁ ନିଶ୍ଚୟ ମାରି-ଦେଇଥାନ୍ତା । ସେ ଖୁବ୍ ବଳବାନ୍, ତାକୁ ଏବେ କେଉଁଠି ସ୍ଥାନ ଦିଆଯିବ ? କାହାରି ଶକ୍ତି ନାହିଁ ତାକୁ ରଖିବାପାଇଁ । ତେଣୁ ତୁମେ ଯେଉଁଠି ରଖିବା କଥା କହିବ ତାକୁ ସେଇଠି ରଖିଦେବି ।"

ମହର୍ଷି ଚ୍ୟବନଙ୍କ କଥା ଶୁଣି ଇନ୍ଦ୍ର କହିଲେ—"ଭଗବନ୍ ! ତିନିଲୋକର ପ୍ରଭୁ ହୋଇ ମଧ୍ୟ ମୋତେ ଯେତେବେଳେ ସେ ମାରିଦେବା ପାଇଁ ସମର୍ଥ, ସେତେବେଳେ ମୋ'ଠାରୁ ଯେ ବଳବାନ୍ ତାକୁ ସେଇଠି ରଖନ୍ତୁ ।"

ମୁନି କହିଲେ—"ଠିକ୍ ଅଛି । ମୁଁ ତାକୁ ସବୁ ସ୍ଥାନରେ ବାଣ୍ଟି ରଖିଦେଉଛି । 'ପ୍ରଥମେ ସେ ସ୍ତ୍ରୀମାନଙ୍କଠାରେ ବେଶି ପରିମାଣରେ ରହିବ ! ବିଶେଷତଃ ଯୁବତୀମାନଙ୍କ-ଠାରେ ଏହାର ଆଧିପତ୍ୟ ବେଶି ରହିବ ଏବଂ ସେହି କାରଣରୁ ସେମାନେ ସର୍ବଦା ମଦମତ୍ତ ହୋଇ ରହିବେ । ଜୁଆଡ଼ିମାନଙ୍କ ପାଖରେ ମଦ ରହିବ । ସମସ୍ତ ପ୍ରକାର ଶିକାର, ଶିଳ୍ପ, ସୁରା ମହିମା, ରୂପବାନ୍, ବଳବାନ୍, କୁଳୀନ, ଐଶ୍ୱର୍ଯ୍ୟଶାଳୀ ଲୋକଙ୍କ ପାଖରେ ମଦ ବହୁ ଅଂଶରେ ଅବସ୍ଥାନ କରିବ । ହାତୀ, ମଦ୍ୟ ସହିତ ପ୍ରାଣୀଜଗତର ସମସ୍ତଙ୍କ ପାଖରେ ଏହା ଉଣା ଅଧିକେ ରହିବ । ଏପରିକି ତ୍ୟାଗୀମାନେ ମଧ୍ୟ ତା' କବଳରୁ ପୁରାପୁରି ମୁକ୍ତ ରହି ପାରିବେ ନାହିଁ ।' ମହର୍ଷି ଚ୍ୟବନଙ୍କ ବଚନ ଅନୁସାରେ ସେହିଦିନଠାରୁ ସର୍ବତ୍ର ମଦ ଅବସ୍ଥାନ କଲା । ପ୍ରାଣୀମାନେ ତାହାରି ପ୍ରଭାବରେ ମତ୍ତ ହେଉଛନ୍ତି । ବିଶେଷ କରି ଯେ ସମ୍ପତ୍ତିଶାଳୀ, ନିଜର ତପସ୍ୟା, ତେଜ ଜ୍ଞାନ ଓ ସାମାନ୍ୟତମ ବିଶେଷତାକୁ ଯାହାର ଅଭିମାନ ଅଛି, ସେମାନେ ବହୁଭାବରେ ମଦଦ୍ୱାରା ଉତ୍ପୀଡ଼ିତ ହୁଅନ୍ତି । ମଦ ଗର୍ବରେ ପଡ଼ି ଲୋକେ ବଡ଼ ଓ ମାନ୍ୟାସ୍ପଦ ଲୋକଙ୍କୁ ଅପମାନିତ କରନ୍ତି ଏବଂ ଶାପଗ୍ରସ୍ତ ହୋଇ ଦୁଃଖଭୋଗ କରନ୍ତି ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବିଦ୍ୟାଧରାଧିପ ମହାରାଜ ଚିତ୍ରକେତୁ ଭଗବାନ୍ ସଙ୍କର୍ଷଣଙ୍କ ସାକ୍ଷାତ ପାଇ ଓ ତାଙ୍କଠାରୁ ଉପଦେଶ ଗ୍ରହଣ କରି କୃତାର୍ଥ ହେଲେ । ତାଙ୍କର ଯେଉଁ ବୈରାଗ୍ୟ ଉଦୟ ହୋଇଥିଲା ତାହା ଅଧିକ ଶୋକ ହେତୁ ତାମସ ଭାବରୁ ଘଟିଥିଲା । ସେଥିପାଇଁ ଦେବର୍ଷି ନାରଦ ତମୋମୟୀ ମୂର୍ତ୍ତିଙ୍କ ଉପାସନା ପାଇଁ ରାଜାଙ୍କୁ ଉପଦେଶ ଦେଇଥିଲେ । ଅଜ୍ଞାନରୁ ମୁକ୍ତ ହେଲେ ମଧ୍ୟ ତାଙ୍କର ଆଉ କିଛି ପ୍ରାରବ୍ଧ ଅବଶେଷ ରହି-

ଯାଇଥିଲା ପରି ଜଣାଗଲା । ସଞ୍ଚିତ କର୍ମ ବିନାଶ ପରେ ମଧ୍ୟ ଶରୀରର ପ୍ରାରବ୍ଧ ଜନିତ ଭୋଗ, ଭୋଗ କରିବାକୁହିଁ ପଡ଼ିଛି । ସେହି ଭୋଗ କାଳରେ ସେଥିରେ ଆସକ୍ତି ରହି ନ ପାରେ ଅଥବା ସୁଖ ଦୁଃଖରେ ଅନୁଭୂତି ଆସି ନ ପାରେ, ତାହା ଅଲଗା କଥା ।

ମହାରାଜ ଚିତ୍ରକେତୁଙ୍କର ମଧ୍ୟ କିଛି ଭୋଗ ଅବଶେଷ ରହିଥିଲା । ସେ ତାହା ଭୋଗ କରିବା ମଧ୍ୟରେ ଆକାଶମାର୍ଗରେ ଦିବ୍ୟଲୋକରେ ବିଚରଣ କରିବାକୁ ଲାଗିଲେ । ଭଗବାନ୍ ତାଙ୍କୁ ତେଜୋମୟ, ସର୍ବ ଐଶ୍ୱର୍ଯ୍ୟଯୁକ୍ତ ଏକ ଦିବ୍ୟ ବିମାନ ଦେଇଥିଲେ । ସେ ସେହି ବିମାନରେ ବସି ଚାରିଆଡ଼େ ବୁଲୁଥିଲେ । ବିଦ୍ୟାଧରମାନଙ୍କର ସବୁଠୁ ସୁନ୍ଦରୀ କନ୍ୟା ତାଙ୍କର ସେବା କରୁଥିଲେ । ସୁନ୍ଦରୀ ଗାୟିକା, ନର୍ତ୍ତକୀ, ବାଦ୍ୟକାରିଣୀ, ହଜାର ହଜାର ସଂଖ୍ୟାରେ ଚିତ୍ରକେତୁଙ୍କ ମନୋରଞ୍ଜନ କରୁଥିଲେ । ନିଜର ଯୋଗ ପ୍ରଭାବରେ ଏହି ସବୁ ଭୋଗକୁ ନିଷ୍କାମ ଚିତ୍ତରେ ଉପଭୋଗ କରି ଚିତ୍ରକେତୁ ଆନନ୍ଦରେ ଥିଲେ । କେତେବେଳେ ସେ ଇନ୍ଦ୍ରଲୋକକୁ ଯାଉଥିଲେ ତ ଆଉ କେତେବେଳେ ବରୁଣଲୋକକୁ ଯାଉଥିଲେ । ଗନ୍ଧର୍ବଲୋକକୁ ଯାଇ ସଙ୍ଗୀତ ଶୁଣୁଥିଲେ ତ ସିଦ୍ଧଲୋକକୁ ଯାଇ ଆନନ୍ଦିତ ହେଉଥିଲେ । ସୁମେରୁ ପର୍ବତର ଗିରି କନ୍ଦରାରେ ବୁଲିବା ସଙ୍ଗେ ସଙ୍ଗେ ଗନ୍ଧର୍ବମାନଙ୍କ ଦ୍ୱାରା ଭଗବତ୍ ଲୀଳା ଅନୁଷ୍ଠାନ କରାଉଥିଲେ । ସୁନ୍ଦରୀ ବିଦ୍ୟାଧରୀମାନଙ୍କଦ୍ୱାରା ଶ୍ରୀହରିଙ୍କ ଯଶୋଗାନ କରାଇ ଆନନ୍ଦରେ ତାହା ଶୁଣୁଥିଲେ । ଏହା ଫଳରେ ନିଜର ଯୋଗ, ଐଶ୍ୱର୍ଯ୍ୟ, ଅବ୍ୟାହତ ରିଦ୍ଧି ବିଷୟରେ ତାଙ୍କ ମନରେ ଅଭିମାନ ଆସିଯାଇଥିଲା । କିନ୍ତୁ ଯେ ପ୍ରକୃତ ଭଗବଦ୍ ଭକ୍ତ ତାଙ୍କ ମନରେ ଅଭିମାନର ସ୍ଥାନ ନାହିଁ । ଯଦି କୌଣସି କାରଣରୁ ସେପରି ଅବସ୍ଥା ଘଟେ ତେବେ ପ୍ରଭୁ ମଧୁସୂଦନ ଶୀଘ୍ର ଭକ୍ତର ଅଭିମାନ ଦୂର କରିଥାନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବିଦ୍ୟାଧରମାନଙ୍କର ପ୍ରଭୁ ମହାରାଜ ଚିତ୍ରକେତୁ ସିଦ୍ଧ ତଥା ଗନ୍ଧର୍ବ ଚାରଣମାନଙ୍କଦ୍ୱାରା ନିଜର ସୁଯଶ ଶୁଣି ଶୁଣି ଇତସ୍ତତଃ ବୁଲୁଥିଲେ । ଦିନେ ସେ ଯାଇ ପହଞ୍ଚିଲେ କୈଳାସରେ । ସେଠାରେ ମୁନିମାନଙ୍କ ମଧ୍ୟରେ ବସିଥିବା ଭଗବାନ୍ ଭୂତନାଥଙ୍କୁ ଦେଖିଲେ । ଶିବଙ୍କ ପ୍ରତି ସମ୍ମାନ ଜଣାଇବା ପାଇଁ ସେ ବିମାନକୁ ନିମ୍ନଦିଗକୁ ନେଇ ଆସି ସେଇ ବିମାନରେ ବସି ଶିବଙ୍କୁ ଦର୍ଶନ କଲେ ଏବଂ ସେଇଠୁ ପ୍ରଣାମ ଜଣାଇଲେ ।"

ମହାଦେବ କୈଳାସର ଏକ ସୁମନୋହର ଶିଖରରେ ବିରାଜମାନ ଥିଲେ । ସନକାଦି ଊର୍ଦ୍ଧ୍ୱରେତା ଋଷି ବ୍ରହ୍ମର୍ଷିଗଣ ତାଙ୍କ ଚାରିପାଖରେ ବସିଥିଲେ । ଆକାଶରେ ନକ୍ଷତ୍ରମଣ୍ଡଳ ମଧ୍ୟରେ ରୋହିଣୀ ସହିତ ଚନ୍ଦ୍ର ଶୋଭା ପାଇଲା ପରି, ଶିବ-ପାର୍ବତୀଙ୍କ ସହିତ ମୁନିମଣ୍ଡଳୀ ମଧ୍ୟରେ ବସିଥିଲେ । ସିଦ୍ଧ, ଚାରଣ, ଗନ୍ଧର୍ବଗଣ ତାଙ୍କର ସ୍ତୁତିଗାନ କରୁଥିଲେ । ଭୂତ, ପ୍ରେତ, ପିଶାଚ, ଡାକିନୀ, ଯକ୍ଷ, ରାକ୍ଷସ, ଗନ୍ଧର୍ବ, ଗୁହ୍ୟକ ଆଦି ବିଭିନ୍ନ ସେବାରେ ତତ୍ପର ଥିଲେ । ସମସ୍ତେ ଶୁଭ୍ରଭସ୍ମ ବିଭୂଷିତ ହୋଇ ସୂର୍ଯ୍ୟଙ୍କ ପରି ଉଜ୍ଜ୍ୱଳ ଦେଖାଯାଉ-ଥିଲେ । ପଶୁପତିଙ୍କ ଜଟାରେ ଗଙ୍ଗାର ଲହରୀ ଖେଳିଯାଉଥିଲା । ମସ୍ତକରେ ଦ୍ୱିତୀୟାଚନ୍ଦ୍ର

ତିଳକ ସନ୍ଧାତ ଚକ୍ ଚକ୍ କରୁଥିଲା । ବାହୁରେ ରୁଦ୍ରାକ୍ଷର ମାଳା ବନ୍ଧା ଥିଲା । ଭଗବାନ୍ ଶିବଙ୍କ କୋଳରେ ତ୍ରୈଲୋକ୍ୟ ସୁନ୍ଦରୀ ଶିବା ଦିବ୍ୟ ବସ୍ତ୍ର ଓ ଆଭୂଷଣରେ ଭୂଷିତ ହୋଇ ବସିଥିଲେ । ଭଗବାନ୍ ବାମ ଭୁଜରେ ତାଙ୍କୁ ଆଲିଙ୍ଗନ କରିଥିଲେ । ଡାହାଣ ହାତ ଉଠାଇ ସେ ମୁନିମାନଙ୍କୁ ଉପଦେଶ ଦେଉଥିଲେ । ଶିବା ମହାଦେବଙ୍କ ବକ୍ଷସ୍ଥଳରେ ଲାଗି ରହିଥିଲେ । ପ୍ରେମ-ନିମଗ୍ନା ଭଗବତୀଙ୍କ ମୁଖରେ ବ୍ରହ୍ମାନନ୍ଦ ସୁଖ ଅନୁଭୂତିର ଚିହ୍ନ ଫୁଟି ଉଠୁଥିଲା । କିନ୍ତୁ ମୁନିମାନଙ୍କର ସେଥିପ୍ରତି ଧ୍ୟାନ ନ ଥିଲା । କାରଣ ସେମାନେ ଅର୍ଦ୍ଧ-ନାରୀଶ୍ୱର ନଟରାଜ ଶିବଙ୍କର ଉପାସକ ଥିଲେ । ସେମାନଙ୍କ ଦୃଷ୍ଟିରେ ଶିବ ଓ ଶିବାଙ୍କ ମଧ୍ୟରେ କୌଣସି ଭେଦଭାବନା ନଥିଲା । ଏକ ଶରୀରର ଦୁଇ ଅଙ୍ଗରୂପେ ଶିବ-ଶିବାଙ୍କୁ ସେମାନେ ଗ୍ରହଣ କରିଥିଲେ ।

ଭଗବାନ୍ ଶିବଙ୍କର ଏ ପ୍ରକାର ରୂପ ଦର୍ଶନଦ୍ୱାରା ବିଦ୍ୟାଧର ଚନ୍ଦ୍ରକେତୁଙ୍କ ମନରେ କୌଣସି ପ୍ରକାର ଆନନ୍ଦ ଜାତ ହେଲା ନାହିଁ । ଶିବ ସାଧାରଣ ସଦାଚାର ଲଙ୍ଘନ କରୁଛନ୍ତି ବୋଲି ତାଙ୍କ ମନରେ ଧାରଣା ହେଲା । ଅର୍ଦ୍ଧାଙ୍ଗିନୀ ଧର୍ମପତ୍ନୀଙ୍କୁ କୋଳରେ ବସାଇବା ଦୋଷାବହ ନୁହେଁ; କିନ୍ତୁ ସମସ୍ତଙ୍କ ସମ୍ମୁଖରେ ଏପରି ଆଚରଣ ଶୋଭନୀୟ ନୁହେଁ । ଏହା ଭାବି ମଧ୍ୟ ମହାରାଜ ଶିବଙ୍କୁ ପ୍ରଣାମ କରି ଚାଲିଯାଇଥାନ୍ତେ, ତେବେ କିଛି ଅସୁବିଧା ହୋଇ ନଥାନ୍ତା; କିନ୍ତୁ ଯୋଗ ଓ ଐଶ୍ୱର୍ଯ୍ୟ ମଦ ତାଙ୍କୁ ଘାରିଯାଇଥିଲା । ସେ ମୁନିଋଷି-ପରିପୂର୍ଣ୍ଣ ସଭାରେ ଆଲୋଚନାରେ ଲାଗିଗଲେ ।

ଭଗବାନ୍ ଅର୍ଦ୍ଧନାରୀଶ୍ୱର ଶିବଙ୍କ ଆଡ଼କୁ ଚାହିଁ ହସି ହସି ଏବଂ ଜଗଜ୍ଜନନୀ ପାର୍ବତୀଙ୍କୁ ଶୁଣାଇ ମହାରାଜ ଚନ୍ଦ୍ରକେତୁ କାହାରିକୁ ସମ୍ବୋଧନ ନ କରି କହିଲେ—"ଭଗବାନଙ୍କର କି ବିଚିତ୍ର ମାୟା । ଏହି ଶିବଙ୍କ ନାମ ମହାଦେବ, ଦେବାଧିଦେବ ଅର୍ଥାତ୍ ପଶୁ, ପକ୍ଷୀ, ମନୁଷ୍ୟ, ଦେବତା ସମସ୍ତଙ୍କ ମଧ୍ୟରେ ସେ ଶ୍ରେଷ୍ଠ । ସମସ୍ତ ଧର୍ମର ସେ ଆଚାର୍ଯ୍ୟ । ତାଙ୍କର ବାକ୍ୟ ପ୍ରମାଣ ରୂପେ ଉଦ୍ଧୃତ କରାଯାଏ । ସେ ସର୍ବଧର୍ମର ବକ୍ତା, ଉପଦେଷ୍ଟା ଓ ଗୁରୁ । ତାଙ୍କର ଅନ୍ୟ ନାମ ସଦାଶିବ, ଜଗଦ୍‌ଗୁରୁ । ଏସବୁ ସତ୍ତ୍ୱେ ଆଚରଣ ଏପରି ନିମ୍ନସ୍ତରର ଯେ ସାଧାରଣ ମନୁଷ୍ୟ ସମାଜରେ ଏହା ଦେଖାଯାଏ ନାହିଁ । ମୁନି, ଋଷି-ପୂର୍ଣ୍ଣ ସଭାରେ ନିଜର ସ୍ତ୍ରୀକୁ କୋଳରେ ବସାଇ ତାଙ୍କୁ ଆଲିଙ୍ଗନ କରି ବସିଛନ୍ତି ।"

ଏହାଦ୍ୱାରା ମୁଁ ଶିବଙ୍କ ନିନ୍ଦାଗାନ କରୁନାହିଁ । ସେ ତ ମହାତପସ୍ୱୀ, ତପୋମୂର୍ତ୍ତି, ମୂର୍ତ୍ତିମାନ୍ ଧର୍ମ ଓ ବ୍ରହ୍ମଜ୍ଞାନୀମାନଙ୍କର ଅଗ୍ରଣୀ, ନିୟମ, ବ୍ରତ, ଜପ, ତପ, ସମାଧିର ସ୍ୱରୂପ ହେଉଛନ୍ତି ଶିବ । ତାଙ୍କର ଜଟାଭାର, ଭସ୍ମବିଲେପିତ ଶରୀର ତପସ୍ୱୀର ଚିହ୍ନ । ତାଙ୍କର ତପୋବଳ କେତେ, ସେ କେତେ ତେଜସ୍ୱୀ ତାହା ତାଙ୍କ ସଭାରେ ଉପସ୍ଥିତ ସନକାଦି ଋଷିମାନଙ୍କଦ୍ୱାରା ପ୍ରମାଣିତ । ଏହି ସଭାରେ ସିଦ୍ଧ, ଚାରଣ, ଗନ୍ଧର୍ବ, ଦେବତା, ଋଷି, ମୁନି ଓ ଲୋକପାଳମାନେ ବିରାଜିତ ଅଛନ୍ତି । ସମସ୍ତଙ୍କ ମଧ୍ୟରେ ଶିବ ଉଚ୍ଚ ଆସନରେ ବସିଛନ୍ତି ।

ସଭାର ସେ ହେଉଛନ୍ତି ସମ୍ମାନନୀୟ ସଭାପତି । ଏ ସମସ୍ତ ଥିବା ସତ୍ତ୍ୱେ ସାଧାରଣ ପୁରୁଷ ପରି, ଜଣେ କାମୁକ ପରି ଭଗବାନ୍ ଶିବ ନିର୍ଲଜ୍ଜ ଭାବରେ ନଗ୍ନ କୋଳରେ ନିଜର ସ୍ତ୍ରୀଙ୍କୁ ବସାଇ ସର୍ବସମକ୍ଷରେ କିପରି ବସିଛନ୍ତି ତାହା ମୁଁ ଭାବି ପାରୁନାହିଁ ।"

ନିଜର ଧର୍ମପତ୍ନୀଙ୍କୁ କୋଳରେ ବସାଇବା ଦୋଷାବହ ନୁହେଁ । କିନ୍ତୁ ଏହା ଯେ ଲୋକ ମର୍ଯ୍ୟାଦା ଓ ସାଧାରଣ ସଦାଚାର ବିରୋଧୀ ହେଉଛି, ସେଥିରେ ସନ୍ଦେହ ନାହିଁ । ସାଧାରଣ ବିଷୟୀ-ପୁରୁଷ ନିଜର ଧର୍ମପତ୍ନୀଙ୍କ ସହିତ ଏ ପ୍ରକାର ଆଚରଣ ଏକାନ୍ତରେ କରିଥାନ୍ତି । ସର୍ବସମକ୍ଷରେ ସ୍ତ୍ରୀମାନେ ନିଜର ପତିଙ୍କୁ ଦେଖି ଲଜ୍ଜା ଅନୁଭବ କରନ୍ତି ଓ ଅନ୍ତରାଳରେ ରହନ୍ତି । କିନ୍ତୁ ଏତେବଡ଼ ବ୍ରତଧାରୀ ଓ ତପସ୍ୱୀ ହୋଇ ମଧ୍ୟ ସର୍ବସମକ୍ଷରେ ନିର୍ଲଜ୍ଜଭାବେ ନିଜ ସ୍ତ୍ରୀଙ୍କୁ କୋଳରେ ବସାଇବା ସଦାଚାର ବିରୁଦ୍ଧ ହେଉ ନାହିଁକି ?

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବିଦ୍ୟାଧରାଧିପ ଚିତ୍ରକେତୁଙ୍କ ବ୍ୟଙ୍ଗ-ପୂର୍ଣ୍ଣ ଉକ୍ତି ଶୁଣି ସଭାରେ ଉପସ୍ଥିତ ଥିବା ସମସ୍ତେ ଅସନ୍ତୁଷ୍ଟ ହୋଇପଡ଼ିଲେ । କିନ୍ତୁ ସଭାର ନିୟମ ଅନୁସାରେ ସଭାପତିଙ୍କ ଅନୁମତି ବିନା କେହି କିଛି କହିବା ଉଚିତ ନୁହେଁ । କୌଣସି ପ୍ରସଙ୍ଗରେ ଉତ୍ତର ପ୍ରତ୍ୟୁତ୍ତର, ଖଣ୍ଡନ ମଣ୍ଡନ, ସଭାପତିଙ୍କ ଆଦେଶ ବିନା କିପରି ହେବ । ସେଥିପାଇଁ ସମସ୍ତେ ଭଗବାନ୍ ଶୂଳପାଣିଙ୍କ ମୁହଁକୁ ଚାହିଁ ରହିଲେ । ଭୋଳାନାଥ ଶିବ ଚିତ୍ରକେତୁଙ୍କ କଟାକ୍ଷପୂର୍ଣ୍ଣ କଥା ଶୁଣି ମଧ୍ୟ ଧୀର, ଗମ୍ଭୀର ହସରେ ହସି ଉଠିଲେ । ତାଙ୍କ ହାସ୍ୟର ଶୁଭ୍ରତାରେ ଚାରିଦିଗ ଧବଳ ହୋଇଗଲା ଓ ଆକାଶ ଗୁଞ୍ଜରି ଉଠିଲା । ସେହି ହସରେ ସେ ଜଣାଇଦେଲେ ଯେ ଚିତ୍ରକେତୁ ଏବେବି ବାଳକ ଅବସ୍ଥାରେ ଅଛନ୍ତି । ତେଣୁ ତାଙ୍କର କଥା ବିଚାରକୁ ନେବା ଉଚିତ ନୁହେଁ । ନିଜେ ସଭାପତି ଯେତେବେଳେ ଚିତ୍ରକେତୁଙ୍କ କଥାକୁ କୌଣସି ଗୁରୁତ୍ୱ ନ ଦେଇ ଉପେକ୍ଷା କଲେ ସେତେବେଳେ ସଭାସ୍ଥ ସଦସ୍ୟଗଣ କିଛି ଆଲୋଚନା ନ କରି ନୀରବ ରହିଲେ । କଥା ହେଉଛି, ବଡ଼ ଲୋକଙ୍କର ଗମ୍ଭୀରତା ଅଧିକ । ଯେ ନୂଆ ସାଧକ, ସେ ନୂତନ ବୈରାଗ୍ୟ ହେତୁ କିଛି ମାତ୍ରାରେ ଚଞ୍ଚଳ ହୁଏ । ବଡ଼ ଲୋକଙ୍କ ଆଚରଣରେ ସାମାନ୍ୟତମ ବ୍ୟତିକ୍ରମ ଦେଖିବାମାତ୍ରେ ନୂଆ ସାଧକ ବ୍ୟଙ୍ଗ କରିଥାନ୍ତି, ନ କହିବା କଥା ବି କହିପକାନ୍ତି । ଯେ ଗତ କାଲି ପର୍ଯ୍ୟନ୍ତ ଲଙ୍ଗଳା ହୋଇ ବୁଲୁଥିଲା ସେ ଆଜି ସାମାନ୍ୟ ସିଦ୍ଧିଲାଭ କରି ନିଜର ସୀମା ବାହାରକୁ ଯାଉଛି । ବଡ଼ ସାଧକମାନେ ଯେତିକି ପରିପକ୍ୱତା ହାସଲ କରନ୍ତି ସେତିକି ଧୀର, ସ୍ଥିର, ଗମ୍ଭୀର ହୋଇପଡ଼ନ୍ତି । ସମସ୍ତ ପ୍ରକାର ଚଞ୍ଚଳତା, ଶୃଙ୍ଖଳାହୀନତା, ବାକ୍ଦୂକତା ସେମାନଙ୍କଠାରୁ ଦୂରେଇଯାଏ । ତେଣୁ ସେମାନେ ଚିତ୍ରକେତୁଙ୍କ ଉପହାସ-ସୂଚକ କଟୁ ଉକ୍ତିର କୌଣସି ଉତ୍ତର ଦେଲେନାହିଁ । ତାଙ୍କ କଥାକୁ 'ଅରଣ୍ୟରୋଦନ' ପରି ଉପେକ୍ଷା କରାଗଲା ।"

ରାଜନ୍ ! ଶିବ ସିନା ଚିତ୍ରକେତୁଙ୍କ ଅବିନୟ, ଧୃଷ୍ଟତା ଓ ଅନୁଚିତ ବକ୍ତବ୍ୟକୁ କ୍ଷମା କରିଦେଲେ; କିନ୍ତୁ ପାର୍ବତୀ ପାରିଲେ ନାହିଁ । ସତୀ ନାରୀ ସମସ୍ତ ଦୁଃଖ ସହିପାରେ ମାତ୍ର

ତଶ୍ର ସମ୍ବନ୍ଧରେ ଅନୁଚିତ ମନ୍ତବ୍ୟକୁ ଆଦୌ ସହିପାରେ ନାହିଁ । ତେଣୁ ଜଗଜ୍ଜନନୀ ପାର୍ବତୀ ଉଚ୍ଛୃଙ୍ଖଳ ଚିତ୍ରକେତୁଙ୍କୁ ବାଳକତୁଲ୍ୟ ମନେକରି ଯଥାର୍ଥ ଶିକ୍ଷା ଓ ଉପଦେଶ ଦେବା ପାଇଁ ସ୍ଥିର କଲେ ।

## ଛପ୍ପୟ

ଖିଲଖିଲାୟ ହର ହଁସେ ନୃପତି କେ ବ୍ୟଙ୍ଗ ବଚନ ସୁନି ।
ନିରଖି ଶମ୍ଭୁ ମୁଖ ମୌନ ରହେ ସୁର ଅସୁର ଦେବ ମୁନି ।।
କିନ୍ତୁ ସହନ ନହୀଁ ଭୟେ କୁପିତ ଅତି ଭଈ ଭବାନୀ ।
ଜାନେୟା ହୈ ୟହ ଧୃଷ୍ଟ ନୀଚ ଅତିଶୟ ଅଭିମାନୀ ।।
ରୋଷ ସହିତ ବୋଲୀ ଶିବା, ହମରେ ପ୍ରଭୁ ଆୟେ ନୟେ ।
ବ୍ରହ୍ମା, ହରି, ନାରଦ, କପିଳ ୟେ ସବ ତୋ ବୂଢ଼େ ଭୟେ ।।



# ଚିତ୍ରକେତୁଙ୍କୁ ପାର୍ବତୀଙ୍କ ଅଭିଶାପ

ଏଷାମନୁଧ୍ୟେୟପଦାବ୍ଜଯୁଗ୍ମଂ ଜଗଦ୍‌ଗୁରୁଂ ମଙ୍ଗଳମଙ୍ଗଳଂ ସ୍ୱୟମ୍ ।
ଯଃ କ୍ଷତ୍ରବନ୍ଧୁ ପରିଭୂୟ ସୂରୀନ୍ ପ୍ରଶାସ୍ତି ଧୃଷ୍ଟସ୍ତଦୟଂ ହି ଦଣ୍ଡ୍ୟଃ ॥

(ଶ୍ରୀମଦ୍ଭାଗବତ—୬ସ୍କନ୍ଧ-୧୭ଅ-୧୩ଶ୍ଳୋ)

ଛପ୍‌ପୟ

ବ୍ରହ୍ମାଦିକ ନିତ ଲଟଖେଁ ନହିଁ ବରନେ ଶ୍ରୀ ଶିବକୁଁ ।
ଆପୁ ଧ୍ୟେୟ ଆଚାର୍ଯ୍ୟ ଧର୍ମ ସମୁଝାବତ ହମକୁଁ ॥
ଋଷି ମୁନି ସାଧକ ସିଦ୍ଧ ଆଇ ହର ପଦ ସିର ନାୱେଁ ।
ବିଦ୍ୟାଧର ପୁନି ତିନ୍ହେଁ ନିୟମ ଆଚାର ସିଖାୱେ ॥
ଅପରାଧୀ ବାଚାଲ ଅତି, ମାନୀ ପରମ ଅଶିଷ୍ଟ ହୈ ।
ଅତଃ ନୀଚ କ୍ଷତ୍ରିୟ ଅଧମ, ଦଣ୍ଡନୀୟ ଅତି ଦୁଷ୍ଟ ହୈ ॥

ମା' କେବେହେଲେ ପୁଅକୁ ଦଣ୍ଡ ଦେବାକୁ ଇଚ୍ଛା କରେ ନାହିଁ । ସେ ସବୁବେଳେ ପୁଅକୁ ଆଦର କରେ, ଗୃହରେ ତାକୁ ସ୍ନେହ କରେ ଓ ତା'ର ମୁହଁକୁ ବାରମ୍ବାର ଚୁମ୍ବନ କରେ । ପୁଅ ଖୁସିରେ ରହୁ ବୋଲି ମା' ସବୁବେଳେ ଇଚ୍ଛା କରେ । କିନ୍ତୁ ବାଳକ ଦୁଷ୍ଟାମି କଲେ, ଉଚ୍ଛୃଙ୍ଖଳ ହେଲେ ମା' ରାଗିଯାଏ, ଦଣ୍ଡ ଦେବାକୁ ବାଧ୍ୟ ହୁଏ । ବାଡ଼ି ନେଇ ବାଡ଼ାଏ ଓ ଦଉଡ଼ି ନେଇ ବାନ୍ଧିବାର ଅଭିନୟ କରେ । କିନ୍ତୁ ସେ କ୍ରୋଧ ଭିତରେ ଥାଏ ଅଗାଧ ସ୍ନେହ । କିନ୍ତୁ ପୁତ୍ରର ଅନିଷ୍ଟ କରିବାର ଭାବନା ତା'ର ନଥାଏ । କିନ୍ତୁ ସେ ଯେଉଁ ଅକ୍ଷମଣୀୟ ଅପରାଧ କଲା ତାହା ଆଉ ନକରୁ ବା ଅପରାଧ କର୍ମରେ ଲିପ୍ତ ହୋଇ ନ ପଡ଼ୁ ଏହାହିଁ ମା'ର ଦଣ୍ଡ ଦେବାର ପ୍ରଧାନ ଉଦ୍ଦେଶ୍ୟ । ତେଣୁ ସେ ଉପରେ କ୍ରୋଧ ପ୍ରକାଶପୂର୍ବକ ଦଣ୍ଡ ଦିଏ । ଗୁରୁଜନମାନଙ୍କର ତାଡ଼ନା ସମସ୍ତଙ୍କୁ ମିଳେନାହିଁ । କେବଳ ଭାଗ୍ୟବାନ୍ ଲୋକେ ସେ ପ୍ରକାର ଶାସନ ବା ଉପଦେଶ ଲାଭ କରନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ରାଜା ଚିତ୍ରକେତୁ ଯେତେବେଳେ ସଦାଶିବଙ୍କୁ ନାନା ପ୍ରକାର ଅକଥନୀୟ କଥା କହିଲେ, ସେତେବେଳେ ଶିବ ହସି ହସି କିଛି କହିଲେ ନାହିଁ । ସବୁକଥା ସେ ସିନା ହସରେ ଉଡ଼ାଇଦେଲେ କିନ୍ତୁ ଶିବା ସହିପାରିଲେ ନାହିଁ । ସେ

ନନ୍ଦୀଙ୍କୁ ନୀଚ କରି ଓ ଚନ୍ଦ୍ରକେତୁଙ୍କୁ ତିରସ୍କାରପୂର୍ଣ୍ଣ ଭାଷାରେ ଉଚ୍ଚ ବୋଲି କହି ବ୍ୟାଜସ୍ତୁତିରେ କହିବାକୁ ଆରମ୍ଭ କଲେ—"ଧନ୍ୟ, ଧନ୍ୟ ! ଆଜି ପର୍ଯ୍ୟନ୍ତ ଭଗବାନ୍ ଶିବଙ୍କର କୌଣସି ଶାସକ ନଥିବାରୁ ସେ ବଡ଼ ସ୍ୱେଚ୍ଛାଚାରୀ ହୋଇଯାଇଥିଲେ । ଯେତେବେଳେ ଯାହା ମନ ହେଉଥିଲା ସେହିପରି ଲୋକବିରୁଦ୍ଧ ଆଚରଣ କରୁଥିଲେ । ସୁଖର କଥା ଆଜି ଆମର ଜଣେ ନୂଆ ଶାସକ ସୃଷ୍ଟି ହୋଇଛନ୍ତି । ଆମପରି ଲଜ୍ଜାହୀନ ଓ ଅସଦାଚାରୀମାନଙ୍କର ସେ ପ୍ରଭୁ । ସେ ଆମ୍ଭମାନଙ୍କର ଚରିତ୍ର ସଂଶୋଧନ କରିବା ଉଚିତ । ସେ ଶାସକ, ସଂଶୋଧକ, ଉପଦେଶକ, ଧର୍ମପ୍ରବର୍ତ୍ତକ, ଦଣ୍ଡବିଧାୟକ ଓ ଜିତେନ୍ଦ୍ରିୟଙ୍କୁ ସଦାଚାରର ପଥ ପ୍ରଦର୍ଶନ କରିବାକୁ ଆସିଥିବାରୁ ଆମ୍ଭେମାନେ ଆନନ୍ଦିତ ।"

ପାର୍ବତୀଙ୍କ ପାଖରେ ଜୟା, ବିଜୟା ନାମରେ ଦୁଇ ସଖୀ ଥିଲେ । ସେ ଦୁହେଁ ଚାମର ଚାଳନା କରୁଥିଲେ । ଜୟା ଟିକିଏ ପ୍ରଗଲ୍ଭ ଥିଲା । ସେ ପାର୍ବତୀଙ୍କୁ ଶାନ୍ତ କରିବାକୁ ଯାଇ କହିଲା—"ମହାରାଣୀ ! ଛାଡ଼ନ୍ତୁ ସେ କଥା । ଭଗବାନ୍ ତ କିଛି କହିଲେ ନାହିଁ । ସେ ଯାହା କହୁଛନ୍ତି ତାହା ଲୌକିକ ଧର୍ମର କଥା । ସେଥିରେ ଆମର କହିବାର କିଛି ନାହିଁ ।"

କ୍ରୋଧରେ ଜର୍ଜରିତ ହୋଇ ଭଗବତୀ ଶୈଳକୁମାରୀ କହିଲେ—"କଥାଟା ଧର୍ମର କି ଅଧର୍ମର ସେକଥା ଥାଉ । ରାଜା ଚନ୍ଦ୍ରକେତୁ ଜଣେ ବଡ଼ ଧର୍ମାତ୍ମା । ସେ ସବୁ ଧର୍ମର ପ୍ରଚାର ପାଇଁ ଠିକା ନେଇଛନ୍ତି । ଯେ ବେଦର ପ୍ରକାଶକ, ଯେ ସୃଷ୍ଟିକର୍ତ୍ତା, ଅଯୋନିଜ, ଧର୍ମପ୍ରବର୍ତ୍ତକ, ସମସ୍ତଙ୍କର ପିତାମହ ସେହି ବ୍ରହ୍ମା କଣ ଧର୍ମର ମର୍ମ ଜାଣନ୍ତି ? ତାଙ୍କ ଆଗରେ ଶିବ କଣ ଏପରି ଆଚରଣ କରନ୍ତି ନାହିଁ ? କମଳଯୋନି ବ୍ରହ୍ମା କେବେ କଣ ଏହାର ଆଲୋଚନା କରିଛନ୍ତି । ଏ ଦୁଷ୍ଟ ଭଗବାନ୍ ଭୃଗୁଠାରୁ ମଧ୍ୟ ତେଜସ୍ୱୀ ଓ ତପସ୍ୱୀ ପାଲଟିଗଲା । ଯେ ପ୍ରଜାପତି, ଯାହାଙ୍କୁ ସୁର, ଅସୁର ସମସ୍ତେ ପ୍ରଣାମ କରନ୍ତି, ଯେ ସର୍ବଲୋକ ବନ୍ଦନୀୟ ଓ ପୂଜନୀୟ ସେହି ଭୃଗୁଠାରୁ ଏ କଣ ବଡ଼ ? ତାଙ୍କଠାରୁ ବଡ଼ ଯଶସ୍ୱୀ ଓ ତପସ୍ୱୀ କିଏ ଅଛି ? ଏତଦ୍‌ବ୍ୟତୀତ ବଶିଷ୍ଠ, ପୁଲହ, କ୍ରତୁ, ଅଙ୍ଗିରା, ଅତ୍ରି, ମରୀଚି ବ୍ରହ୍ମାଙ୍କ ପୁତ୍ର । ସେମାନେ ପ୍ରଜାପତି ସ୍ଥାନୀୟ । ସେମାନେ କଣ ଶିବଙ୍କର ଏ ପ୍ରକାର ଅଭିନୟକୁ ବୁଝିପାରି ନାହାନ୍ତି ?"

ଆମ ଆଗରେ ବାଳକ ରୂପରେ ସନକ, ସନନ୍ଦନ, ସନାତନ, ସନତ୍କୁମାର ଆଦି ବସିଛନ୍ତି । ଏମାନେ ତ ଶିବଙ୍କ ଅଗ୍ରଜ ସ୍ଥାନୀୟ, ସମସ୍ତଙ୍କର ପୂଜନୀୟ, ବନ୍ଦନୀୟ ଏବଂ ଚନ୍ଦ୍ରକେତୁଙ୍କ ପୂର୍ବଜଙ୍କ ପୂର୍ବଜମାନଙ୍କର ଅର୍ଚ୍ଚନୀୟ । ଏମାନେ ସମସ୍ତେ ବାଳକ ବ୍ରହ୍ମଚାରୀ । ସେମାନେ କେବେହେଲେ ସ୍ତ୍ରୀଲୋକଙ୍କୁ ସ୍ପର୍ଶ କରି ନାହାନ୍ତି । ଶିବଙ୍କର ଏହି ଲୀଳା ଯଦି ଅନୁଚିତ ଓ ସଦାଚାର ବିରୁଦ୍ଧ ହୋଇଥାନ୍ତା ତେବେ ସେମାନେ ଏପରି ହାତଯୋଡ଼ି ସଭାରେ ବସିଛନ୍ତି କାହିଁକି ?

ତ୍ରୈଲୋକ୍ୟ ବନ୍ଦିତ ବାଳବ୍ରହ୍ମଚାରୀ ଦେବର୍ଷି ନାରଦ ପାଖରେ ବୀଣା ଥୋଇ ହାତ ଯୋଡ଼ି ବସିଛନ୍ତି । ସେ ସମସ୍ତ ବିଦ୍ୟାର ଆଚାର୍ଯ୍ୟ ଓ ସଦାଚାରର ପ୍ରବର୍ତ୍ତକ । ସେ ଭକ୍ତିର

ସଂସ୍ଥାପକ ଭଗବାନଙ୍କ ଅବତାର ସ୍ୱରୂପ । ସଦାଶିବଙ୍କ ଆଚରଣକୁ ଯଦି ସେ ନୀତିଛି ଆଚରଣ ବୋଲି ଭାବୁଥାଆନ୍ତେ ଓ ମର୍ଯ୍ୟାଦା ବିରୁଦ୍ଧ ବୋଲି ଅନୁଭବ କରୁଥାଆନ୍ତେ ତେବେ ଏଠାକୁ ଆସି ଶିବଙ୍କୁ ନାନା ପ୍ରଶ୍ନ କରୁଛନ୍ତି କପରି ? କାହିଁକି ଶିବଙ୍କ ଉପାସନା କରୁଛନ୍ତି ?

ଯୋଗୀଶ୍ୱରମାନଙ୍କର ପ୍ରଭୁ ଭଗବାନ୍ କପିଳଙ୍କୁ ଜ୍ଞାନାବତାର ଓ ସତ୍ୟଯୁଗର ଯୁଗାବତାର ବୋଲି କୁହାଯାଏ । ସଂସାରରେ ତାଙ୍କଠାରୁ ବଡ଼ ଜ୍ଞାନୀ କିଏ ଅଛି ? ତାଙ୍କ ଜ୍ଞାନର ଗଭୀରତା କିଏ ମାପି ପାରିବ ? କାମ, ଇଚ୍ଛା ଓ ବିଷୟଭୋଗର ଅଭିଳାଷ ତାଙ୍କୁ ସ୍ପର୍ଶ କରିପାରି ନାହିଁ । ସେ ନିଜେ ଆସି ଶିବଙ୍କ ପାଦତଳେ ମୁଣ୍ଡ ଗଡ଼ାଉଛନ୍ତି । ସେ ନିଜେ ଭଗବାନ୍ ଶିବଙ୍କଠାରୁ ଶିକ୍ଷାଗ୍ରହଣ କରୁଛନ୍ତି, ଧର୍ମର ମର୍ମ ବୁଝୁଛନ୍ତି । ଯଦି ସେ ଶିବଙ୍କୁ ଅସଦାଚାରୀ ବୋଲି ଜାଣିଥାନ୍ତେ ତେବେ ଏଠାକୁ ଆସି ତାଙ୍କୁ ବନ୍ଦନା କରନ୍ତେ କି ? ଯୋଗେଶ୍ୱର କପିଳ ଶ୍ରଦ୍ଧା ଓ ଭକ୍ତିର ସହିତ କାହିଁକି ଶିବଙ୍କ ଉପାସନା କରୁଛନ୍ତି ?

ରାଜବଂଶଗୁଡ଼ିକର ପ୍ରବର୍ତ୍ତକ ସ୍ୱୟଂ ଭଗବାନ୍ ସ୍ୱାୟମ୍ଭୁବମନୁ ଏଠାରେ ବସିଛନ୍ତି । ଆହୁରି ଅନେକ ମନ୍ୱନ୍ତରର ଶାସନକର୍ତ୍ତା ଓ ଶାସକ ଥିବା ମନୁଗଣ ଏଠାରେ ଉପସ୍ଥିତ ଅଛନ୍ତି । ଯେଉଁମାନେ ଚିତ୍ରକେତୁଙ୍କ ବାପର ବାପାଙ୍କ ପୂଜନୀୟ ଓ ମାନନୀୟ ସେମାନେ ବି ଏଠାରେ ବସିଛନ୍ତି । କେହି ତ କେବେ ଶିବଙ୍କ ବ୍ୟବହାରକୁ ଧର୍ମ-ବିରୁଦ୍ଧ ବୋଲି କହି ନାହାନ୍ତି । ତେବେ ଏହି ଏକମାତ୍ର ସଦାଚାରୀ, ଧର୍ମାତ୍ମା, କ୍ଷତ୍ରିୟ ଧର୍ମର ପ୍ରବର୍ତ୍ତକ କଣ ଜନ୍ମଗ୍ରହଣ କଲେ ଶିବଙ୍କ ଆଚରଣ ଦୋଷ ପ୍ରଖ୍ୟାପନ ପାଇଁ ?

ମଣିଷ ନିଜେ ଯେପରି ହୁଏ ସେହିପରି ସେ ଅନ୍ୟକୁ ଭାବେ । ଆଖିରେ ଯେଉଁ ରଙ୍ଗର କାଚ ଲଗାଇବ ସଂସାର ସେହି ରଙ୍ଗର ଦେଖାଯିବ । ତେଣୁ ସେ ନିଜେ କ୍ରୂର ସ୍ୱଭାବର ହୋଇଥିବାରୁ ସର୍ବତ୍ର କ୍ରୂରତା ହିଁ ତାଙ୍କ ଦୃଷ୍ଟିରେ ପଡ଼ୁଛି ।

ଜୟା କହିଲା—"ମହାରାଣୀ ! ସେ ତ ଆପଣଙ୍କର ପୁଅ, ତାଙ୍କୁ କ୍ଷମା କରି ଦିଅନ୍ତୁ ।"

ଭଗବତୀ କ୍ରୋଧପୂର୍ଣ୍ଣ ସ୍ୱରରେ କହିଲେ—"କ୍ଷମା କଲାଭଳି ଅପରାଧ କରିଥିଲେ ମୁଁ ନିଶ୍ଚୟ କ୍ଷମା ଦେଇଥାନ୍ତି । କିନ୍ତୁ ସେ ତ ଅକ୍ଷମଣୀୟ ଅପରାଧ କରିଛି । ଯେ ସମସ୍ତ ମଙ୍ଗଳର ମଙ୍ଗଳ ସ୍ୱରୂପ, ମୂର୍ତ୍ତିମାନ୍ ମଙ୍ଗଳମୟ, ସର୍ବଲୋକ-ଗୁରୁ ସେହି ଶଙ୍କରଙ୍କୁ ଯେ ନିର୍ଭୟରେ ଦମ୍ଭପୂର୍ଣ୍ଣ ସଭାରେ ସମସ୍ତଙ୍କ ଆଗରେ ଅପମାନ କରିଛି, ତାଙ୍କ କାର୍ଯ୍ୟକୁ ନିନ୍ଦା କରିଛି, ତାଙ୍କୁ ଶାସନ କରିଛି, ତାକୁ କ୍ଷମା ଦେବାର ପ୍ରଶ୍ନ ଉଠୁନାହିଁ । ସବୁ ପାପୀଙ୍କର ନିଷ୍କୃତି ଥିଲେ ବି ଗୁରୁଦ୍ରୋହୀର ନିଷ୍କୃତି ନାହିଁ । ଆଜି ଯଦି ତାକୁ ମୁଁ କ୍ଷମା କରିଦେବି ତେବେ ଅନ୍ୟମାନେ ମଧ୍ୟ ଏହିପରି ଅପରାଧ କରିବେ । ଏପରି ଅପରାଧ ଦ୍ୱାରା ସେମାନେ କୋଟି କୋଟି କଳ୍ପ ଯାଏ ନରକ ଅଗ୍ନିରେ ଦଗ୍ଧୀଭୂତ ହେବେ । ଏଣୁ କ୍ଷମାଭିକ୍ଷା କରିବା ଦ୍ୱାରା ଏହାର ମଙ୍ଗଳ ହେବ ନାହିଁ କି ସଂସାରର ମଧ୍ୟ ମଙ୍ଗଳ ହେବନାହିଁ । ଯଦି କରିଥିବା ଅପରାଧ ହେତୁ ହାତେ ହାତେ ଦଣ୍ଡ ମିଳିଯିବ ତେବେ ସେ ଘୋର ପାପରୁ ମୁକ୍ତ ହେବ ଓ ସଂସାର ଲୋକେ

ସାବଧାନ ହେବେ । ସମସ୍ତେ ଜାଣିପାରିବେ ଶିବନିନ୍ଦାକାରୀର କୌଣସି ପ୍ରକାର କଲ୍ୟାଣ ସାଧିତ ହୁଏନାହିଁ । ଆଜ୍ଞାର ଦେଖ, ଏହାର ଅଭିମାନ କେତେ ? ଯେଉଁ ଶିବଙ୍କର ଅରୁଣ ଚରଣ କମଳକୁ ଧ୍ୟାନ କରି ବ୍ରହ୍ମାଦି ଦେବଗଣ ନିଜକୁ କୃତାର୍ଥ ମନେକରନ୍ତି, ସେହି ଶିବଙ୍କ ପ୍ରତି ତା' ମନରେ ଦ୍ୱେଷଭାବ ରହିଛି । ଏପରି ଅଭିମାନୀ ପୁରୁଷ ଭକ୍ତଭୟହାରୀ ଭଗବାନ୍ ବିଷ୍ଣୁଙ୍କ ଚରଣ ତଳେ ରହିବା ପାଇଁ ଯୋଗ୍ୟ ନୁହେଁ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପାର୍ବତୀ ଏପରି କହିବା ସମୟରେ ସଭାରେ ଥିବା ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ଓ ଚମକି ପଡ଼ିଲେ । ମାତା ପାର୍ବତୀ ଏହି ଅଶିଷ୍ଟ ବିଦ୍ୟାଧରକୁ କି ଅଭିଶାପ ଦେବେ ତାହା ଭାବିପାରିଲେ ନାହିଁ ।" ଏହି ସମୟରେ ପାର୍ବତୀ କହିଲେ—"ବାବୁ ! ତୋତେ କିଣ ଅଭିଶାପ ଦେବି । ତୁ ଆସୁରୀଭାବର ବଶୀଭୂତ ହୋଇ ଏପରି ଅଶିଷ୍ଟ ବ୍ୟବହାର କରିଛୁ ବୋଲି ମୁଁ ଜାଣେ । ସେଥିପାଇଁ ତୋର ବିପରୀତ ବୁଦ୍ଧି ଜାତ ହୋଇଛି । ତେଣୁ କିଛି ଦିନ ପାଇଁ ତୁ ଅସୁର ହୋଇଯା' । ତୋତେ ଆସୁରୀ ଯୋନିରେ ପୁଣି ଜନ୍ମ ଗ୍ରହଣ କରିବାକୁ ପଡ଼ିବ । ତୁ ସେଠାରେ ମନ ଇଚ୍ଛା ଦେବତାଙ୍କୁ ନିନ୍ଦା କରିବୁ ଓ ଶତ୍ରୁତା କରିବୁ । ଆସୁରୀ ଯୋନି ଭୋଗ କରି ସାରିବା ପରେ ତୋର ଶୁଦ୍ଧି ଘଟିବ । ବାବୁ ! ମୁଁ ତୋତେ ଏପରି ଅଭିଶାପ ଦେବାର କାରଣ ହେଉଛି, ତୁ ପୁଣି ମହାପୁରୁଷମାନଙ୍କ ନିନ୍ଦା ରୂପକ ଅପରାଧ କରିବାକୁ ସାହସ କରିବୁ ନାହିଁ ।"

ରାଜନ୍ ! ପାର୍ବତୀଙ୍କ ଅଭିଶାପ ଶୁଣି ସମସ୍ତେ ସାଧୁ ସାଧୁ କହି ତାହାକୁ ସମର୍ଥନ କଲେ । ସମସ୍ତେ ଦେଖିଲେ ଅଭିଶାପ ପାଇ ମଧ୍ୟ ଚିତ୍ରକେତୁଙ୍କ ମୁଖରେ ଟିକିଏ ହେଲେ ବି ବିମର୍ଷଭାବ ସୃଷ୍ଟି ହେଲା ନାହିଁ । ସେ ପୂର୍ବପରି ପ୍ରସନ୍ନ ମୁଖରେ ଥାନ୍ତି । ଶାପବାକ୍ୟ ଶୁଣିବା ମାତ୍ରେ ସେ ଗମ୍ଭୀର ହୋଇ ନିଜ ବିମାନରୁ ଓହ୍ଲାଇ ଆସିଲେ ଓ ନମ୍ରତାର ସହିତ ପାର୍ବତୀଙ୍କୁ ପ୍ରସନ୍ନ କରିବା ପାଇଁ ତାଙ୍କ ପାଦତଳେ ପଡ଼ିଗଲେ ।

## ଛପ୍ପୟ

ଦ୍ୟୋ କହି ଦୀନ୍ୟୋ ଶାପ ଶିବା ନେ ଶିକ୍ଷା କେ ହିତ ।
ଅଧମ ଆସୁରୀ ଯୋନି ପାଇ ଫଲ ଭୋଗେ ପରିମିତ ॥
କରେ ନ ଶିବ ଅପରାଧ ଅଧିକ ଅପମାନ କହୀଁ ତୂ ।
ବିଷ୍ଣୁ ଚରଣ କୀ ଶୁଦ୍ଧ ଦାସତା ଜୋଗ ନହୀଁ ତୂ ॥
ଶୋକ ମୋହ କଛୁ ନହୀଁ ଭୟୋ, ଶମ୍ଭୁ ପ୍ରିୟା କୋ ଶାପ ସୁନି ।
ବଚନ ସତୀ ସନ ସୁହୃ କହ୍ୟୋ, ଚିତ୍ରକେତୁ ପଦ ବନ୍ଦି ପୁନି ॥



# ସୁଖ-ଦୁଃଖରେ ଚିତ୍ରକେତୁଙ୍କ ସମଭାବ

ପ୍ରତିଗୃହ୍ଣାମି ତେ ଶାପମାତ୍ମନୋଽଞ୍ଜଲିନାମ୍ବିକେ ।
ଦେବୈର୍ମର୍ତ୍ତ୍ୟାୟ ଯତ୍ପ୍ରୋକ୍ତଂ ପୂର୍ବଦିଷ୍ଟଂ ହି ତସ୍ୟ ତତ୍ ॥
ଅଥ ପ୍ରସାଦୟେ ନ ତ୍ୱାଂ ଶାପମୋକ୍ଷାୟ ଭାମିନି ।
ଯନ୍ମନ୍ୟସେ ଅସାଧୂକ୍ତଂ ମମ ତତ୍ କ୍ଷମ୍ୟତାଂ ସତି ॥

(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୭ଅ-୧୭, ୨୪ ଶ୍ଳୋ)

**ଛପ୍ପୟ**

ମାତୁ ତୁହ୍ମାରେ ଶାପ ହଈ ଯୁତ ଗ୍ରହଣ କରୂଂ ମୈଂ ।
ପରମ ଅନୁଗ୍ରହ ମାନି ଶୀଶ ନିଜ ଜନନି ଧରୂଁ ମୈଂ ॥
ଶାପ ଅନୁଗ୍ରହ ଦେବ ନହୀଁ ସ୍ୱେଚ୍ଛା ତେଁ ଦେୱେଂ ।
କରେ ପୂର୍ବ ଜସ କର୍ମ ଉନ୍ହେ ଈ ସବ ଜନ ଲେୱେଂ ॥
ଚକ୍ର ସରସ ସଂସାର ମହଁ, ସୁଖ-ଦୁଃଖ ଆୱତ ଭାଗ୍ୟବଶ ।
ଶାପ ଅନୁଗ୍ରହ କେ ନିମିତ୍ତ, କର୍ମ କରେ ନର ହ୍ୱୈ ଅବଶ ॥

ଭକ୍ତ ପ୍ରଭୁଙ୍କଠାରୁ ମୋକ୍ଷ ଇଚ୍ଛା କରନ୍ତି ନାହିଁ କି ଦେବଯୋନି ଚାହାନ୍ତି ନାହିଁ । ଗତାଗତରୁ ମୁକ୍ତି ମଧ୍ୟ ଚାହାନ୍ତି ନାହିଁ । ପ୍ରଭୁଙ୍କ ପାଦପଦ୍ମରେ କିପରି ଅଚଳା ଭକ୍ତି, ସୁଦୃଢ଼ ଅନୁରକ୍ତି ଜାତ ହେବ ତାହାହିଁ ସେମାନେ ପ୍ରାର୍ଥନା କରନ୍ତି । ସେମାନେ ଆର୍ତ୍ତିଭାବେ ନିଜର ଇଷ୍ଟଙ୍କ ପାଦପଦ୍ମରେ କାନ୍ଦି କାନ୍ଦି ପ୍ରାର୍ଥନା କରନ୍ତି—'ହେ ପ୍ରଭୋ ! ମୋର ହଜାରେ ବା ଲକ୍ଷେ ଯୋନିରେ ଜନ୍ମ ହେଉ । ଶ୍ୱାନ, ଶୂକର, ଖର, ଚଣ୍ଡାଳ ଯେ କୌଣସି ଯୋନିରେ ଜନ୍ମ ମିଳୁ, ପୃଥିବୀ, ସ୍ୱର୍ଗ, ପାତାଳ ବା ନରକ ବା ଅନ୍ୟ କୌଣସି ଭୟପ୍ରଦ ଲୋକରେ ରହିବା ପାଇଁ ପଡ଼ୁ, ଏସବୁ ପାଇଁ ମୁଁ ପ୍ରସ୍ତୁତ । ମୋର ପ୍ରାରବ୍ଧ ଓ ସଞ୍ଚିତ କର୍ମଫଳ ତୁଟାଇ ଦେବା ପାଇଁ ମୁଁ ପ୍ରାର୍ଥନା କରିବ ନାହିଁ ।"

ହେ ଅଶରଣର ଶରଣ ! ହେ ଭକ୍ତଭୟ ଭଞ୍ଜନ ! ହେ ଶରଣାଗତ ପ୍ରତିପାଳକ ! ଆପଣଙ୍କ ଚରଣକମଳ ତଳେ ମୁଁ ଏହି ପ୍ରାର୍ଥନା କରୁଛି ଯେ ମୋର ଯେ କୌଣସି ଯୋନିରେ ଜନ୍ମ ହେଲେ ମଧ୍ୟ ମୁଁ ଆପଣଙ୍କର ଭକ୍ତ ହୋଇ ରହିବ । ପ୍ରଭୋ ! ଏହି ଭିକ୍ଷା ମୋତେ ଦିଅ

ମୋର ଭକ୍ତି ସୁଦୃଢ଼ ହେଉ । ମରଣ ସମୟରେ ଆପଣଙ୍କ ଚରଣ କମଳ ମୋର ମନେ ରହୁ । ଏହି କାରଣରୁ ଭକ୍ତ ଯୁଆଡ଼େ ଯାଏ ସେଠାରେ ବୈକୁଣ୍ଠ ତିଆରି ହୋଇଯାଏ । ସେମାନେ ନିଜେ ତରିଯାଆନ୍ତି ଏବଂ ସାଙ୍ଗସାଥୀଙ୍କୁ ମଧ୍ୟ ଉଦ୍ଧାର କରନ୍ତି । ଭକ୍ତଠାରେ ଘୃଣାର ସ୍ଥାନ ଆଦୌ ନାହିଁ । ସେମାନେ ସର୍ବତ୍ର ନିଜର ଇଷ୍ଟଙ୍କୁ ଦର୍ଶନ କରିଥାନ୍ତି । ଇଷ୍ଟ-ପ୍ରାପ୍ତି ହିଁ ପରମ ସିଦ୍ଧିର କାରଣ । ଇଷ୍ଟପ୍ରାପ୍ତି ହିଁ ତା'ର ଲକ୍ଷ୍ୟ । ତେଣୁ ଅସୁର, ରାକ୍ଷସ, ଭୂତ, ପ୍ରେତ, ପିଶାଚ, ପଶୁ, ପକ୍ଷୀ କାହାରି ପ୍ରତି ଦ୍ୱେଷଭାବନା ଭକ୍ତ ମନରେ ନଥାଏ । ଇଷ୍ଟ ସର୍ବତ୍ର ବିଦ୍ୟମାନ ଓ ସର୍ବବ୍ୟାପୀ । ଆମେ ଯେଉଁଠି ରହିବୁ ତାହା ମଧ୍ୟ ଇଷ୍ଟଙ୍କ ଘର । ଆମର ମନ ତାଙ୍କର ପାଖରେ ଲୀନ । ଏଣୁ ଭକ୍ତ ଭଗବଦ୍ ଭକ୍ତି ବ୍ୟତୀତ ଅନ୍ୟ କୌଣସି ବିଷୟରେ ଆଶା ରଖେନାହିଁ । କେହି ଅନୁଗ୍ରହ କଲେ ଆନନ୍ଦ ହେବାର ନାହିଁ କି ଶାପ ଦେଲେ ମଧ୍ୟ ଦୁଃଖିତ ହେବାର ନାହିଁ । କାରଣ ଏସବୁ ଦୈବଗତି ଏବଂ କର୍ମଫଳ ଅନୁସାରେ ଘଟିଥାଏ । ତେଣୁ ଆନନ୍ଦ ବା ଦୁଃଖ କରିବାରେ ଲାଭ କଣ ହେବ ?

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବତୀ ପାର୍ବତୀଙ୍କ ଅଭିଶାପ ଶୁଣି ମହାରାଜ ଚନ୍ଦ୍ରକେତୁ ଯେତେବେଳେ ତାଙ୍କ ପାଦତଳେ ପଡ଼ିଲେ ସେତେବେଳେ ସମସ୍ତେ ଭାବିଲେ ଯେ ବିଦ୍ୟାଧରମାନଙ୍କ ଅଧିପତି ଶାପ ପାଇ ଡରି ଯାଇଛନ୍ତି ।" ଏହି ଭ୍ରମ ଦୂର କରିବା ପାଇଁ ମହାରାଜ ଚନ୍ଦ୍ରକେତୁ ବିନୀତ ଭାବରେ କହିଲେ—'ହେ ଜଗଜ୍ଜନନୀ ! ମୁଁ ତୁମର ଅଭିଶାପକୁ ଆନନ୍ଦର ସହିତ ସ୍ୱୀକାର କରୁଛି ।' ଆପଣ ଯେଉଁ ଅଭିଶାପ ଦେଇଛନ୍ତି ତାହା ସଫଳ ହେଉ ।"

ରାଜା ଚନ୍ଦ୍ରକେତୁଙ୍କ କଥା ଶୁଣି ପାର୍ବତୀ ଆଶ୍ଚର୍ଯ୍ୟ ହୋଇଗଲେ । ପୂର୍ବରୁ ନାରଦଙ୍କ ମୁଖରୁ ସେ ଶୁଣିଥିଲେ ଯେ ଚନ୍ଦ୍ରକେତୁ ଦକ୍ଷଙ୍କ ଅଭିଶାପକୁ ଖୁବ୍ ଆନନ୍ଦର ସହିତ ଗ୍ରହଣ କରିଥିଲେ । ଯେ କଥା ସିନା ସେ ଶୁଣିଥିଲେ ଏବେ ପ୍ରତ୍ୟକ୍ଷ ଭାବେ ତାହାହିଁ ଅନୁଭବ କଲେ । ଆଶ୍ଚର୍ଯ୍ୟାନ୍ୱିତ ହୋଇ ଗିରିରାଜ କୁମାରୀ ଦେବୀ ପାର୍ବତୀ କହିଲେ—"ବାବୁ ! ତୁ ତ ଖୁବ୍ ସାହସୀ ଅଛୁ । ଅନେକ ଆନନ୍ଦରେ ବରଦାନକୁ ସ୍ୱୀକାର କରିଥିବାର ଆମେ ଦେଖିଛୁ । କିନ୍ତୁ, ଅଭିଶାପକୁ ଆନନ୍ଦର ସହିତ ସ୍ୱୀକାର କରୁଥିବା କୌଣସି ବ୍ୟକ୍ତିକୁ ଆମେ ଆଜି ପର୍ଯ୍ୟନ୍ତ ଦେଖିନାହୁଁ । ତୁ ମୋ' ଅଭିଶାପକୁ ଏପରିଭାବେ ଗ୍ରହଣ କରିନେବାର କାରଣ କଣ ? ମୁଁ ତ ତୋର ଅନିଷ୍ଟ କରିଛି ।"

ପାର୍ବତୀଙ୍କ କଥା ଶୁଣି ବିନୀତଭାବେ ଚନ୍ଦ୍ରକେତୁ କହିଲେ—"ମା ! କୁପୁତ୍ର ଜନ୍ମହେବା ବିଚିତ୍ର ନୁହେଁ, ମାତ୍ର ମା' କେବେ କୁମାତା ହୁଏନାହିଁ । ଆପଣ କେବେହେଲେ ସନ୍ତାନର ଅନିଷ୍ଟ କରିପାରିବେ ନାହିଁ । ଆପଣଙ୍କ କଥା ଅଲଗା । କୌଣସି ପ୍ରାଣୀ କେବେହେଲେ କାହାରି ଅନିଷ୍ଟ କରି ପାରିବ ନାହିଁ କି ସୁଖ, ଦୁଃଖ ଦେଇପାରିବ ନାହିଁ । ସେହିପରି କେହି ନିଜ ଇଚ୍ଛାରେ କାହାକୁ ଅଭିଶାପ ଦିଏ ନାହିଁ କି ବର ଦିଏ ନାହିଁ । ପୂର୍ବଜନ୍ମରେ ଯେ ଯାହା କରିଥିବ ପ୍ରାରବ୍ଧାନୁସାରେ ତାକୁ ସୁଖ ବା ଦୁଃଖ ଭୋଗ କରିବାକୁ ପଡ଼ିବ ।

ଅଭିଶାପ ବା ବରଦାନ କରୁଥିବା ବ୍ୟକ୍ତି ନିମିତ୍ତମାତ୍ର । ଯାହା କିଛି ଘଟେ ତାହା ପ୍ରାରବ୍ଧ ଅନୁସାରେ ଘଟିଥାଏ । ମୋର ସେହିପରି କିଛି କର୍ମଫଳ ଥିବ ଏବଂ ଏଇଟି ହୁଏତ ପ୍ରାରବ୍ଧର ପରିସମାପ୍ତି ଘଟିବ । ଏଥିରେ ଆପଣଙ୍କର ଦୋଷ କଣ ? ମୁଁ ଯାହା କରିଥିବି ତା'ରି ଫଳ ମୋତେ ଭୋଗ କରିବାକୁ ପଡ଼ିବ । ଏହି ଜୀବ ମୋହଗ୍ରସ୍ତ ହୋଇ ନାନା ଯୋନିରେ ଜନ୍ମ ଗ୍ରହଣ କରି ସ୍ୱକୃତ କର୍ମ ଅନୁସାରେ ସୁଖ ଦୁଃଖ ଭୋଗ କରେ, ଜନ୍ମ ହୁଏ ପୁଣି ମୃତ୍ୟୁବରଣ କରେ । ତେଣୁ କିଏ କାହାକୁ ଦୁଃଖ ଦିଏ ? ବିବେକହୀନ ଲୋକେ କହନ୍ତି ସେ ମୋତେ ବହୁତ ଦୁଃଖ ଦେଲା, ତା'ରି ଯୋଗୁଁ ମୁଁ ଆନନ୍ଦ ଲାଭ କଲି । କିନ୍ତୁ ସମସ୍ତେ ସ୍ୱକର୍ମ ସୂତ୍ରରେ ବନ୍ଧା ହୋଇ କର୍ମ କରିବା ପାଇଁ ବାଧ୍ୟ ହୁଅନ୍ତି ।"

ପାର୍ବତୀ କହିଲେ—"ତଥାପି ଅଭିଶାପ ହିଁ ଅଭିଶାପ । ମୋ' ଅଭିଶାପରେ ତୁ କଣ ଆଦୌ ଦୁଃଖିତ ହୋଇ ନାହୁଁ ?"

ଚିତ୍ରକେତୁ ଗମ୍ଭୀର ହୋଇ କହିଲେ—"ମା, ମୁଁ କୌଣସି କଥାକୁ ଦୁଃଖକର ବୋଲି ଭାବେ ନାହିଁ । ଏ ସଂସାର ହେଉଛି ଏକ ନଦୀ ସ୍ୱରୂପ । ଏଥିରେ ସତ୍ତ୍ୱ, ରଜ, ତମ—ତିନି-ଗୁଣ ପ୍ରବାହିତ । ଏହି ପ୍ରବାହ ମଧ୍ୟରେ କେବେ କେବେ କଣ୍ଟା ବହିଆସେ ତ କେବେ ପୁଣି ଫୁଲ ବା ଫଳ ବହିଆସେ । ସେହିପରି ଅଭିଶାପ, ଅନୁଗ୍ରହ, ସ୍ୱର୍ଗ, ନର୍କ, ବନ୍ଧନ, ମୋକ୍ଷ, ସୁଖ, ଦୁଃଖ ଆଦି ଆସେ ଓ ଯାଏ । ଜ୍ଞାନୀ ଲୋକେ ଏସବୁ ଅବସ୍ଥାରେ ନିଜକୁ ସମଭାବରେ ରଖନ୍ତି । ଏଥିରୁ କୌଣସି ଭଲ ଅବସ୍ଥା ପ୍ରତି ସେମାନଙ୍କର ମମତା ନ ଥାଏ କି କୌଣସି ଖରାପ ଅବସ୍ଥା ଆସିଗଲେ ବି ସେମାନେ ଦୁଃଖିତ ହୁଅନ୍ତି ନାହିଁ ।"

ପାର୍ବତୀ ପଚାରିଲେ—"ଭଗବାନ୍ ତ ସର୍ବଦା ସତ୍‌ସ୍ୱରୂପ, ଚୈତନ୍ୟ ସ୍ୱରୂପ ଓ ଆନନ୍ଦ ସ୍ୱରୂପ । ତାଙ୍କଠାରେ ଗୁଣପ୍ରବାହ ଆସିଲା କିପରି ?"

ଚିତ୍ରକେତୁ ଉତ୍ତର ଦେଲେ—"ମା, ଭଗବାନ୍ ତ ଗୁଣର ଅଧୀନ ନୁହନ୍ତି । ଘନ ଘନ ରୂପ ଓ ରଙ୍ଗ ପରିବର୍ତ୍ତନ କରୁଥିବା ମାୟାଦେବୀଙ୍କ ସାହାଯ୍ୟରେ ସେ ଏହି ସମ୍ପୂର୍ଣ୍ଣ ଜଗତର ପ୍ରାଣୀମାନଙ୍କୁ ଏବଂ ସେମାନଙ୍କର ବନ୍ଧନ, ମୋକ୍ଷ ଓ ସୁଖଦୁଃଖକୁ ରଚନା କରୁଛନ୍ତି ।"

'ତେବେ ସ୍ୱୟଂ ଭଗବାନ୍ କଣ ମାୟାଚକ୍ରର ଆବର୍ତ୍ତରେ ପଡ଼ନ୍ତି' ବୋଲି ପାର୍ବତୀ ପଚାରିବାରୁ ଚିତ୍ରକେତୁ କହିଲେ—"ନାଁ ମା, ତାହା ଠିକ୍ ନୁହେଁ । ଭଗବାନ୍‌ଙ୍କର ମାୟାଚକ୍ର ସହିତ କୌଣସି ସମ୍ବନ୍ଧ ନାହିଁ । ବନ୍ଧନ ମୋକ୍ଷ, ସୁଖଦୁଃଖ ଆଦି ଦ୍ୱନ୍ଦ୍ୱଭାବନାରୁ ସେ ମୁକ୍ତ ଓ ପୃଥକ୍ ହୋଇ ରହିଛନ୍ତି ।"

ପାର୍ବତୀ କହିଲେ—"ତେବେ ଜୀବଜଗତରେ ନାନାପ୍ରକାର ବୈଷମ୍ୟ ଦେଖାଯିବାର କାରଣ କଣ ? ଏହା ତ ଭଗବାନଙ୍କର ପକ୍ଷପାତ ବିଚାର । କେହି ସୁଖ ଭୋଗ କରୁଛି ତ କେହି ଦୁଃଖର ଅଗ୍ନିରେ ଦଗ୍ଧୀଭୂତ ହୋଇଛି । କେହି ଅହୋରାତ୍ର କାନ୍ଦୁଛି ତ କେହି ହସି ହସି କାଳ ଅତିବାହିତ କରୁଛି । ଏହାର କାରଣ କଣ ?"

ଚିତ୍ରକେତୁ ଉତ୍ତର ଦେଲେ—"ହେ ଜଗଜ୍ଜନନୀ ! ଆପଣଙ୍କୁ କ'ଣ କିଛି ଅଜ୍ଞାତ ଅଛି ? ଆପଣ ହିଁ ଏସବୁର ମୂଳ କାରଣ । ଭଗବାନ୍‌ଙ୍କ ପାଖରେ ବୈଷମ୍ୟ ଦୋଷ ନାହିଁ । ସେ ନିର୍ଦ୍ଦୋଷ ଓ ସମଭାବରେ ସର୍ବତ୍ର ଅବସ୍ଥାନ କରନ୍ତି । ତାଙ୍କର କେହି ପ୍ରିୟ ନାହିଁ କି ଅପ୍ରିୟ ନାହିଁ, କେହି ପର ନୁହେଁ କି ଆପଣାର ନୁହେଁ ଏବଂ ତାଙ୍କର ଜାତି ନାହିଁ କି ପରିବାର ନାହିଁ । ସେ ରାଗଦ୍ୱେଷ ରହିତ, ଦ୍ୱନ୍ଦ୍ୱାତୀତ ଓ ସୁଖ ଦୁଃଖରେ ସମଭାବରେ ଅବସ୍ଥିତ । ସଂସାରୀ ସୁଖରେ ତାଙ୍କର ଅନୁରାଗ ନାହିଁ କି ଦ୍ୱେଷଭାବ ନାହିଁ । ସାଧାରଣତଃ କୌଣସି ଏକ ବସ୍ତୁ ପ୍ରତି ଅନୁରାଗ ଜାତ ହେଲେ ଅନ୍ୟ ବସ୍ତୁ ପ୍ରତି ଘୃଣା ଜାତ ହୁଏ । ସଙ୍ଗ ପ୍ରତି ଆସକ୍ତି ବଢ଼େ ଓ ଆସକ୍ତିରୁ କ୍ରୋଧ ଜାତ ହୁଏ । କିନ୍ତୁ ଭଗବାନ୍‌ଙ୍କ ପାଖରେ ଏସବୁ କିଛି ନାହିଁ । ମାୟାହେତୁ ଜୀବଗଣ ନିଜ ନିଜ ମଧ୍ୟରେ ପାପ ପୁଣ୍ୟର ଆରୋପ କରି ସୁଖ ବା ଦୁଃଖ ଅନୁଭବ କରନ୍ତି । ଏହା ମଙ୍ଗଳକର ବା ଅହିତକର, ଏହା କଲେ ଦୁଃଖ ହେବ ବା ସୁଖ ମିଳିବ ଏହାହିଁ ବନ୍ଧନ, ମୋକ୍ଷ, ଜନ୍ମ ବା ମରଣର କାରଣ ବୋଲି ଜୀବ ଭାବେ । ଏପ୍ରକାର ଦ୍ୱନ୍ଦ୍ୱ କଳ୍ପନା ସଂସାରର କାରଣ ଏବଂ ସେଥିରୁହିଁ ସୃଷ୍ଟି ଘଟିଥାଏ ।"

ପାର୍ବତୀ ହସି ହସି ପଚାରିଲେ—"ବାବୁ ! ତୁ ଜଣେ ବଡ଼ ଜ୍ଞାନୀ ବୋଲି ମୋର ମନେ ହେଉଛି । ଭଗବାନ୍‌ଙ୍କର ମାୟାକୁ ତୁ ଜାଣି ଯାଇଛୁ । କିନ୍ତୁ ମୋ' ପାଖରେ ଏପରି ଦୈନ୍ୟ ପ୍ରକାଶ କରିବାର କାରଣ କଣ ? ମୋ' ପାଖରୁ ତୁ କଣ ଆଶା କରୁଛୁ ?"

ଚିତ୍ରକେତୁ ଦୃଢ଼ତାର ସହିତ କହିଲେ—"ମା, ଆପଣ କିଛି ଖରାପ ଭାବିବେ ନାହିଁ । ମୋର ଚିନ୍ତାଏ ହେଲେ ଚିନ୍ତା ଅଭିଶାପ ବିଷୟରେ ନାହିଁ । ପ୍ରବହମାନ ସଂସାରରେ ଶାପ ବା ବରଦାନର କଣ ମୂଲ୍ୟ ଅଛି ? ଏସବୁ ପିଲାଳିଆ କଥା । ହେ ଦେବି ! ଆପଣଙ୍କ ପାଖରେ ବିନୀତଭାବେ ଯାହା ନିବେଦନ କରୁଛି ତାହା କୌଣସି ପ୍ରକାର ଭୟର କାରଣରୁ ନୁହେଁ । ଅଭିଶାପରୁ ମୁକ୍ତ ହେବା ପାଇଁ ମୁଁ ଆପଣଙ୍କୁ ପ୍ରାର୍ଥନା କରୁ ନାହିଁ କି ଶାପକୁ ଦୂର କରିବା ପାଇଁ ମୋର ଅଭିଳାଷ ନାହିଁ । ଗୋଟିଏ ଦୁଇଟି ନୁହେଁ, ଏହିପରି ହଜାରେ ଅଭିଶାପ ମୋତେ ଦିଆଗଲେ ମଧ୍ୟ ମୁଁ ସେଥିରେ ବିଚଳିତ ହେବି ନାହିଁ । ଆସୁରୀ ଯୋନି କିଛି ଖରାପ ନୁହେଁ । ଅସୁରମାନଙ୍କ ମଧ୍ୟରେ କ'ଣ ଭଗବଦ୍‌ଭକ୍ତ ନାହାନ୍ତି ? ଯୋନିତ ଆବରଣ ମାତ୍ର । ଯେକୌଣସି ଯୋନିରେ ଜନ୍ମ ହେଲେ ମଧ୍ୟ ଭଗବଦ୍‌ଭକ୍ତି ଯାହାର ହୃଦୟରେ ଅସିବାର କଥା ଆସିବ । କିନ୍ତୁ ମୋର ବିନୟର କାରଣ ହେଉଛି ଯେ ମୋର ସତ୍ୟ କଥାଟା ଆପଣଙ୍କୁ ଖରାପ ଲାଗିଲା । ଶିଷ୍ଟାଚାର ପ୍ରତି ଲକ୍ଷ୍ୟ ରଖି ମୋ' ବୁଦ୍ଧି ଅନୁସାରେ ମୁଁ ଏହା କହିଥିଲି । ଏଥିରେ ଯଦି ଆପଣଙ୍କର ଦୁଃଖ ଜାତ ହୋଇଛି ଏବଂ ଅନୁଚିତ ମନେ ହୋଇଛି ତେବେ ସେଥିପାଇଁ ମୋତେ କ୍ଷମା ଦେବାକୁ ପ୍ରାର୍ଥନା କରୁଛି । ଆପଣଙ୍କ ଅଭିଶାପକୁ ମୋର ଆଦୌ ଭୟ ନାହିଁ ।

ଶ୍ରୀ ଶୁକଦେବ କହିଲେ– ରାଜନ୍ ! ରାଜା ଚିତ୍ରକେତୁ ଏହା କହି ଭଗବାନ୍ ଶଙ୍କର ଓ ଭଗବତୀ ପାର୍ବତୀଙ୍କ ପାଦପଦ୍ମରେ ପ୍ରଣାମ କଲେ ଓ ଉତ୍ତରକୁ ଅପେକ୍ଷା ନକରି ନିଜ

ବିମାନରେ ବସି ଚାଲିଗଲେ । ଚିତ୍ରକେତୁଙ୍କ ନମ୍ରତା ଓ ସମତାକୁ ଲକ୍ଷ୍ୟ କରି ସଭାରେ ଉପସ୍ଥିତ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସମସ୍ତେ ମନେ ମନେ ଭାବିଲେ—ଦେଖ, ଏହି ବିଦ୍ୟାଧରର କି ନିଷ୍ଠା, ଆଉ ଦୃଢ଼ତା । ଏହାର ବୁଦ୍ଧି ସମ ଅବସ୍ଥାରେ ସ୍ଥିର ହୋଇ ରହିଛି । ଭଗବାନ୍ ସଙ୍କର୍ଷଣଙ୍କ ଉପାସନା ଦ୍ୱାରା ଏହି ଦୁସ୍ତର ମାୟାକୁ ସେ ପାର ହୋଇ-ଯାଇଛି । ତଥାପି ଏତେବଡ଼ ଅଭିଶାପ ପାଇ ମଧ୍ୟ ତା'ର ମୁଖ ମଳିନ ହେଲା ନାହିଁ କି ଟିକିଏ ହେଲେ ଭ୍ରୂକୁଞ୍ଚିତ ହେଲା ନାହିଁ ।

ଭଗବତୀ ପାର୍ବତୀ ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ପକ୍ଷରେ ଏହି ଘଟଣା ଏକ ରହସ୍ୟମୟ ଆଶ୍ଚର୍ଯ୍ୟ ରୂପେ ପ୍ରତୀତ ହେଲା । ସେ ଶିବଙ୍କ ମୁହଁକୁ ରହସ୍ୟପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଲେ । ସର୍ବାନ୍ତର୍ଯ୍ୟାମୀ ଶିବ, ପାର୍ବତୀଙ୍କ ମନୋଭାବ ବୁଝିପାରି ହସି ହସି ଭଗବଦ୍ ଭକ୍ତମାନଙ୍କର ମହତ୍ତ୍ୱ ବ୍ୟାଖ୍ୟା କରିବାକୁ ଲାଗିଲେ ।

## ଛପ୍ପୟ

ଶାପ ଅନ୍ୟଥା କରନ୍ତୁ ବିନୟ ଯଦି ହେବୁ କରେଁ ନାହିଁ ।
ହୋଇ ବେଗ ଟିକା ନାଶ ଭାଗ୍ୟବଶ ଦୁଃଖ ଆଦି ସହି ।।
ଅବିନୟ ମେରି ସମୁଝି ମାତୁ ତୁମ କୁପିତ ଭଇ ଅତ ।
ତାତେଁ ବିନତୀ କରୀ ଔର କଛୁ ତୁମ ସମକ୍ଷୋ ମତ ।।
ସତୀ ଶମ୍ଭୁ ପଦ ବନ୍ଦି କେଁ, ଚିତ୍ରକେତୁ ପୁନି ଚଲି ଦୟେ ।
ସତୀ ସକଲ ସଭକେ ସମତା, ଲଖି ବିସ୍ମିତ ଭୟେ ।।



# ଭଗବଦ୍ଭକ୍ତଙ୍କ ମହିମା

ଦୃଷ୍ଟବତ୍ୟସି ସୁଶ୍ରୋଣି ହରେରଦ୍ଭୁତକର୍ମଣଃ ।
ମାହାତ୍ମ୍ୟଂ ଭୃତ୍ୟଭୃତ୍ୟାନାଂ ନିସ୍ପୃହାଣାଂ ମହାତ୍ମନାମ୍ ॥
ନାରାୟଣପରାଃ ସର୍ବେ ନ କୁତଶ୍ଚନ ବିଭ୍ୟତି ।
ସ୍ୱର୍ଗାପବର୍ଗନରକେଷ୍ୱପି ତୁଲ୍ୟାର୍ଥଦର୍ଶିନଃ ॥

(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୭ଅ-୨୭, ୨୮ ଶ୍ଳୋକ)

ଛପ୍ପୟ

ହର ହସି ବୋଲେ-ଶିବା ! ଲଖି ମହିମା ଭକ୍ତନ କୀ ।
ସଦା ଏକ ମତ ରହେ ସ୍ୱର୍ଗ ନରକନ ମହଁ ଇନକୀ ॥
କୋ ହୈଂ ଭଗବଦ୍ଭକ୍ତ କହୋ ତିନକୂଁ କାକୋ ଭୟ ।
ତୀନ କାଲ ମହଁ ସଦା ନିହାରେଁ ଜଗକୂ ପ୍ରଭୁମୟ ॥
ଦେଇ ନ ସୁଖ ଦୁଃଖ ଦୁସରୋ, ଭ୍ରମବଶ ନରପଶୁ କହତ ହୈଁ ।
ମାୟା କେ ବଶ ଜୀବନେ, କରେ କରମ ସୋ ସହତ ହୈଁ ॥

ଦେଶର ରାଜା ବା ସମ୍ରାଟ୍ ରତ୍ନସିଂହାସନରେ ବସିଥାନ୍ତୁ ବା ନିଜ ରାଜ୍ୟର ନଦୀ କୂଳରେ ବସିଥାନ୍ତୁ, ଯେଉଁଠି ଥିଲେ ବି ସେ ସମ୍ରାଟ୍ ହୋଇ ରହିନ୍ତି । କେଉଁଠି ହେଲେ ତାଙ୍କର ଦୁଃଖ ନାହିଁ । ନିଜ ରାଜ୍ୟର ଯେ କୌଣସି ସ୍ଥାନରେ ରହିଲେ ବି ତାଙ୍କର ଅପମାନ ହୁଏ ନାହିଁ କି ସେ ତିରସ୍କୃତ ହୁଅନ୍ତି ନାହିଁ । ରାଜ୍ୟରେ ସର୍ବତ୍ର ତାଙ୍କ ପ୍ରତି ସମ୍ଭାବନା ଥାଏ । ରାଜାଙ୍କ ପରି ମଧ୍ୟ ରାଜପୁତ୍ର ସେ ରାଜ୍ୟର ଉତ୍ତରାଧିକାରୀ । ରାଜ୍ୟର ପ୍ରତ୍ୟେକ ବସ୍ତୁକୁ ସେ ନିଜର ବୋଲି ମନେ କରନ୍ତି । ରାଜ୍ୟରେ ସୁନାଖଣି ଥିଲେ ତାଙ୍କର ଏବଂ କୋଇଲାଖଣି ଥିଲେ ବି ତାଙ୍କର । ନିଜର ଜନପଦ ଶ୍ରେଷ୍ଠ ହେଉ ବା ବଡ଼ ହେଉ, ଖରାପ ହେଉ ବା ଭଲ ହେଉ ସବୁଠି ରାଜାଙ୍କର ଓ ରାଜପୁତ୍ରଙ୍କର ସମଭାବ ଥାଏ । ସେହିପରି ଭଗବଦ୍ଭକ୍ତ ଏହି ଜଗତକୁ ନିଜର ପ୍ରଭୁ ଶ୍ରୀହରିଙ୍କ ଲୀଳାସ୍ଥଳୀ ବୋଲି ଭାବନ୍ତି । ଆମର ପ୍ରଭୁଙ୍କ ଇଚ୍ଛା ବିରୁଦ୍ଧରେ କୌଣସି ବସ୍ତୁର ଅସ୍ତିତ୍ୱ ରହି ନ ପାରେ ବୋଲି ସେମାନେ ସିଦ୍ଧାନ୍ତ ନେଇଥାନ୍ତି । ଆମର ସ୍ୱାମୀ ସମସ୍ତଙ୍କର ପ୍ରଭୁ । ଆମେମାନେ ତାଙ୍କର ଏକମାତ୍ର ଉତ୍ତରାଧିକାରୀ । ଆମର ପ୍ରଭୁ ଆମକୁ ଯେଉଁଠି ରଖିଛନ୍ତି ଆମେ ଆନନ୍ଦରେ

ଅଛୁ । ଆମର ଇଷ୍ଟଙ୍କୁ ଯଦି ଆମେ ଭୁଲି ନଯାଉଁ, ତେବେ ତାଙ୍କର ଇଚ୍ଛାକୁ ଆମେ ନିଜର ଇଚ୍ଛା ବୋଲି ଭାବୁଁ । ଯଦି ସ୍ୱାମୀଙ୍କୁ ଭୁଲିଯାଇ ନିଜକୁ ସବୁ ବୋଲି ଭାବି ଆତ୍ମପର ଭେଦ-ଭାବ ସୃଷ୍ଟି କରିବା ତେବେ ଆମକୁ ସୁଖଦୁଃଖର ଭାଗୀଦାର ହେବାକୁ ପଡ଼ିବ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବିଦ୍ୟାଧରମାନଙ୍କର ଅଧିପତି ଚିତ୍ରକେତୁ ଅଭିଶାପ ବଚନ ଶୁଣି ମଧ୍ୟ ଯେତେବେଳେ ପାର୍ବତୀଙ୍କ ପ୍ରତି କୌଣସି ପ୍ରକାର କ୍ରୋଧ ପ୍ରକାଶ ନ କରି କ୍ଷମା ପ୍ରାର୍ଥନା କଲେ ଏବଂ ଶାପମୁକ୍ତି ପାଇଁ କିଛି ନ କହି ଶ୍ରଦ୍ଧା-ପୂର୍ବକ ପ୍ରଣାମ ଜଣାଇ ହସି ହସି ଚାଲିଗଲେ, ସେତେବେଳେ ପାର୍ବତୀ ବିସ୍ମିତ ହୋଇପଡ଼ିଲେ ।" ପାର୍ବତୀଙ୍କୁ ବିସ୍ମୟାବିଷ୍ଟ ଥିବାର ଦେଖି ଭଗବାନ୍ ଭୋଳାନାଥ ହସି ହସି କହିଲେ—"ଦେବୀ ପାର୍ବତୀ ! ତୁମେ ଭଗବଦ୍‌ଭକ୍ତର ମାହାତ୍ମ୍ୟ ଅନୁଭବ କଲ ? କିଛି ବୁଝିପାରିଲ କି ? ଏବେ ତୁମର କ୍ରୋଧ ଶାନ୍ତ ହେଲାତ ?"

ଈଷତ୍ ଲଜ୍ଜିତା ହୋଇ ହିମାଳୟ ନନ୍ଦିନୀ ପାର୍ବତୀ କହିଲେ—"କଣ କହିବି, ଆପଣମାନଙ୍କର ଲୀଳା ମୁଁ କିଛି ବୁଝିପାରୁନାହିଁ । ମୁଁ ଭାବିଲି ଚିତ୍ରକେତୁ ବଡ଼ ଅଭିମାନୀ । କିନ୍ତୁ ପ୍ରକୃତରେ ସେତ ବଡ଼ ଭଗବଦ୍‌ଭକ୍ତ ବୋଲି ଜଣା ପଡ଼ିଲା । ପ୍ରଭୋ ! ସେ କେଉଁ ଦେବତାଙ୍କର ଭକ୍ତ ?"

ଶଙ୍କର କହିଲେ—"ଦେବି ! ସେ ଜଣେ ଭଗବଦ୍‌ଭକ୍ତ ତ ନିଶ୍ଚୟ । କିନ୍ତୁ ସେ ଭଗବାନ୍‌ଙ୍କଠାରୁ ଅଧିକମାତ୍ରାରେ ଭଗବଦ୍‌ଭକ୍ତଙ୍କର ଭକ୍ତ, ଦାସଙ୍କ ଅନୁଦାସ ଏବଂ ନାରଦ ଓ ଅଙ୍ଗିରା ମୁନିଙ୍କର ଚରଣସେବକ । ଯେଉଁମାନେ ଭଗବଦ୍‌ଭକ୍ତି ଲାଭ କରିଛନ୍ତି ସେମାନଙ୍କର କୌଣସି ସାଂସାରିକ ବିଷୟରେ ସ୍ପୃହା ରହେ ନାହିଁ । ସେମାନେ ସର୍ବଦା ନିଷ୍ପୃହ । ସେମାନଙ୍କ ପାଖରେ ସ୍ୱର୍ଗ, ନର୍କ ସବୁ ସମାନ । ସେମାନେ ସଂସାରର କୌଣସି ଦୁଃଖକୁ କି କୌଣସି ବ୍ୟକ୍ତିକୁ ଭୟ କରନ୍ତି ନାହିଁ । ଏପରିକି ସେମାନେ ଭଗବାନ୍‌ଙ୍କୁ ମଧ୍ୟ କଡ଼ାକଥା ଦୁଇପଦ କହିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଭଗବାନ୍ ଯେତେବେଳେ ମୁକ୍ତିକୁ ନେଇ ଭକ୍ତଙ୍କ ପାଖକୁ ଆସନ୍ତି, ସେତେବେଳେ ଭକ୍ତମାନେ କହନ୍ତି ଆମର ମୁକ୍ତି ଦରକାର ନାହିଁ । ଆମକୁ ବନ୍ଧନ ଅପେକ୍ଷା ମୁକ୍ତି ଯଦି ଭଲ ଲାଗୁଥାନ୍ତା, ବନ୍ଧନ ଓ ମୁକ୍ତି ମଧ୍ୟରେ ଆମେ ଯଦି ପାର୍ଥକ୍ୟ ଅନୁଭବ କରୁଥାନ୍ତୁ ତେବେ ଆମେ ବନ୍ଧନକୁ ଛାଡ଼ି ମୁକ୍ତିକୁ ଗ୍ରହଣ କରନ୍ତୁ । କିନ୍ତୁ ଆମ ନଜରରେ ଉଭୟ ସମାନ । ଜନ୍ମ ହେବାକୁ ପଡ଼ିବ ଯଦି ପଡ଼ୁ । ନର୍କକୁ ଯିବାକୁ ହେବ ଯଦି ଯିବା ପଛକେ; କିନ୍ତୁ ବଳପୂର୍ବକ ଭଗବଦ୍‌ଦତ୍ତ ମୁକ୍ତିକୁ ଆମେ ଗ୍ରହଣ କରିବୁ ନାହିଁ । ଏହାହିଁ ପ୍ରକୃତ ଭଗବଦ୍ ଭକ୍ତର ଭାବନା । ଭଗବାନ୍ ନିଜର ଭକ୍ତଙ୍କୁ ସର୍ବଦା ଭୟ କରନ୍ତି । କାଳେ ଭକ୍ତର କୌଣସି ଅସୁବିଧା ହେବ ସେଥିପାଇଁ ଭଗବାନ୍ ସବୁବେଳେ ପ୍ରସ୍ତୁତ ରହନ୍ତି ଏବଂ ଭୃତ୍ୟ ପରି ଭକ୍ତର ଆଦେଶ ପାଳନ କରନ୍ତି ।"

ଦେବି ପାର୍ବତି ! "ତୁମେ ରାଗିଯାଇ ରାଜର୍ଷି ଚିତ୍ରକେତୁଙ୍କୁ ଅଭିଶାପ ଦେଇଦେଲ । ସେ ଥିଲେ ବଳବାନ୍ । ସେ ଚାହିଁଥିଲେ ତୁମକୁ ବି ଅଭିଶାପ ଦେଇପାରିଥାନ୍ତେ । କିନ୍ତୁ ସେ ତାହା ନ କରି ତୁମଠାରେ ଅନୁନୟ ବିନୟ ପ୍ରକାଶ କଲେ । କାରଣ ମୁଁ ହେଉଛି

ବୈଷ୍ଣବ ଏବଂ ତୁମେ ହେଉଛ ମୋର ପତ୍ନୀ । ଅନ୍ୟର ଦୋଷ ଦେଖିବା ଦୂରେଥାଉ, ଭକ୍ତ, ମନରେ ବି କାହାରି ଦୋଷ କଥା ଭାବେ ନାହିଁ । ସେ ଭୁଲ୍‌ରେ ବି ଏପରି କାମ କରେ ନାହିଁ । ଯାହାଦ୍ୱାରା ଭକ୍ତର ଲଜ୍ଜାଜାତ ହେବ ବା ଭକ୍ତ ନିଜକୁ ଅପମାନିତ କରିବ । ଅନ୍ୟର ଦୋଷ ଦେଖିଲେ ମଧ୍ୟ ସେ ମୁହଁ ଖୋଲି କିଛି ବିରୋଧ କରେ ନାହିଁ ବରଂ ସମର୍ଥନ କରେ ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଆପଣ ଯାହାସବୁ କହିଲେ କିଛି ବୁଝିହେଲି ନାହିଁ । ଦୋଷ ଯାହାର ନାହିଁ, ଈର୍ଷାବଶତଃ ତା' ଉପରେ ଦୋଷ ଆରୋପ କରିବା ଓ ତାକୁ ନିନ୍ଦା କରିବା ତ ମହାପାପ । କିନ୍ତୁ ଯାହାର ଦୋଷ ଅଛି ତାହାର ସେ ଦୋଷକୁ ପ୍ରକାଶ କରିଦେବାରେ କିଛି ଅପରାଧ ହେବ ବୋଲି ଭାବୁ ନାହିଁ । ଆପଣ କହୁଛନ୍ତି, ପାପୀର ପାପକୁ ପ୍ରକାଶ ନ କରି ଭକ୍ତମାନେ ତାକୁ ସମର୍ଥନ କରନ୍ତି, ଏହା ଠିକ୍ କଥା ବୋଲି ମନେ ହେଉନାହିଁ । କାରଣ ସେପରି ହେଲେ ସମସ୍ତେ ଖୋଲାଖୋଲି ଭାବେ ପାପକାର୍ଯ୍ୟ କରିବେ । ତେଣୁ ପାପୀର ପାପକୁ ଭଲଭାବରେ ଆଲୋଚନା କରିବା ଉଚିତ । ଏହାଦ୍ୱାରା ସମାଜରେ ଦୁରାଚାର ପ୍ରସାରିତ ହେବନାହିଁ ବରଂ ସମାଜର ମଙ୍ଗଳ ହେବ ଏବଂ ସଦାଚାରର ପ୍ରଚାର ହେବ ।"

ଶୌନକଙ୍କ ପ୍ରଶ୍ନ ଶୁଣି ମହର୍ଷି ସୂତ କହିଲେ—"ଭଗବନ୍ ! ସମସ୍ତଙ୍କର ଅଧିକାର ଅଲଗା ଅଲଗା; କିନ୍ତୁ ସମସ୍ତେ ସମସ୍ତଙ୍କର କାମ କଲେ ସମାଜରେ ବିଶୃଙ୍ଖଳା ସୃଷ୍ଟି ହେବ । ରାଜା ପ୍ରଜାଙ୍କ ଦୋଷ ଦେଖିବେ, ବିଚାର କରିବେ ଓ ଦଣ୍ଡ ଦେବେ । ଏହା ତାଙ୍କର କାମ । ସେହିପରି ପ୍ରଜାମାନଙ୍କୁ ଶାସନ କରିବା, ଅପରାଧ କଲେ ସେମାନଙ୍କୁ ଦଣ୍ଡ ଦେବା ଶାସକମାନଙ୍କର ଅଧିକାରଭୁକ୍ତ । ଆଚାର୍ଯ୍ୟ ଶିଷ୍ୟମାନଙ୍କ ଦୋଷ ଦେଖିଲେ ଧର୍ମାନୁସାରେ ସେମାନଙ୍କୁ ସଚେତନ କରିବା ଉଚିତ, ବୁଝେଇଦେବା ଆବଶ୍ୟକ । ପୁଅର ଦୋଷ ଦେଖିଲେ ତାକୁ ଦଣ୍ଡ ଦେବା ଅଧିକାର ବାପାଙ୍କର ଅଛି । ଆମ୍ଭେମାନେ ସାଧାରଣ ଲୋକଙ୍କ ଦୋଷ ଦୁର୍ବଳତା କଥା ଆଲୋଚନା କରୁଁ, ସେମାନଙ୍କ ଅପରାଧକୁ ପ୍ରକାଶ କରିଦେଉଁ ଏବଂ ସମାଜରେ ଥାଇ ମଧ୍ୟ ଅନ୍ୟମାନଙ୍କର ଅମଙ୍ଗଳ କରୁଁ; କିନ୍ତୁ ଏଥିରେ ଆମର ଲାଭ କଣ ହୁଏ ? ଯାହାର ଯାହା ଅଭ୍ୟାସ, ସେ ଅନ୍ୟକୁ ଲୁଚାଇ ତାହା କରେ । ସେ କାହାରି କଥା ମାନେ ନାହିଁ । ସେପରି ଲୋକଙ୍କୁ ନିନ୍ଦା କଲେ ତା'ର ସଂସ୍କାର ଆମ ପାଖକୁ ଆସେ, ତା'ର ଅପରାଧ ଚିନ୍ତାକରିବା ଦ୍ୱାରା ଆମ ଭିତରେ ଅପରାଧର ପରମାଣୁ ପ୍ରବେଶ କରେ । ତେଣୁ ଭକ୍ତ କେବେହେଲେ ନିଜକୁ ସମାଜ ସଂସ୍କାରକ ବୋଲି ଭାବେ ନାହିଁ ।"

ଭଗବଦ୍‌ଭକ୍ତ ପ୍ରଥମେ ନିଜକୁ ସୁଧାରିବା ପାଇଁ ଚିନ୍ତା କରେ । ତାହାହିଁ ତା'ପକ୍ଷରେ ଯଥେଷ୍ଟ । ସେହିପରି ଭାବି ଯଦି ସମସ୍ତେ ନିଜ ନିଜକୁ ସଂଶୋଧନ କରିବେ, ତେବେ ସ୍ୱତଃ ସମାଜ ସଂସ୍କାର ସାଧିତ ହୋଇଯିବ । କିନ୍ତୁ ଲୋକେ ନିଜକୁ ସଂଶୋଧନ ନ କରି ଅନ୍ୟକୁ

ସଂଶୋଧନ କରିବା ପାଇଁ ବାହାରିପଡ଼ନ୍ତି । ନିଜ ଭିତରେ ହାତ ଦେଇ, ସେମାନେ ନିଜ ମନକୁ ଆୟତ୍ତ କରିପାରିଛନ୍ତି ବୋଲି କହିପାରିବେ କି ? ସେମାନେ ଭୁଲ୍‌ରେ ବି କିଣି ବାସନାର ବଶୀଭୂତ ହୋଇ ସଦାଚାରର ବିରୁଦ୍ଧ କାର୍ଯ୍ୟ ଆଚରଣ କରି ନାହାନ୍ତି ? ଯଦି ସେପରି କିଛି କରି ନାହାନ୍ତି, ତେବେ ଅନ୍ୟକୁ ନିନ୍ଦା କରି କି ଲାଭ ପାଆନ୍ତି ? ଆମେ ପ୍ରତ୍ୟକ୍ଷଭାବେ ଏହା ଅନୁଭବ କରୁଛୁ । ଆମେ ଜାଣୁ, ପର ସ୍ତ୍ରୀଆଡ଼କୁ ଦୃଷ୍ଟି ଦେବା ଘୋର ପାପ । ଯଥାଶକ୍ତି ଆମେ ନିଜକୁ ସେଥିରୁ ନିବୃତ୍ତ ରଖୁ । କିନ୍ତୁ କେବେ କେବେ ଏପରି ସଂଯୋଗ ଘଟିଯାଏ, ଯେତେବେଳେ ଅନିଚ୍ଛାସତ୍ତ୍ୱେ ବି ମନ ଚଞ୍ଚଳ ହୋଇପଡ଼େ । ଆମେ ଯେତେବେଳେ ନିଜ ମନକୁ ଆୟତ୍ତରେ ରଖି ପାରୁନାହୁଁ, କୁପଥ-ଆଡ଼କୁ ଗଲେ ମନକୁ ଆମେ ସଂଯତ କରିପାରୁନୁ, ସେତେବେଳେ ଅନ୍ୟମାନଙ୍କ ପାଖରୁ ସେପରି ଆଶା କରିବା କିପରି ? ସମସ୍ତେ ନିନ୍ଦାକୁ ଡରନ୍ତି; କିନ୍ତୁ ବାସନାର ବଶୀଭୂତ ହୋଇ ନ କରିବା ଭଳି କାମ କରନ୍ତି । କିନ୍ତୁ ଭକ୍ତ ଏପରି ଲୋକକୁ ନିନ୍ଦା କରିବା ଉଚିତ ନୁହେଁ । କୌଣସି ପ୍ରକାର ଲଜ୍ଜାଜନକ ଅବସ୍ଥା ନଆସୁ ବୋଲି ଭାବି ଭକ୍ତ ପରୋକ୍ଷ ଭାବେ ଅନୁଚିତ କାର୍ଯ୍ୟକୁ ମଧ୍ୟ ସମର୍ଥନ କରିଯାଏ । ଏ ବିଷୟରେ ମୁଁ ଆପଣଙ୍କୁ ଜନୈକ ବୈଷ୍ଣବ ଭକ୍ତର ଏକ ସୁନ୍ଦର କାହାଣୀ ଦୃଷ୍ଟାନ୍ତ ସ୍ୱରୂପ କହୁଛି ।

ଜଣେ ବୈଷ୍ଣବ ଆଚାର୍ଯ୍ୟ ଥିଲେ । ତାଙ୍କ ପାଖରେ ତାଙ୍କର ଶରଣ ନେଇଥିବା ଅନେକ ଭଗବଦ୍‌ଭକ୍ତ ଥିଲେ । ଅନେକ ତାଙ୍କଠାରୁ ଦୀକ୍ଷା ନେଇଥିଲେ । ସେହି ଭକ୍ତମାନଙ୍କ ମଧ୍ୟରେ ଜଣେ ପରମ ନିଷ୍ଠାବାନ୍ ସାଧୁ ଥିଲେ । ଗୁରୁଦେବ ତାଙ୍କୁ ପ୍ରତିଦିନ ପୁଣ୍ୟତୋୟା କାବେରୀରୁ ଜଳ ଆଣିବାପାଇଁ ଦାୟିତ୍ୱ ଦେଇଥିଲେ । ସେ ସେହି ଦାୟିତ୍ୱକୁ ଶ୍ରଦ୍ଧାର ସହିତ ନିର୍ବାହ କରୁଥିଲେ ଏବଂ ସମସ୍ତଙ୍କଠାରେ ଈଶ୍ୱରଭାବନା ପୋଷଣ କରୁଥିଲେ । ସେ କେବେ କାହାର ନିନ୍ଦା କରୁ ନଥିଲେ କି କାହାର ଦୋଷ ବାହାର କରିବା ପାଇଁ ଚେଷ୍ଟା କରୁ ନଥିଲେ । ସେ ସମସ୍ତଙ୍କୁ ନିଜର ଗୁରୁଦେବ ବୋଲି ଜ୍ଞାନ କରୁଥିଲେ ।

ଏକଦା ସେ କାବେରୀରୁ ଜଳ ଆଣିବା ପାଇଁ କଳସୀ ନେଇ ଆସୁଥିଲେ । ବାଟରେ ଦେଖିଲେ ତାଙ୍କର ଆଶ୍ରମର ଜନୈକ ବୈଷ୍ଣବ ଜଳପାତ୍ର ନ ନେଇ ପରିସ୍ରା କରୁଛନ୍ତି । ଏହା ବୈଷ୍ଣବ ପକ୍ଷରେ ଏକ ଦୋଷାବହ କାର୍ଯ୍ୟ । କାରଣ ଜଳ ନ ନେଇ ପରିସ୍ରା କରିବା ଶୌଚ ସମ୍ବନ୍ଧୀୟ ଏକ ବଡ଼ ଦୋଷ । ଶାସ୍ତ୍ରର ନିୟମ ଅନୁସାରେ ଯେତେଥର ପରିସ୍ରା ଯିବେ ସେତେଥର ସ୍ନାନ କରିବେ । ସ୍ନାନ ବି କେତେ ପ୍ରକାର ଅଛି, ଯେପରି ଭସ୍ମସ୍ନାନ, ମନ୍ତ୍ରସ୍ନାନ, ପଞ୍ଚସ୍ନାନ, ବସ୍ତ୍ରସ୍ନାନ, ଇତ୍ୟାଦି । ସବୁଥର ପାଣିରେ ବୁଡ଼ ସ୍ନାନ କରିବା ସମ୍ଭବ ନୁହେଁ । ତେଣୁ ପରିସ୍ରା ପାଇଁ ଗଲେ ଜଳ ନେଇ ଯିବା ଉଚିତ । ଫେରିଆସି ତିନିଥର ହାତ ଓ ପାଦ ଧୋଇବେ । ତିନିଥର କୁଳି କରିବେ, ତେବେ ଯାଇ ଶୁଦ୍ଧ ହେବେ । କିନ୍ତୁ ଜଳ ନ ନେଇ ପରିସ୍ରା କରୁଥିବା ବୈଷ୍ଣବଙ୍କୁ ବଡ଼ ଲଜ୍ଜା ଲାଗିଲା । ସେ ଭାବିଲେ ହୁଏତ ସାଧୁ ମହାରାଜ ଗୁରୁଦେବଙ୍କୁ ଯାଇ କହିବେ ଏବଂ ମୋର ଅପରାଧ ପ୍ରଚାରିତ ହୋଇଯିବ । ତେଣୁ ସେ ଉପସ୍ଥିତ ହୋଇପଡ଼ିଲେ ।

ସାଧୁ ମହାରାଜ ସେ ବୈଷ୍ଣବଙ୍କ ମନୋଭାବ ଜାଣିପାରିଲେ । ତାଙ୍କ ମନରେ ଦୁଃଖ ହେଲା । କାରଣ ତାଙ୍କରି ପାଇଁ ସେ ଲଜ୍ଜିତ ଓ ସଙ୍କୁଚିତ ହେଲେ । କିପରି ତାଙ୍କର ସଙ୍କୋଚ ଦୂର ହେବ ? ଏହା ଭାବି ସେ ମୁଣ୍ଡରେ କଳସୀକୁ ପୂର୍ବ ପରି ରଖି ନିଜେ ପରିସ୍ରା କଲେ । ଏହା ଦେଖି ବୈଷ୍ଣବ ବଡ଼ ସନ୍ତୋଷ ଲାଭ କଲା । ସେ ଭାବିଲା ମୁଁ ତ ଏହି ସାଧୁଙ୍କ ଅପେକ୍ଷା କମ୍ ଅପରାଧୀ । ପ୍ରଭୁଙ୍କ ସେବା ପାଇଁ ଜଳ ନେଇ ଯିବାବେଳେ ମଧ୍ୟ ଠିଆ ହୋଇ ସେ ପରିସ୍ରା କରୁଛନ୍ତି । ଏହା କଣ ବୈଷ୍ଣବର କାର୍ଯ୍ୟ ? ଏହା ଭାବି ସେ ଖୁସି ହୋଇ ଚାଲିଗଲେ ।

ଏଣେ ସାଧୁ ମହାରାଜ ପୁଣି କାବେରୀକୁ ଫେରିଗଲେ । କାବେରୀରେ ସବସ୍ତ୍ର ସ୍ନାନ କରି କଳସୀ ଧୋଇ ପାଣି ନେଇ ଆସିଲେ । କିନ୍ତୁ ସେ ବୈଷ୍ଣବ ଯେପରି ଥିଲେ ସେହିପରି ରହିଲେ । ସେ ଆଉ ଶୌଚ ହେଲେ ନାହିଁ । ମାତ୍ର ସ୍ୱଭାବବଶତଃ ସେ ଗୁରୁଦେବଙ୍କ ପାଖକୁ ଯାଇ କହିଲେ—"ମହାରାଜ ! ଆପଣ ସେ ସାଧୁଙ୍କୁ ଏପରି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେବା ଠିକ୍ ହୋଇନି । କାରଣ, ମୁଁ ଆଜି ନିଜ ଆଖିରେ ଦେଖିଲି, ସେ ଭଗବାନ୍‌ଙ୍କ ପୂଜା ପାଇଁ ଆଣୁଥିବା ପାଣି କଳସୀକୁ ମୁଣ୍ଡ ଉପରେ ରଖି ଠିଆ ହୋଇ ପରିସ୍ରା କରୁଥିଲେ ।"

ଆଚାର୍ଯ୍ୟ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସାଧୁ ମହାରାଜ ଏପରି କାମ କରିବା କଥା ନୁହେଁ । ଆଚାର୍ଯ୍ୟ ବାରମ୍ବାର ସେଇ କଥା ଚିନ୍ତା କରିବାକୁ ଲାଗିଲେ । ବହୁତ ଚିନ୍ତା କରି ଗୁରୁଦେବ ସମସ୍ତଙ୍କ ଉପସ୍ଥିତିରେ ସେ ସାଧୁଙ୍କୁ ଡକାଇ ପଠାଇଲେ ଓ କହିଲେ—"କଣ ବାବୁ ! ଏ ବୈଷ୍ଣବ ମହାଶୟ କହୁଛନ୍ତି ଯେ ଆପଣ ପାଣି ନେଇ ଆସୁ-ଥିବାବେଳେ କଳସୀକୁ ମୁଣ୍ଡ ଉପରେ ଥୋଇ ଠିଆ ହୋଇ ପରିସ୍ରା କରୁଥିଲେ । ଏହା କଣ ସତ ?"

ସାଧୁମହାରାଜ ହାତ ଯୋଡ଼ି ଲଜ୍ଜାର ସହିତ ସମସ୍ତଙ୍କ ଆଗରେ କହିଲେ—"ହଁ ଭଗବନ୍ ! ଏହା ସତ୍ୟ । ସେ ଯାହା କହିଛନ୍ତି ମୁଁ ତାହା କରିଛି । ବୈଷ୍ଣବମାନେ କଣ କେବେ ମିଥ୍ୟା କହନ୍ତି ?"

ଆଚାର୍ଯ୍ୟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ତୁମେ ଏପରି ସଦାଚାର ବିରୁଦ୍ଧ ଆଚରଣ କିପରି କଲ ଏବଂ କାହିଁକି କଲ ?"

ମୁଣ୍ଡ ତଳକୁ କରି ଆଖିରୁ ଲୁହ ଗଡ଼ାଇ କହିଲେ ସାଧୁମହାରାଜ—"ପ୍ରଭୋ ! ମୁଁ ତ ଗୋଟାଏ ପଶୁ । ପଶୁ ଯାହା ଅନୁଚିତ କାର୍ଯ୍ୟ କରେ ତାର ଅପରାଧ ବିଷୟରେ ପ୍ରଭୁ ଧ୍ୟାନ ଦିଅନ୍ତି ନାହିଁ । ଶୌଚ ଅଶୌଚ ବିଷୟରେ ପଶୁର କିଛି ଜ୍ଞାନ ନ ଥାଏ । ଭଗବାନ୍‌ଙ୍କ ଦିବ୍ୟାହାସ୍ତଦ୍ୱାରା ପ୍ରତିଦିନ ଭଗବାନ୍‌ଙ୍କ ଅଭିଷେକ ପାଇଁ ଜଳ ଆସୁଛି । ହାତୀ ଜଳ ନେଇ ଆସିବାବେଳେ ବାଟରେ ପରିସ୍ରା ବା ଲଘୁଶଙ୍କା କେବଳ ନୁହେଁ, ଗୁରୁଶଙ୍କା ଅର୍ଥାତ୍ ପୁରୀଷୋତ୍ସର୍ଗ ମଧ୍ୟ କରିଥାଏ । କିନ୍ତୁ ପଶୁ ହୋଇଥିବାରୁ ତା'ର ଏ ପ୍ରକାର ଅଶୌଚ ପ୍ରତି

ଧ୍ୟାନ ଦିଆଯାଏ ନାହିଁ । ମୁଁ ବି ଦ୍ୱିପଦବିଶିଷ୍ଟ ଏକ ପଶୁ । ଅପରାଧ କରିବା ମୋର ସ୍ୱଭାବ ଏବଂ ଆପଣଙ୍କ ପରି ଗୁରୁଜନଙ୍କ ସ୍ୱଭାବ ହେଉଛି କ୍ଷମା ଦେବା । ତେଣୁ ମୋର ଅପରାଧକୁ କ୍ଷମା କରିଦିଅନ୍ତୁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏହାହିଁ ସାଧୁତା । ଶତ୍ରୁ ତଥା ଅପକାରୀର ମଧ୍ୟ ଦୋଷକୁ ପ୍ରକାଶ ନ କରି ଯେ ନିଜର ଦୋଷକୁ ସର୍ବଦା ପ୍ରକାଶ କରେ ସେ ହେଉଛି ପ୍ରକୃତ ବୈଷ୍ଣବ । ସେ କେବେହେଲେ ନିଜର ବିଦ୍ୟା, ପ୍ରଭୁତ୍ୱ ଓ ଭକ୍ତି ସମ୍ବନ୍ଧରେ ଅଭିମାନ ପ୍ରକାଶ କରେ ନାହିଁ । ସେ ଭାବେ ମୁଁ ସମସ୍ତଙ୍କର ଦାସ । ଦେଖନ୍ତୁ, ରାଜର୍ଷି ଚିତ୍ରକେତୁଙ୍କ ମନରେ ସାମାନ୍ୟ ଅହଙ୍କାର ଆସିଥିଲା । ସେଥିପାଇଁ ଲୋକଗୁରୁ ଶିବଙ୍କୁ ଲକ୍ଷ୍ୟ କରି ଅନୁଚିତ ହେଲେ ମଧ୍ୟ ନ କହିବା ଭଳି କଥା କହିଲେ । ଶିବ ତାଙ୍କର ମନୋଭାବ ଜାଣିପାରିଥିବାରୁ ହସି ହସି କଥାଟା ଉଡ଼ାଇ ଦେଇଥିଲେ ମଧ୍ୟ ପାର୍ବତୀ ସ୍ତ୍ରୀସୁଲଭବଶତଃ ସହିପାରିଲେ ନାହିଁ । ତେଣୁ କ୍ରୋଧାନ୍ୱିତ ହୋଇ ମା' ପାର୍ବତୀ ଚିତ୍ରକେତୁଙ୍କୁ ଅଭିଶାପ ଦେଲେ । ମହାଭାଗବତ ରାଜର୍ଷି ଚିତ୍ରକେତୁଙ୍କର ଭବାନୀଙ୍କୁ ଅଭିଶାପ ଦେଲାଭଳି ସାମର୍ଥ୍ୟ ଥିଲେ ମଧ୍ୟ ସେ ସେପରି କାର୍ଯ୍ୟ ନ କରି ଅଭିଶାପକୁ ଆନନ୍ଦରେ ଗ୍ରହଣ କରିନେଲେ ଏବଂ ଦେବୀ ପାର୍ବତୀଙ୍କଠାରୁ କ୍ଷମା ମାଗିନେଲେ । ଏହା ସାଧୁତାର ଲକ୍ଷଣ । ସାଧୁମାନେ ଅନ୍ୟ କାହାରିକୁ ଲଜ୍ଜାଜନକ ପରିସ୍ଥିତିରେ ପଡ଼ିବାର ଦେଖି ସହି ପାରନ୍ତି ନାହିଁ । ଏ ପ୍ରସଙ୍ଗରେ ଜନୈକ ଭକ୍ତର କଥା ଶୁଣନ୍ତୁ ।

ଜଣେ ବଡ଼ ସାଧୁ ଥିଲେ । ସେ କୌଣସି ଧୂମପାନ କରୁ ନ ଥିଲେ । ତାଙ୍କର ସଂସାରିସୁଲଭ ବିଳାସ ବା ଅଭିଳାଷ ନ ଥିଲା । କିନ୍ତୁ ସାଧୁ ସେବା ପ୍ରତି ସେ ବିଶେଷ ଆଗ୍ରହୀ ଥିଲେ । ଯେ କୌଣସି ପ୍ରକାର ସାଧୁ ଆସିଲେ ବି ସେ ତାଙ୍କର ଭଲଭାବରେ ସେବା କରୁଥିଲେ । କେବେହେଲେ କାହାକୁ ସେ ଅସନ୍ତୁଷ୍ଟ କରୁ ନ ଥିଲେ । ଦିନେ ଅନେକ ସାଧୁ ଏକତ୍ର ବସି ଭୋଜନ କରୁଥିଲେ । ସେମାନଙ୍କ ମଧ୍ୟରେ ବସିଥିଲେ ଜଣେ କଳାଆ ସାଧୁ । ଭାଙ୍ଗନିଶାରେ ସେ ଅଧିକ ଭୋଜନ କରୁଥିଲେ । ଭାଙ୍ଗ ବାଟି ଢାଳେ ପରିମାଣ ଭାଙ୍ଗ ପିଇ ଦେଉଥିଲେ ଏବଂ ସେହି ନିଶାରେ ବହୁପରିମାଣ ଖାଦ୍ୟ ଖାଇଦେଉଥିଲେ । ପରିବେଷଣ କରୁଥିବା ବ୍ୟକ୍ତି ସମସ୍ତଙ୍କୁ ସମାନଭାବେ ଖାଦ୍ୟବସ୍ତୁ ପରିବେଷଣ କରୁଥିବାର ଦେଖି ସେହି ସାଧୁ ଦୁଇଟି ପତ୍ର ପୃଥକ୍‌ଭାବେ ପକାଇଲେ । ସେବା ଲୋକ ତାଙ୍କ ଆଗରେ ପଡ଼ିଥିବା ପତ୍ରରେ ଖାଦ୍ୟ ପରଷିଲେ ମଧ୍ୟ ପାଖରେ ପଡ଼ିଥିବା ପତ୍ରରେ କିଛି ଦେଲେ ନାହିଁ । ଏହା ଦେଖି କଳାଆ ସାଧୁ କହିଲେ—"ଏ ପତ୍ରରେ ବି ଦିଅ ।"

ପରଷିବା ବ୍ୟକ୍ତି ପଚାରିଲେ—"ଏହି ପତ୍ର କାହାର ?"

ସାଧୁ କହିଲେ—"ଏହା ମୋ' ଭାଙ୍ଗ ବନ୍ଧୁଙ୍କର । ସେ ମୋ'ଠାରୁ ଅଧିକ ଖାଦ୍ୟ ଖାଆନ୍ତି । ଏହା ଶୁଣି ପରଷିବା ଲୋକକୁ ଖରାପ ଲାଗିଲା ।" ସେ କହିଲା—"ଏହା ସାଧୁଙ୍କ ପଂକ୍ତି । ଏଥିରେ ଅନ୍ୟ କାହାରି ସ୍ଥାନ ନାହିଁ । ଏତିକି କହି ସେ ସେହି ପତ୍ରରେ କିଛି ନ ଦେଇ ଚାଲିଗଲେ ।"

ଆଶ୍ରମର ଅଧିପତି ସାଧୁମହାରାଜ ଯେତେବେଳେ ଆସିଲେ ତାଙ୍କୁ ଦେଖି ଋଗିଆ ସାଧୁ ରାଗ ନଶାରେ ଅଇଁଠା ପତ୍ରକୁ ଉଠାଇ ତାଙ୍କ ଉପରକୁ ଫିଙ୍ଗିଦେଲେ । ଆଉ କହିଲେ—"ତୁମେ ଏହିପରି ସାଧୁସେବା କରୁଛ ? ମୋତେ ପ୍ରସାଦ ଦେଇ ମୋର ବନ୍ଧୁଙ୍କୁ ଉପାସରେ ରଖୁଛ ?"

ଏପରି ଅପ୍ରୀତିକର ଅବସ୍ଥା ଘଟିଲେ ମଧ୍ୟ ସାଧୁମହାରାଜ ନିଜ ଉପରେ ପଡ଼ିଥିବା ପ୍ରସାଦକୁ ଖୁଣ୍ଟି ଖୁଣ୍ଟି ଲୁଗାରେ ରଖିଲେ ଏବଂ ହାତ ଯୋଡ଼ି ନମ୍ରଭାବରେ କହିଲେ—"ଆଜି ମୋର ମହା ସୌଭାଗ୍ୟ । ସାଧୁମାନେ ଦୟାକରି ତାଙ୍କର ଭୁକ୍ତ ଶେଷ ପ୍ରସାଦ ମୋତେ ପ୍ରଦାନ କଲେ । କିନ୍ତୁ ଘଟଣାଟି ସବୁ ଶୁଣିବା ପରେ ସେ ପରଷିବା ଲୋକକୁ ଡାକି କଳିଆ ସାଧୁଙ୍କୁ କ୍ଷମା ମାଗିବା ପାଇଁ ଆଦେଶ ଦେଲେ ଏବଂ ତାକୁ ପରଷିବା କାମରୁ ଅବ୍ୟାହତି ଦେଲେ । ଏହାହିଁ ସାଧୁତାର ଆଦର୍ଶ । ତେଣୁ ଜଣେ ସାଧୁ ଭୁଲ୍ କଲେ ତା'ର ପ୍ରତିକାର ପାଇଁ କ୍ରୋଧ କରି ଦ୍ୱିତୀୟ ଭୁଲ୍ କରିବା ଉଚିତ ନୁହେଁ । କ୍ରୋଧ କରିଥିବା ଲୋକ ଯଥାସମୟରେ ତା'ର ଭୁଲ୍ ବୁଝିପାରିବ । ଆମର କ୍ରୋଧ ଅପେକ୍ଷା ସାଧୁତାର ପ୍ରଭାବ କ୍ରୋଧୀ ବ୍ୟକ୍ତି ଉପରେ ଅଧିକ ପ୍ରଭାବ ପକାଇଥାଏ । ଠିକ୍ ଏହିପରି ଆଉ ଏକ ଘଟଣା ଘଟିଥିଲା ।

ଥରେ ଏକ ମହୋତ୍ସବକୁ ବହୁଦୂରରୁ ଅନେକ ସାଧୁ ଆସିଥିଲେ । ସମସ୍ତେ କୁଡ଼ିଆ ଘରେ ରହୁଥିଲେ । ମହନ୍ତ ମହାରାଜ ସାଧୁମାନଙ୍କୁ ଦେଖିବା ପାଇଁ ଗଲେ । ଜଣେ ବୁଢ଼ା ସାଧୁ ଥିଲେ । ତାଙ୍କର ଧୂମ୍ରପାନ ଅଭ୍ୟାସ ଥିଲା । ସେ ଚିଲମରେ ଗଞ୍ଜେଇ ରଖି ନିଆଁ ଗୁଳା ଥୋଇ ମାତ୍ର ଦୁଇଥର ଟାଣିଛନ୍ତି କି ନାହିଁ ମହନ୍ତ ଆସୁଥିବାର ଦେଖିଲେ । ସେ ଚିଲମକୁ ଲୁଚାଇ ଦେଲେ । କିନ୍ତୁ ମହନ୍ତ ଏସବୁ ଦେଖି ସାରିଥିଲେ । ସେହି ସାଧୁଙ୍କ ପାଖରେ ପହଞ୍ଚି ମହନ୍ତ ଦୁଇ ଚାରି କଥା ପଚାରି ହଠାତ୍ ପେଟକୁ ଚିପି ଧରି କହିଲେ—"ପେଟରେ ବଡ଼ କଷ୍ଟ ହେଉଛି, କଣ କରିବି ? ଏହା କହି ସେ ବୁଢ଼ା ସାଧୁଙ୍କ ଆସନରେ ବସିପଡ଼ିଲେ ଆଉ କହିଲେ ଦୁଇଚୋଟ ଗଞ୍ଜେଇ ଟାଣିଦେଲେ ପେଟବ୍ୟଥା ମୋର ଭଲ ହୋଇଯାଆନ୍ତା । ମହନ୍ତଙ୍କ ଅନୁଗାମୀମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଯେ ଧୂଆଁ ପତ୍ର ସ୍ପର୍ଶ କରନ୍ତି ନି ସେ ଆଜି ଗଞ୍ଜେଇ ଟାଣିବେ ବୋଲି କହୁଛନ୍ତି କାହିଁକି ? ଏହାମଧ୍ୟରେ ବୁଢ଼ାସାଧୁ ଭାବିଲେ—ଏ ମଧ୍ୟ ଜଣେ ଧୂମ୍ରପାନ ଆଗ୍ରହୀ ସାଧୁ । ତେବେ ଅସୁବିଧା କଣ ? ସେ ସଙ୍ଗେ ସଙ୍ଗେ ଚିଲମ ଧରି କହିଲେ ଆଜ୍ଞା ନିଅନ୍ତୁ । ମହନ୍ତମହାରାଜ ଥରେ ଦୁଇଥର ଫୁଙ୍କି ଚିଲମଟି ବୁଢ଼ାସାଧୁଙ୍କ ହାତକୁ ବଢ଼ାଇ ଦେଇ ସେଠାରୁ ଚାଲିଗଲେ । ମହନ୍ତ ଚାଲିଗଲେ ଓ ବୁଢ଼ାସାଧୁ ଚିଲମ ଟାଣିବାରେ ଲାଗିଲେ । କିନ୍ତୁ ପରେ ବୁଢ଼ାସାଧୁ ଜଣକ ସବୁକଥା ବୁଝିପାରି ଧୂମ୍ରପାନ ଛାଡ଼ିଦେଇଥିଲେ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଦଣ୍ଡଦେବାଠାରୁ କ୍ଷମା, ସହିଷ୍ଣୁତାର ପ୍ରଭାବ ଅଧିକ । ଯଦି ଚିତ୍ରକେତୁ ପାର୍ବତୀଙ୍କ ପ୍ରତି କ୍ରୋଧ ପ୍ରକାଶ କରି ଅଭିଶାପ ଦେଇଥାନ୍ତେ

ତେବେ ତାହା ସାଧୁତାର ବିରୋଧାଚରଣ ହୋଇଥାନ୍ତା । ସାମର୍ଥ୍ୟ ଥାଇ ମଧ୍ୟ ସହିଯିବା ହେଉଛି ସାଧୁତାର ଲକ୍ଷଣ । ଏହି କଥା ବୁଝାଇବାକୁ ଯାଇ ମହାଦେବ ପାର୍ବତୀଙ୍କୁ କହିଲେ—"ଦେବି ! ତୁମେ ଏହି ଘଟଣାରୁ ଶିକ୍ଷା ଲାଭ କର । ଭକ୍ତଙ୍କର ମହତ୍ତ୍ୱକୁ ଅନୁଭବ କର । ଭଗବଦ୍‌ଭକ୍ତଙ୍କ ପକ୍ଷରେ ଶାପ, ଅନୁଗ୍ରହ, ସ୍ୱର୍ଗ, ନର୍କ, ସୁଖ, ଦୁଃଖ ସବୁକିଛି ସମାନ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଶିବ ଏତିକି କହି ନୀରବ ହେଲେ ନାହିଁ । ସେ ଆହୁରି ଅନେକ ଭଗବଦ୍‌ଭକ୍ତଙ୍କ କଥା କହିଲେ । ସେସବୁ କଥା ମୁଁ ଏହା ପରେ କହୁଛି, ଆପଣମାନେ ଧୀରସ୍ଥିର ଚିତ୍ତରେ ଶୁଣନ୍ତୁ ।"

### ଛପ୍‌ପୟ

ଭକ୍ତନ କେ ଜୋ ଦାସ୍ ଦୋଷ ଦେଖେ ନହିଁ ଜନକେ ।
ଅନୁଚିତ ଯଦି କଛୁ କରେଁ କର୍ମ ନିନ୍ଦେ ନହିଁ ଉନକେ ।।
ଋଷି ମୁନି ସୁର ନର ଚରନକମଳ ପୂଜେଁ ନିତ ଜିନକେ ।
ମେରେ ହୂ ଜୋ ଇଷ୍ଟ ନୃପତି ଅନୁଗତ ହୈଁ ତିନକେ ।।
ଗତ ବିସ୍ମୟ ହ୍ୱୈ ନୃପ ଗୟେ, ଘୋର ଶାପ ଦିୟୋ ଇନ୍ହେ ।
ଜେ ଅଚ୍ୟୁତପ୍ରିୟ ଭକ୍ତ ହୈଁ, ନହୀଁ ଅଶକ୍ୟ ହୈ କଛୁ ତିନ୍ହେ ।।



# ବୃତ୍ରାସୁର ଚରିତ ସମାପ୍ତି

କଣ୍ଠେ ତ୍ୱଷ୍ଟୁର୍ଦକ୍ଷିଣାଗ୍ନେର୍ଦାନବୀଂ ଯୋନିମାଶ୍ରିତଃ ।
ବୃତ୍ର ଇତ୍ୟଭିବିଖ୍ୟାତୋ ଜ୍ଞାନବିଜ୍ଞାନ ସଂଯୁତଃ ॥
ଏତତ୍ତେ ସର୍ବମାଖ୍ୟାତଂ ଯନ୍ମାଂ ତ୍ୱଂ ପରିପୃଚ୍ଛସି ।
ବୃତ୍ରସ୍ୟାସୁରଜାତେଶ୍ଚ କାରଣଂ ଭଗବନ୍ମତେ ॥

(ଶ୍ରୀମଦ୍ଭାଗବତ-୬ଷ୍ଠ ସ୍କନ୍ଧ-୧୭ଅ, ୩୮-୩୯ ଶ୍ଳୋ)

## ଛପ୍ପୟ

ଯୋ ମହିମା ଗିରିକେଶ ବିଷ୍ଣୁ ଭକ୍ତନି କୀ ଗାଈ ।
ସୁନି ଅତି ସହମି ଶିବା ଚିତ୍ତମହଁ ହମତା ଆଈ ॥
ବୋଲେ ଶୁକ ଅଭିମନ୍ୟୁ ତନୟ ତବଇ ତ୍ୱଷ୍ଟା ମୁନି ।
କର୍‌ୟୋ ଇନ୍ଦ୍ର ପେ କୋପ ମରଣ ସୁତ ବିଶ୍ୱରୂପ ସୁନି ॥
ଚିତ୍ରକେତୁ ବେ ଛି ନୃପତି, ଅସୁର ଯୋନିକୁଁ ପାଇକେ ।
ଭୟେ ପ୍ରକଟ ଦକ୍ଷିଣ ଅନଲ, ତେଁ ମୁନି ମଖ ମହଁ ଆଇକେ ॥

ସାଧୁ, ସନ୍ଥମାନେ ବସ୍ତ୍ର ପିନ୍ଧନ୍ତି; କିନ୍ତୁ ଦେହକୁ ସଜେଇବା ସେମାନଙ୍କର ଲକ୍ଷ୍ୟ ନୁହେଁ । ବସ୍ତ୍ର ପିନ୍ଧନ୍ତି ଶୀତୋଷ୍ଣ ନିବାରଣ ପାଇଁ । ତ୍ୟାଗୀ ଲୋକେ ମଧ୍ୟ ଭୋଜନ କରନ୍ତି, ପାଣି ପିଅନ୍ତି । ଏହା ସ୍ୱାଦ ପାଇଁ ନୁହେଁ. କ୍ଷୁଧା, ପିପାସା ଶାନ୍ତ କରିବାପାଇଁ ସେମାନେ ଖିଆ-ପିଆ କରନ୍ତି । ଅନ୍ନ, ଜଳ, ବସ୍ତ୍ର ତଥା ଅନ୍ୟାନ୍ୟ ଜୀବନୋପଯୋଗୀ ବସ୍ତୁ ସେମାନେ ଗ୍ରହଣ କରନ୍ତି । କାରଣ, ଏ ଶରୀର କୌଣସିମତେ ଚଳିଯାଉ । ତେଣୁ ସାଧୁସନ୍ଥମାନେ ସୌନ୍ଦର୍ଯ୍ୟ, ମୃଦୁତା ତଥା ସ୍ୱାଦୁତା ଉପରେ କୌଣସି ପ୍ରକାର ଗୁରୁତ୍ୱ ଦିଅନ୍ତିନାହିଁ । ସେହିପରି ଭକ୍ତର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଭଗବାନ୍‌ଙ୍କୁ ସ୍ମରଣ କରିବା । ଯେ କୌଣସି ଯୋନିରେ ଜନ୍ମ ହୋଇ ଯଦି ଭଗବତ୍ ସ୍ମରଣ ସମ୍ଭବ ହୋଇପାରୁଛି ତେବେ ସେହି ଯୋନି ସେମାନଙ୍କ ପକ୍ଷରେ ଶ୍ରେଷ୍ଠ । ଇନ୍ଦ୍ର, ବରୁଣ, କୁବେର ବା ସେହିପରି ଅନ୍ୟ କିଛି ହେଲେ ଯଦି ଆଉ ଭକ୍ତି ରହେ ନାହିଁ ତେବେ ଦେବଯୋନିରେ ଜନ୍ମହୋଇ ଲାଭ କଣ ? ଯଦି ଶୂକର, ଶ୍ୱାନ ଆଦି ଯୋନିରେ ଜନ୍ମଗ୍ରହଣ କରି ହରିସ୍ମରଣ ସମ୍ଭବ ହେଉଛି ତେବେ ଦେବଯୋନି ଅପେକ୍ଷା ତାହା ଶ୍ରେୟସ୍କର ।

ଭୂଷଣ୍ଡ କାକ ଗୁରୁଙ୍କ ଅଭିଶାପବଶତଃ ବ୍ରାହ୍ମଣ ଶରୀର ତ୍ୟାଗ କରି ମଳ ଭକ୍ଷଣ କରୁଥିବା ପକ୍ଷୀଯୋନିରେ ଜନ୍ମ ହେଲା । ପକ୍ଷୀଯୋନିରେ କାକକୁ ଚଣ୍ଡାଳ କୁହାଯାଏ । ପରେ ଗୁରୁକୃପାବଶତଃ ସେ ବର ପାଇଥିଲା ଯେ, ନିଜ ଇଚ୍ଛା ଅନୁସାରେ ଯେ କୌଣସି ରୂପ ଧାରଣ କରିପାରିବ । ଏପରି ସୌଭାଗ୍ୟ ଲାଭକରି ମଧ୍ୟ ସେ କାକଯୋନି ପରିତ୍ୟାଗ କଲାନାହିଁ । କେବଳ ସେତିକି ନୁହେଁ, ଭଗବଦ୍ ଭକ୍ତି ଲାଭ କରିଥିବାରୁ ସେ କାକଯୋନିକୁ ହିଁ ଶ୍ରେୟସ୍କର ମନେକଲା । ପକ୍ଷୀମାନଙ୍କ ମଧ୍ୟରେ ଜଟାୟୁ ଅଧମ ଗୃଧ୍ର ଶରୀର ଲାଭ କରିଥିଲା । କିନ୍ତୁ ସେହି ଶରୀର ଦ୍ୱାରା ସେ ଭଗବତ୍ ସେବା କରିବା ପାଇଁ ଅଧିକ ସୁବିଧା ପାଇଥିବାରୁ ଆନନ୍ଦିତ ହୋଇଥିଲା । ଭକ୍ତମାନଙ୍କ ଦୃଷ୍ଟିରେ ବାହ୍ୟ ଶରୀରର ଆକୃତିରେ କୌଣସି ମହତ୍ତ୍ୱ ନାହିଁ । ମନ ଭଗବାନ୍‌ଙ୍କ ପାଖରେ ଥିଲେ ଯେକୌଣସି ଯୋନିରେ ଜନ୍ମ ମିଳିଲେ ବି ସେଥିରେ ଦୁଃଖ କରିବାର କିଛି ନାହିଁ । ସେଥିପାଇଁ ବିଦ୍ୟାଧରାଧିପ ମହାରାଜ ଚନ୍ଦ୍ରକେତୁ ଆସୁରୀ ଯୋନି ଲାଭ କରି ମଧ୍ୟ ଦୁଃଖିତ ହୋଇ ନଥିଲେ । ସେଠାରେ ବି ସେ ପୂର୍ବପରି ଭଗବଦ୍ ଭକ୍ତ ହୋଇ ରହିଲେ ।

ଦେବଦେବ ମହାଦେବ ପାର୍ବତୀଙ୍କୁ କହିଲେ—"ହେ ପାର୍ବତି ! ଭକ୍ତମାନଙ୍କଠାରେ ଦ୍ୱୈତଭାବନା ରହେ ନାହିଁ । ସେମାନେ ସବୁଠି ସର୍ବଜ୍ଞ, ସର୍ବବ୍ୟାପକ ନିଜର ସ୍ୱାମୀଙ୍କ ଅସ୍ତିତ୍ୱ ଅନୁଭବ କରନ୍ତି । ସ୍ୱର୍ଗ ହେଉ ବା ନର୍କ ହେଉ, ଦେବଯୋନି ହେଉ ବା ପତଙ୍ଗ-ଯୋନି ହେଉ, ସେ ବିଚାର ସେମାନେ କରନ୍ତି ନାହିଁ । ପ୍ରୟାଗ ହେଉ ବା ପୁରୁଷୋତ୍ତମ ହେଉ ସର୍ବତ୍ର ସେମାନେ ସମଭାବନା ପୋଷଣ କରନ୍ତି । ସେମାନେ ଦୃଢ଼ଭାବେ ବିଶ୍ୱାସ କରନ୍ତି ଯେ, କେହି କାହାକୁ ଦୁଃଖ ବା ସୁଖ ଦେବାପାଇଁ ସମର୍ଥ ନୁହେଁ । କେହି ନିଜ ଇଚ୍ଛାରେ ମଧ୍ୟ କାହାରିକୁ ଅଭିଶାପ ବା ବର ପ୍ରଦାନ କରିପାରେ ନାହିଁ । ଜୀବର ସୁଖ-ଦୁଃଖ, ଜନ୍ମମରଣ, ଶାପଅନୁଗ୍ରହ ଆଦି ସମସ୍ତ ପ୍ରକାର ଦ୍ୱୈତଅବସ୍ଥା ଭଗବାନ୍‌ଙ୍କର ଲୀଳା ମାତ୍ର । ଦେବ ଓ ତର୍ଯକଗଣଙ୍କ ଦୈହିକ ସଂଯୋଗରୁ ଏହାର ଉଦ୍ଭବ । ଆତ୍ମାରେ ଦେବ, ମନୁଷ୍ୟ, ପଶୁ, ପକ୍ଷୀ ପ୍ରଭୃତିର ଭେଦଭାବନା ନାହିଁ, କାରଣ, ଆତ୍ମା ସର୍ବତ୍ର ସମାନ ଭାବେ ପରିବ୍ୟାପ୍ତ ।"

ମହାଦେବଙ୍କ କଥା ଶୁଣି ପାର୍ବତୀ ପଚାରିଲେ—"ପ୍ରଭୋ ! ଯଦି ସର୍ବତ୍ର ଆତ୍ମସତ୍ତା ସମାନ ତେବେ ଏ ଦେବତା, ଏ ପୂଜନୀୟ, ଏ ଅସୁର, ଏ ଅନାଦରଣୀୟ, ଏପରି ଭେଦ-ଭାବ ଓ ଭ୍ରମ ସୃଷ୍ଟି ହେଉଛି କିପରି ? ଲୋକେ ଦେବତାମାନଙ୍କୁ କାହିଁକି ଶ୍ରେଷ୍ଠ ବୋଲି ମନେ କରନ୍ତି ଏବଂ ଆସୁରୀ ଯୋନିକୁ ନିନ୍ଦା କରନ୍ତି ?"

ସଦାଶିବ ଉତ୍ତର ଦେବାକୁ ଯାଇ କହିଲେ—"ପ୍ରିୟେ ! ଏହା ବ୍ୟବହାରର କଥା । ବାସ୍ତବତଃ ଆତ୍ମାରେ କୌଣସି ପ୍ରକାର ଭେଦଭାବନା ନାହିଁ । ସ୍ୱପ୍ନରେ ସୁଖଦୁଃଖର ପ୍ରତୀତି-ଭେଦ ଭ୍ରମବଶତଃ ସୃଷ୍ଟି ହୁଏ । ଅନ୍ଧାରରେ ଜାଗ୍ରତ ଅବସ୍ଥାରେ ଥିଲେ ବି ଭୂତର ଭ୍ରମ ଜାତ ହୁଏ । ଦୂରରୁ କାଠର ହାତୀକୁ ଦେଖି ପ୍ରକୃତ ହାତୀ ବୋଲି ଜଣାପଡ଼େ । ଏସବୁ ଅଜ୍ଞାନତା ହେତୁ ଘଟିଥାଏ । କିନ୍ତୁ ଜାଗ୍ରତ ହେବା ପରେ, ଜ୍ଞାନୋଦୟ ହେଲା ପରେ,

ନିକଟରେ ପହଞ୍ଚିବା ପରେ ଏ ପ୍ରକାର ଭେଦଭାବନା ଦୂର ହୋଇଯାଏ । ଭକ୍ତ ଭଗବାନଙ୍କ ପାଖରେ ହିଁ ଥାଏ । ତେଣୁ ତା'ର ଭ୍ରମ ଜାତ ହୁଏ ନାହିଁ । ଭକ୍ତମାନେ ଭକ୍ତିକୁ ପ୍ରାଧାନ୍ୟ ଦିଅନ୍ତି । ଯେ ଭଗବାନ୍ ବାସୁଦେବଙ୍କ ଭକ୍ତ, ସେ ଦୁର୍ବଳ କି ଭୟଭୀତ ହୁଏନାହିଁ । ଜ୍ଞାନ ଓ ବୈରାଗ୍ୟ ବଳରେ ସେ ସଦା ବଳବାନ୍ ଥାଏ । ସେ ଯେ କୌଣସି ଯୋନିରେ ଜନ୍ମ ଗ୍ରହଣ କଲେ ମଧ୍ୟ ନିର୍ଭୟ ହୋଇ ରହେ । ସେ ଭଗବାନ୍ ବ୍ୟତୀତ ଏ ସଂସାରରେ ଅନ୍ୟ କାହାରିଠାରେ ଆଶ୍ରୟ ନେବାକୁ ଚାହେଁନାହିଁ । ଯଦି ଶୂକର ଯୋନିରେ ଜନ୍ମ ହୋଇ ମଧ୍ୟ ଭକ୍ତିଭାବ ଜାଗ୍ରତ ହେଲା ତେବେ ସେହି ଯୋନିକୁ ସେ ଶ୍ରେଷ୍ଠ ବୋଲି ଗ୍ରହଣ କରେ । ଭକ୍ତିହୀନ ହୋଇ ଦେବଯୋନିରେ ଜନ୍ମ ହେବାର କୌଣସି ମୂଲ୍ୟ ନାହିଁ ।"

ମହର୍ଷି ଶୌନକ ପଚାରିଲେ—"ହେ ସୂତ ! ତଥାପି ଶ୍ରେଷ୍ଠ ଯୋନି ମଧ୍ୟରେ ଶ୍ରେଷ୍ଠତା କି ରହିଛି । ଏହା କିପରି ବିଚାର କରାଯାଉଛି ?"

ମହର୍ଷି ସୂତ କହିଲେ—"ହଁ ମହାରାଜ ! ଶ୍ରେଷ୍ଠତା ରହିବ ନାହିଁ କାହିଁକି ? କିନ୍ତୁ ଏହା ସାଧନ, ଭଜନର ସୁଗମତା ପାଇଁ କରାଯାଇଛି, ମାତ୍ର ଏହା ଶାରୀରିକ ଗଠନର ଭେଦଭାବରୁ ସୃଷ୍ଟି ହୋଇନାହିଁ । ମନୁଷ୍ୟ ଯୋନିରେ ହିଁ ଅଧିକ ସାଧନ, ଭଜନ, ଭଗବତ୍ ଚିନ୍ତନ ତଥା ପରମାର୍ଥ ସାଧନ କରାଯାଇଥାଏ । ତେଣୁ ମନୁଷ୍ୟ ଯୋନିକୁ ସର୍ବଶ୍ରେଷ୍ଠ କୁହାଯାଇଛି । ଯଦି ଦୁର୍ଲ୍ଲଭ ମାନବ ଦେହ ସହଜରେ ପାଇ ମଧ୍ୟ ସଂସାର ସାଗରକୁ ପାର ହୋଇ ପ୍ରଭୁଙ୍କ ପାଦପଦ୍ମରେ ପହଞ୍ଚି ନହୁଏ ତେବେ ସେପରି ବ୍ୟକ୍ତି ଆତ୍ମହା ବା ଆତ୍ମଘାତୀ ବୋଲି ଅଭିହିତ ହୁଏ । ଭକ୍ତ ଚାହେଁ ଭଗବତ୍ ପ୍ରେମ । ଯଦି ପଶୁରୂପେ ଜନ୍ମ ହୋଇ ମଧ୍ୟ ତାହା ପାଇବାରେ ଅସୁବିଧା ଆସେ ନାହିଁ ତେବେ ଭକ୍ତ ଆନନ୍ଦରେ ପଶୁଯୋନିକୁ ବରଣ କରି ନିଏ ।

ହେ ମୁନିଗଣ ! ଏ ବିଷୟରେ ମୁଁ ଆପଣମାନଙ୍କୁ ଏକ ସୁନ୍ଦର କାହାଣୀ କହୁଛି । କାଞ୍ଚିପୁରରେ ପୂର୍ବେ ଜଣେ ଭଗବଦ୍‌ଭକ୍ତ ବୈଷ୍ଣବ ଥିଲେ । ଭଗବାନ୍ କିପରି ତାଙ୍କ ପ୍ରତି ଶୀଘ୍ର କୃପା ପ୍ରଦର୍ଶନ କରିବେ, ତାହାହିଁ ସେ ସବୁବେଳେ ଭାବୁଥାନ୍ତି । କିପରି ଶୀଘ୍ର ଭଗବାନ୍‌ଙ୍କର ଅଧିକ ସ୍ନେହଭାଜନ ହେବେ ସେ କଥା ଚିନ୍ତା କରୁଥାନ୍ତି ।

ଦିନେ ସେ ସାଧୁ ବସିଥାନ୍ତି । ସେ ଦେଖିଲେ ଜଣେ ଧନୀଲୋକ ରଥରେ ବସି ଯାଉଛନ୍ତି । ତାଙ୍କ ସଙ୍ଗରେ ତାଙ୍କ ଧର୍ମପତ୍ନୀ ଥାନ୍ତି । କୁକୁରଟିଏ ତାଙ୍କ କୋଳରେ ବସିଥାଏ । ପତିପତ୍ନୀ ଉଭୟେ ସେ କୁକୁରକୁ ଖୁବ୍ ଆଦର କରୁଥାନ୍ତି । କେତେବେଳେ ତା' ଗାଲ ଆଉଁଷାଉଥାନ୍ତି ତ କେତେବେଳେ ତାକୁ ଚିପି ଧରୁଥାନ୍ତି । ତା'ର ଲମ୍ବା ଲୋମକୁ ଅଙ୍ଗୁଳି ଚଳାଇ ସାଉଁଳୁଥାନ୍ତି । ବୈଷ୍ଣବ ସାଧୁ ଏହା ଦେଖି ବଡ଼ ଖୁସି ହେଲେ । ସେ ଥିଲେ ଜଣେ ପ୍ରେମୀ । ପ୍ରେମ ବିଷୟ ଯାହା ଦେଖୁଥିଲେ ସେଥିରେ ମଜ୍ଜିଯାଉଥିଲେ । ଖାଦ୍ୟ ଦେଖିଲେ ମନ ଯେମିତି ଖୁସି ହୁଏ, ଧୂମ୍ରପାୟୀ ଧୂମ୍ରପାନ କରୁଥିବାର ଦେଖିଲେ ଯେପରି ଧୂମ୍ରପାନ ପାଇଁ ବ୍ୟଗ୍ର ହୁଏ, ସେହିପରି ସାଧୁଙ୍କ ମନ ଚଞ୍ଚଳ ହେଲା । ସେ କୌଣସି ପ୍ରିୟତମ ବ୍ୟକ୍ତି ପ୍ରେମ କରୁଥିବାର ଦେଖିବାମାତ୍ରେ ବିଭୋର ହୋଇପଡ଼ନ୍ତି ।

ବୈଷ୍ଣବ ସାଧୁ ଭାବିଲେ — 'ଆହା, ସପତ୍ନୀକ ଭଦ୍ରମହାଶୟ ନିଜର କୁକୁରକୁ କେତେ ସ୍ନେହ କରୁଛନ୍ତି । ମୁଁ ଯଦି କୁକୁରଟିଏ ହୋଇଥାନ୍ତି କେତେ ମଜା ହୁଅନ୍ତା । ଲକ୍ଷ୍ମୀବରିଦ ରମାରମଣ ମୋତେ ବି ଏହିପରି ଆଦର କରନ୍ତେ । ସେହିଦିନଠାରୁ ସେ ନିଜକୁ ଏକ କୁକୁର ବୋଲି ଭାବିଲେ । କୁକୁର ପରି ଚାଲିଲେ । ବୈଷ୍ଣବମାନଙ୍କ ଉଚ୍ଛିଷ୍ଟ ପତ୍ରକୁ କୁକୁର ପରି ଚାଟିବାକୁ ଲାଗିଲେ । କେହି କିଛି ପକାଇଦେଲେ କୁକୁର ପରି ଖାଉଥିଲେ । ନଦୀରେ ମଧ୍ୟ ସେହିପରି ପାଣି ପିଇଲେ । ଯେଉଁଠି ସେଇଠି ମଳମୂତ୍ର ତ୍ୟାଗ କଲେ । କେହି ବାଡ଼େଇଲେ ସେ କୁକୁର ପରି କାଁ କାଁ ଶବ୍ଦ କରି ପଳାଇଯାଉଥିଲେ । ମୋଟାମୋଟି କଥା, ସେ ନିଜକୁ ଗୋଟିଏ କୁକୁର ବୋଲି ଭାବିନେଲେ । ଭଗବାନ୍ ବୈଷ୍ଣବ ଉପରେ ପ୍ରସନ୍ନ ହେଲେ ଓ ତାଙ୍କୁ ବର ପ୍ରଦାନ କଲେ ।''

ହେ ମୁନିଗଣ ! ''ଯେଉଁ ଦେହରେ ଭଗବତ୍ ନାମକୀର୍ତ୍ତନ କରାଯାଏ ତାହାହିଁ ଶ୍ରେଷ୍ଠ ଦେହ । କିନ୍ତୁ କାମଦେବ ପରି ସୁନ୍ଦର ହୋଇ ସାଂସାରିକ ଭୋଗବିଳାସରେ ମାତି ଭଜନ ନକଲେ ମନୁଷ୍ୟ ଜନ୍ମ ପାଇ ଲାଭ କଣ ? ଏହି କଥା ବୁଝାଇ ଶିବ ପାର୍ବତୀଙ୍କୁ କହିଲେ— ଦେବି ! ଭଗବାନଙ୍କ ମହିମା ଓ ତାଙ୍କ ଲୀଳାକୁ ସମସ୍ତେ ଜାଣିପାରନ୍ତି ନାହିଁ । ସାଧାରଣ ଲୋକଙ୍କ କଥା ଛାଡ଼, ମୁଁ ନିଜେ ତାଙ୍କର ମହତ୍ତ୍ୱ ଭଲଭାବରେ ଜାଣେ ନାହିଁ । ବ୍ରହ୍ମା, ସନକାଦି ମହର୍ଷି, ନାରଦ ମୁନି, ମରୀଚୀ, ଅତ୍ରି, ଅଙ୍ଗିରା ଆଦି ବ୍ରହ୍ମାଙ୍କ ପୁତ୍ର ତଥା ଅନ୍ୟ ଲୋକପାଳ ଆଦି ପ୍ରଧାନ ପ୍ରଧାନ ଦେବଗଣ ମଧ୍ୟ ତାଙ୍କର ସ୍ୱରୂପ ଜାଣିବା ପାଇଁ ସମର୍ଥ ହୋଇପାରି ନାହାନ୍ତି । ସଂସାରୀ ଲୋକେ ମୂର୍ଖତାବଶତଃ ନିଜକୁ ସବୁବିଷୟରେ ସମର୍ଥ ବୋଲି ଭାବନ୍ତି । ରାଜା ଚିତ୍ରକେତୁ ଏପରି ସହିଷ୍ଣୁ ହୋଇଛନ୍ତି କେବଳ ଭଗବାନ୍ ପ୍ରତି ଅହୈତୁକ ଭକ୍ତି କାରଣରୁ । ଭଗବଦ୍ ଭକ୍ତିରୁ ହିଁ ସହିଷ୍ଣୁଭାବ ଉଦୟ ହୁଏ । ତେଣୁ ତୁମେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ଭଗବଦ୍ ଭକ୍ତଙ୍କ ପକ୍ଷରେ କୌଣସି କାର୍ଯ୍ୟ ଦୁଷ୍କର ନୁହେଁ କି କିଛି ଅସମ୍ଭବ ନୁହେଁ ।''

ଶ୍ରୀ ଶୁକଦେବ କହିଲେ—''ରାଜନ୍ ! ଭଗବାନ୍ ଶଙ୍କରଙ୍କ ମୁଖରୁ ସବୁକଥା ଶୁଣି ମାର୍ବତୀଙ୍କର ବିସ୍ମୟଭାବ କଟିଗଲା । ପାର୍ବତୀଙ୍କ ଦ୍ୱାରା ଅଭିଶପ୍ତ ହୋଇଥିବା ଚିତ୍ରକେତୁ ଅସୁରରୂପେ ଜନ୍ମ ହେଲେ । ତ୍ୱଷ୍ଟାମୁନି କ୍ରୁଦ୍ଧ ହୋଇ ବିଶ୍ୱରୂପକୁ ବଧ କରିଥିବାରୁ ଦେବରାଜ ଇନ୍ଦ୍ରଙ୍କ ଶତ୍ରୁ ବୃଦ୍ଧି ନିମିତ୍ତ ଯେତେବେଳେ ଦକ୍ଷିଣାଗ୍ନିରେ ଆହୁତି ଦେଲେ ସେତେବେଳେ ସେହି ଯଜ୍ଞାଗ୍ନିରୁ ଚିତ୍ରକେତୁ ବୃତ୍ରନାମ ଧାରଣ କରି ଜନ୍ମ ଗ୍ରହଣ କଲେ । ଜନ୍ମ ହେବା ପରେ ପରେ ସେ ତ୍ରିଭୁବନଲୋକକୁ ଆବୃତ କରିବାରୁ ତାଙ୍କର ନାମ ହେଲା ବୃତ୍ରାସୁର । କିନ୍ତୁ ମୂଳତଃ ସେ ଭଗବାନ୍ ଅଚ୍ୟୁତଙ୍କ ଅନନ୍ୟ ଭକ୍ତ ହେଲେ ।''

ହେ ରାଜନ୍ ! ତୁମେ, ଅସୁର କୁଳରେ ଜନ୍ମହୋଇ ବୃତ୍ର କିପରି ଏତେ ବଡ଼ ଭକ୍ତ ହେଲା ବୋଲି ଯେଉଁ ଆଶଙ୍କା କରୁଥିଲ ତାହା ଦୂର କରିବା ପାଇଁ ମୁଁ ରାଜର୍ଷି ଚିତ୍ରକେତୁଙ୍କ ଉପାଖ୍ୟାନ କହିଲି । ଏଥର ଆପଣଙ୍କର ଆଶ୍ଚର୍ଯ୍ୟଭାବ ନିଶ୍ଚୟ କଟିଯାଇଥିବ । ବର୍ତ୍ତମାନ ଆଉ କଣ ଶୁଣିବା ପାଇଁ ଇଚ୍ଛା କରୁଛନ୍ତି, ତାହା କୁହନ୍ତୁ ।''

ମହାରାଜ ପରୀକ୍ଷିତ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ—"ଭଗବନ୍ ! ଆପଣ ଏକ ଉପାଦେୟ କଥା କହିଲେ । ଭଗବଦ୍‌ଭକ୍ତଙ୍କ ମହିମା ସେପରି ନ ହେବ ବା କାହିଁକି ? ଶ୍ରଦ୍ଧାପୂର୍ବକ ଯେଉଁମାନେ ଭାଗବତ କଥା ଶୁଣନ୍ତି ସେମାନଙ୍କର ପାପ ତାପ ନିଶ୍ଚୟ ଦୂର ହୋଇଯାଉଥିବ ।"

ଶ୍ରୀ ଶୁକଦେବ ହସି ହସି କହିଲେ—"ରାଜନ୍ ! ଭାଗବତ କଥା ଶ୍ରବଣରେ ସଂସାର-ବନ୍ଧନ ତୁଟିଯାଏ, ଏଥିରେ ସନ୍ଦେହ ନାହିଁ । ବିଷ୍ଣୁଭକ୍ତଙ୍କ ମାହାତ୍ମ୍ୟ ପରି ମହାତ୍ମା ଚିତ୍ରକେତୁଙ୍କ ପବିତ୍ର ଇତିହାସକୁ ଯେ ଶ୍ରଦ୍ଧା ଓ ଭକ୍ତିଯୁକ୍ତ ହୋଇ ଏକାଗ୍ର ଚିତ୍ତରେ ଶୁଣେ ତା'ର ସମସ୍ତ ସନ୍ତାପ ଦୂର ହୁଏ ଓ ସେ ଭବବନ୍ଧନରୁ ମୁକ୍ତ ହୋଇଯାଏ । ଭଗବାନ୍‌ଙ୍କ ଚରିତ ଅପେକ୍ଷା ଭକ୍ତର ଚରିତକୁ ଶ୍ରେଷ୍ଠସ୍ଥାନ ଦିଆଯାଇଛି । କାରଣ ଏଥିରେ ଭଗବାନ୍‌ଙ୍କ ଭକ୍ତବାତ୍ସଲ୍ୟ, କରୁଣା, ଅହୈତୁକୀ କୃପା ସହିତ ଭକ୍ତର ମହିମା ବର୍ଣ୍ଣିତ ହୋଇଥାଏ । ଭଗବାନ୍‌ଙ୍କ ମହତ୍ତ୍ୱ ପ୍ରଖ୍ୟାପନ ହିଁ ଭକ୍ତଚରିତର ପ୍ରଧାନ ବିଷୟ । ଭକ୍ତ ସର୍ବଦା ଭକ୍ତିରେ ନିମଗ୍ନ ଥାଏ । ଭକ୍ତି ବ୍ୟତୀତ ସଂସାରରେ ତା'ର ଅନ୍ୟ କୌଣସି ମୂଲ୍ୟବାନ୍ ବସ୍ତୁ ନଥାଏ ।"

ଯେଉଁ ବ୍ୟକ୍ତି ସକାଳେ ନିଦ୍ରାତ୍ୟାଗ କରିବା ପରଠାରୁ ଭଗବାନ୍‌ଙ୍କୁ ସ୍ମରଣ କରି ଭକ୍ତବର୍ଗଙ୍କ ଇତିହାସକୁ ପଢ଼େ, ଶୁଣେ ଓ ଶୁଣାଏ ସେ ପରମପଦର ଅଧିକାରୀ ହୁଏ, ଏଥିରେ ଆଦୌ ସନ୍ଦେହ କରିବାର ଅବକାଶ ନାହିଁ । ରାଜନ୍ ! ଆପଣ କେବେହେଲେ ଏକଥା ଭୁଲିବେ ନାହିଁ । ତ୍ୱଷ୍ଟାବଂଶ ବର୍ଣ୍ଣନା ପ୍ରସଙ୍ଗରେ ମୁଁ ଆପଣଙ୍କୁ ବିଶ୍ୱରୂପଙ୍କ ଜନ୍ମ ଓ ସଂକ୍ଷେପରେ ବୃତ୍ରାସୁର କଥା କହିଲି । ଏବେ ଆପଣ ଆଉ କଣ ଶୁଣିବା ପାଇଁ ଇଚ୍ଛୁକ ଅଛନ୍ତି ତାହା କୁହନ୍ତୁ ।

## ଛପ୍ପୟ

ଜେ ପବିତ୍ର ଯୁଦ୍ଧ ଚରିତ ବୃତ୍ର କୋ ସୁନେ ସୁନାୱେଁ ।
ବଡ଼ଭାଗୀ ତେ ମନୁଜ ପରମପଦ ନିଶ୍ଚୟ ପାୱେଁ ॥
କହେ ଉଭୟ ତନୟ ଅଦିତି କେ ଶେଷ ବଂଶ କୂଁ ।
ପ୍ରଭୁ ସୁନାଓଁ ଅବସି କଥା ଜେ ବଢେ ଅଂଶ କୂଁ ॥
ଶୁକ ବୋଲେ—ସବିତା ବରୁଣ, ମିତ୍ର ବିଧାତା ଉରୁକ୍ରମ ।
ଧାତା ଭଗକେ ବଂଶ କୂଁ, କହୂଁ, ସୁନୈଁ, ତେଁ ଭଜେ ଭ୍ରମ ॥



# ଅଦିତି ବଂଶ ବର୍ଣ୍ଣନ

ପୃଶ୍ନିସ୍ତୁ ପତ୍ନୀ ସବିତୁଃ ସାବିତ୍ରୀଂ ବ୍ୟାହୃତିଂ ତ୍ରୟୀମ୍ ।
ଅଗ୍ନିହୋତ୍ରଂ ପଶୁଂ ସୋମଂ ଚାତୁର୍ମାସ୍ୟଂ ମହାମଖାନ୍ ॥

(ଶ୍ରୀମଦ୍ଭାଗବତ—୬ସ୍କନ୍ଧ-୧୮ଅ-୧ଶ୍ଳୋ)

## ଛପ୍ପୟ

ସବିତା ପତ୍ନୀ ପୃଶ୍ନି ଜନେ ତିନି ସବ ଯଜ୍ଞାଦିକ ।
ଭଗଙ୍କ ପତ୍ନୀ ସିଦ୍ଧି ଜନେ ସୁତ ତିନି ସୁତା ଇକ ॥
ଧାତା ପତ୍ନୀ କୁହୂ ସିନୀବାଲୀ ରାକା ଅରୁ ।
ଅନୁମତି ମୈତ୍ରୀ ପତ୍ନୀ ଭୟେ ସୁତ ସବକେ ସୁନ୍ଦରୁ ॥
ସାୟଂ ପ୍ରାତଃ ଦର୍ଶ ଅରୁ, ପୂର୍ଣ୍ଣ ମାସ ସୁତ ଅତି ବିମଲ ।
କ୍ରିୟା ବିଧାତା କୀ ବହୂ, ଜନେ ପୁରୀ ଷ୍ୟାଦିକ ଅନଲ ॥

ସଂସାରରେ ଯେତେପ୍ରକାର ବସ୍ତୁ ଅଛି ସେସବୁର ପୃଥକ୍ ପୃଥକ୍ ନାମ, ରୂପ ଓ ଆକାର ଅଛି ଏବଂ ପ୍ରତ୍ୟେକ ବସ୍ତୁର ପୃଥକ୍ ପୃଥକ୍ ଅଧିଷ୍ଠାତୃ ଦେବତା ଅଛନ୍ତି । ଗୃହ, ଗ୍ରାମ, ନଗର, ଦୁର୍ଗ, ବୃକ୍ଷ, ଲତା, ଗୁଳ୍ମ ତଥା ଜୀବଜଗତର ସବୁ ଜୀବଙ୍କର ଅଧିଷ୍ଠାତୃ ଦେବତା ଅଛନ୍ତି । ଏହା ଆଧିଦୈବିକ ସୃଷ୍ଟି ନାମରେ ଅଭିହିତ । ଏହା ବ୍ୟତୀତ ସଂସାରର ଅସ୍ତିତ୍ୱ ନାହିଁ । ଆଧିଦୈବିକ ଓ ଆଧ୍ୟାତ୍ମିକ ସୃଷ୍ଟିକୁ ମାନୁ ନ ଥିବା ବ୍ୟକ୍ତି କେବଳ ଦୃଶ୍ୟମାନ ପଞ୍ଚଭୂତକୁ ସବୁକିଛି ମନେ କରି ତାହାଦ୍ୱାରା ସାଂସାରିକ ବାସନାକୁ ପୂର୍ଣ୍ଣ କରେ । ଜଡ଼ତାରୁ ଏ ପ୍ରକାର ଧାରଣା ସୃଷ୍ଟି ହୁଏ । ଆମେ ସ୍ଥୂଳ ଦୃଷ୍ଟିରେ ଯାହା ଦେଖୁ ତାହା ହେଉଛି ବସ୍ତୁର ଆଧିଭୌତିକ ରୂପ । କାରଣ ଆମେ ଯେଉଁ ଆଖିରେ ଦେଖୁଛୁ ତାହା ଏକ ଆଧିଭୌତିକ ବସ୍ତୁ । କିନ୍ତୁ ଆମ ଚକ୍ଷୁଗୋଳକରେ ସୂର୍ଯ୍ୟଙ୍କ ପ୍ରବେଶ ନ କଲେ, ଦେଖିବା ଲୋକର ଆଖି ଏବଂ ଦେଖିବା ପାଇଁ ଉଦ୍ଦିଷ୍ଟ ବସ୍ତୁ ସୂର୍ଯ୍ୟାଲୋକଦ୍ୱାରା ଆଲୋକିତ ନ ହେଲେ ଆମେ କିଛି ଦେଖିପାରିବା ନାହିଁ । ସେଥିପାଇଁ ଘୋର ଅନ୍ଧକାରରେ ଆମେ କିଛି ଦେଖି ପାରୁନାହୁଁ ।

ଆମ ଆଖିରେ ଥିବା ଚକ୍ଷୁ ଗୋଳକ ପ୍ରକାଶ ଗ୍ରହଣ କରେ ଓ ବସ୍ତୁକୁ ପ୍ରକାଶିତ କରେ । ଏହି ଇନ୍ଦ୍ରିୟ ଅଧ୍ୟାତ୍ମରୂପରେ ଅଭିହିତ । ପୁରାଣରେ ଯେଉଁ ସୃଷ୍ଟିର ବର୍ଣ୍ଣନା କରାଯାଇଛି ତାହା ଆଧ୍ୟାତ୍ମିକ ଓ ଆଧିଦୈବିକ ନାମରେ ନାମିତ । ସେଥିରେ ଆଧିଭୌତିକ ବିଷୟର ବର୍ଣ୍ଣନା ପ୍ରାୟ ନାହିଁ । ତେଣୁ ପୁରାଣରେ ଜନ୍ମ ଗ୍ରହଣ କରୁଥିବା ଓ ମୃତ୍ୟୁବରଣ କରୁଥିବା ଜୀବଙ୍କର ବର୍ଣ୍ଣନା ନାହିଁ । ଜନ୍ମ, ମୃତ୍ୟୁ ବର୍ଣ୍ଣନାର ଆବଶ୍ୟକତା କ'ଣ ଅଛି ? ଯାହା ନିତ୍ୟ, ଯେ ମୁକ୍ତ ବା ମୁମୁକ୍ଷୁ ତାହାର ବର୍ଣ୍ଣନା ପ୍ରାୟ କରାଯାଇଥାଏ । ଉଦାହରଣ ସ୍ୱରୂପ ସଂସାରୀ ଜୀବନର ବର୍ଣ୍ଣନା ହୁଏତ କେଉଁଠି କରାଯାଇଥିବାର ଦେଖାଗଲେ ମଧ୍ୟ ତାହା ପୁରାଣଗୁଡ଼ିକର ପ୍ରତିପାଦ୍ୟ ନୁହେଁ ।

ବ୍ୟାସତନୟ ଶୁକଦେବ ଯେତେବେଳେ ବୃନ୍ଦାପୁରର ଇତିହାସ ବର୍ଣ୍ଣନା ଶେଷ କଲେ ସେତେବେଳେ ରାଜା ପରୀକ୍ଷିତଙ୍କର ମୂଳ କଥା ମନେ ପଡ଼ିଲା । ସେ ହାତ ଯୋଡ଼ି ପଚାରିଲେ—"ବ୍ରହ୍ମନ୍ ! ଆପଣ ମୋତେ ଦେବତା, ଋଷି, ପିତର ପ୍ରଭୃତିଙ୍କର ବଂଶ କାହାଣୀ ଶୁଣାଉଥିଲେ । ପ୍ରଥମେ ସ୍ୱାୟଂଭୁବମନୁଙ୍କ ପୁତ୍ର ପ୍ରିୟବ୍ରତ ଓ ଉତ୍ତାନପାଦଙ୍କ ବଂଶ ବର୍ଣ୍ଣନା କଲେ । ମହାରାଜ ପ୍ରିୟବ୍ରତଙ୍କ ପୁତ୍ର ଆଗ୍ନୀଧ୍ର, ତାଙ୍କ ପୁଅ ନାଭି ଓ ନାଭିଙ୍କଠାରୁ ଭଗବାନ୍ ଋଷଭଦେବ ଜନ୍ମ ହେଲେ । ତାଙ୍କ ପୁଅ ଭରତ ଜଡ଼ଭରତ ନାମରେ ପରିଚିତ । ଏମାନଙ୍କ କଥା କହିସାରି ଉତ୍ତାନପାଦଙ୍କ ବଂଶାବଳୀ ବର୍ଣ୍ଣନାରେ ପ୍ରାଚୀନବର୍ହିଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ଚରିତ ବର୍ଣ୍ଣନା କଲେ । ଆପଣ କହିଲେ, ପ୍ରାଚୀନବର୍ହିଙ୍କଠାରୁ ଦଶ ପ୍ରଚେତା ଜନ୍ମଗ୍ରହଣ କଲେ । ସେମାନେ ବାର୍କ୍ଷୀ ନାମ୍ନୀ କନ୍ୟାକୁ ବିବାହ କଲେ । ଶିବଙ୍କ ଅଭିଶାପରେ ବ୍ରହ୍ମାଙ୍କ ପୁତ୍ର ଦକ୍ଷ, ବାର୍କ୍ଷୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରି ମନ୍ୱନ୍ତର ନାମରେ ଅଭିହିତ ହେଲେ । ସେତେବେଳେ ପ୍ରଜାଶକ୍ତି କ୍ଷୀଣ ହୋଇ ଯାଇଥିବାରୁ ପ୍ରଚେତାଙ୍କ ପୁତ୍ର ଦକ୍ଷ ପ୍ରଜା ସୃଷ୍ଟିର ଦାୟିତ୍ୱ ଗ୍ରହଣ କଲେ ।"

ଦକ୍ଷପ୍ରଜାପତିଙ୍କଠାରୁ ହର୍ଯ୍ୟଶ୍ୱ ଓ ଶବଲାଶ୍ୱ ଆଦି ନାମରେ ଏଗାର ହଜାର ପୁତ୍ର ଜନ୍ମ ଗ୍ରହଣ କଲେ । କିନ୍ତୁ ନାରଦଙ୍କ ଉପଦେଶରେ ଏମାନେ ସମସ୍ତେ ସାଧୁ ହୋଇଗଲେ । ତେଣୁ ବ୍ରହ୍ମାଙ୍କ ଆଦେଶରେ ଦକ୍ଷପ୍ରଜାପତି ଷାଠିଏ କନ୍ୟାଙ୍କୁ ଜନ୍ମ ଦେଲେ । ସେମାନଙ୍କ ମଧ୍ୟରୁ ଚନ୍ଦ୍ର ସତେଇଶ ଜଣଙ୍କୁ, ଧର୍ମ ଦଶଜଣଙ୍କୁ, ଭୂତ, ଅଙ୍ଗିରା ଓ କୃଶାଶ୍ୱ ଦୁଇ ଦୁଇଜଣଙ୍କୁ, ତାର୍କ୍ଷ୍ୟ ଚାରିଜଣଙ୍କୁ ବିବାହ କଲେ । ଏମାନଙ୍କ ବିବାହ ପରେ ବାକି ତେର କନ୍ୟାଙ୍କ ସହିତ କଶ୍ୟପଙ୍କର ବିବାହ ହେଲା । ଆପଣ ପ୍ରଥମେ ସତରଶହଜଣ କନ୍ୟାଙ୍କ ବଂଶାବଳୀ ସଂକ୍ଷେପରେ କହିଛନ୍ତି । ତା'ପରେ କଶ୍ୟପଙ୍କ ତେର ପତ୍ନୀ ମଧ୍ୟରୁ ତିମି, ଶରମା, ସୁରଭି, ତାମ୍ରା, କ୍ରୋଧବଶା, ମୁନି, ଇଳା, ସୁରସା, ଅରିଷ୍ଟା, କାଷ୍ଠା, ଦନୁ ଆଦି ଏଗାରଜଣଙ୍କଠାରୁ ଜନ୍ମ ଗ୍ରହଣ କରିଥିବା ପୁଅମାନଙ୍କ ବିଷୟ ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି । ଆପଣ କହୁଥିଲେ କଶ୍ୟପଙ୍କ ପ୍ରିୟତମା ପତ୍ନୀ ଅଦିତି ଦ୍ୱାଦଶ ପୁତ୍ରଙ୍କ ଜନନୀ ହୋଇଥିଲେ । ସେମାନେ ଦ୍ୱାଦଶ ଆଦିତ୍ୟ ନାମରେ ଅଭିହିତ । ସେମାନେ ବିବସ୍ୱାନ୍,

ଅର୍ଯ୍ୟମା, ପୂଷା, ତ୍ୱଷ୍ଟା, ସବିତା, ଭଗ, ଧାତା, ବିଧାତା, ବରୁଣ, ମିତ୍ର, ଶକ୍ର ଓ ଉରୁକ୍ରମ ନାମରେ ପରିଚିତ । ଆପଣ ଏମାନଙ୍କ ମଧ୍ୟରୁ ପ୍ରଥମ ଚାରିଜଣଙ୍କ ବଂଶ ପରିଚୟ ବର୍ଣ୍ଣନା କରିଛନ୍ତି । ପୁଣି ଆପଣ କହୁଥିଲେ ତ୍ୱଷ୍ଟା ମୁନି ଅସୁରଙ୍କ ଭଉଣୀ ରଚନାକୁ ବିବାହ କରିଥିଲେ । ତାଙ୍କଠାରୁ ବିଶ୍ୱରୂପ ଜନ୍ମ ଗ୍ରହଣ କରିଥିଲେ । ସେହି ପ୍ରସଙ୍ଗରେ ବିଶ୍ୱରୂପ ବଧ ଓ ବୃତ୍ରାସୁର କଥା ମଧ୍ୟ ଶୁଣାଇଲେ । ବର୍ତ୍ତମାନ ଆପଣ ମୋତେ ମୂଳକଥା କହନ୍ତୁ । ଏମାନଙ୍କ ପରେ ସବିତାଙ୍କଠାରୁ ଆରମ୍ଭ ଅନ୍ୟ ଆଠ ଆଦିତ୍ୟଙ୍କ ବଂଶ ପରିଚୟ କହିବା ପାଇଁ ନିବେଦନ କରୁଛି ।

ରାଜା ପରୀକ୍ଷିତଙ୍କ କଥା ଶୁଣି ଶ୍ରୀ ଶୁକଦେବ ପ୍ରସନ୍ନ ହୋଇ କହିଲେ—"ରାଜନ୍ ! ତୁମେ ଧନ୍ୟ । ଭାଗବତ କଥା ଶୁଣିବା ପାଇଁ ତୁମେ ଯୋଗ୍ୟ ଅଧିକାରୀ । ତୁମେ ମୂଳକଥା ମନେ ରଖିଛ । ମୁଁ ବୃତ୍ରାସୁର କଥା କହୁ କହୁ ମୂଳକଥା ଭୁଲିଯାଇଥିଲି । ବର୍ତ୍ତମାନ ତୁମେ ମନେ ପକାଇ ଦେଇଛ । ସେହି ଦ୍ୱାଦଶ ଆଦିତ୍ୟଙ୍କଠାରୁ ସମସ୍ତ ଦୈବିକ ସୃଷ୍ଟି ଉତ୍ପନ୍ନ ହୋଇଛି । ସେମାନଙ୍କ ବଂଶର ବିସ୍ତୃତ ବର୍ଣ୍ଣନା କଲେ ତାହା ସମାପ୍ତ ହେବ ନାହିଁ । ତେଣୁ କ୍ରମ ରକ୍ଷା ପାଇଁ ଅନ୍ୟମାନଙ୍କ ବଂଶ ପରିଚୟ ସଂକ୍ଷେପରେ କହୁଛି । ଆପଣ ମନ ଦେଇ ଶୁଣନ୍ତୁ ।"

ପଞ୍ଚମ ଆଦିତ୍ୟ ସବିତାଙ୍କ ପତ୍ନୀ ଥିଲେ ପୃଶ୍ନି । ତାଙ୍କର ତିନି ଝିଅ ଓ ପାଞ୍ଚ ପୁଅ । ସାବିତ୍ରୀ ଯାହାକୁ ଗାୟତ୍ରୀ କହନ୍ତି ସେ ତାଙ୍କର ଝିଅ । ଦ୍ୱିତୀୟ ଝିଅ ହେଉଛି ବ୍ୟାହୃତି ଓ ତୃତୀୟ ଝିଅର ନାମ ତ୍ରିବିଦ୍ୟା । ବେଦରେ ପାଞ୍ଚ ପ୍ରକାର ଯଜ୍ଞର ଉଲ୍ଲେଖ ଅଛି । ପ୍ରଥମରେ ହେଉଛି ଅଗ୍ନିହୋତ୍ର, ଯାହାକୁ ବିବାହ ପରେ ପ୍ରତ୍ୟେକ ଗୃହସ୍ଥ ବ୍ରାହ୍ମଣ ପ୍ରତିଦିନ ଆହୁତି ଦ୍ୱାରା ଉପାସନା କରନ୍ତି । ଦ୍ୱିତୀୟରେ ପଶୁଯଜ୍ଞ, ଏଥିରେ ପଶୁମାନଙ୍କୁ ଉତ୍ସର୍ଗ କରାଯାଏ । ତୃତୀୟରେ ସୋମଯଜ୍ଞ, ଏହି ଯଜ୍ଞରେ ସୋମଲତାରୁ ସୋମ ବାହାର କରି ଦେବତାମାନଙ୍କୁ ସମର୍ପଣ କରିବାର ବିଧି ଅଛି । ଚାତୁର୍ମାସ୍ୟ ଯଜ୍ଞରେ ବର୍ଷକ ମଧ୍ୟରୁ ଚାରିମାସ ଏହା ପାଳିତ ହୁଏ । ପଞ୍ଚମରେ ପିତୃଯଜ୍ଞ, ଏହା ପ୍ରତ୍ୟେକ ଗୃହସ୍ଥ ପାଳନ କରନ୍ତି । ଏହି ପଞ୍ଚଯଜ୍ଞର ଅଧିଷ୍ଠାତୃ ଦେବତା ହେଲେ ସବିତା । ଆଦିତ୍ୟଙ୍କ ମଧ୍ୟରେ ଷଷ୍ଠ ସ୍ଥାନୀୟ ହେଲେ ଭଗ । ତାଙ୍କ ସ୍ତ୍ରୀଙ୍କ ନାମ ସିଦ୍ଧି । ତାଙ୍କଠାରୁ ମହିମା, ବିଭୁ ଓ ପ୍ରଭୁ ନାମରେ ତିନିପୁଅ ଓ ଆଶିଷ ନାମରେ ଏକ ଝିଅ ଜନ୍ମ ଗ୍ରହଣ କଲେ । ଦକ୍ଷଯଜ୍ଞରେ କ୍ରୁଦ୍ଧ ହୋଇ ବୀରଭଦ୍ର ଏହାର ଆଖି ଫୁଟାଇ ଦେଇଥିଲେ । ତେଣୁ ମିତ୍ର ଦେବତାଙ୍କ ଆଖି ମାଧ୍ୟମରେ ସେ ଦେଖୁଥିଲେ । ସେହି ଦିନଠାରୁ ସେ ସମସ୍ତଙ୍କୁ ମିତ୍ର ଭାବରେ ଦେଖନ୍ତି । ଏଥିରୁ ଯେ ଅମିତ୍ର ଭାବରେ ଦେଖେ ତା'ର ନେତ୍ର ଦେଖିବା ପାଇଁ ଯୋଗ୍ୟ ନୁହେଁ ବୋଲି ପ୍ରତୀତ ହୁଏ ।

ସପ୍ତମ ଆଦିତ୍ୟ ଧାତାଙ୍କର କୁହୂ, ସିନୀବାଲୀ, ରାକା ଓ ଅନୁମତି ନାମରେ ଚାରିପତ୍ନୀ ଥିଲେ । ଏମାନେ ଅମାବାସ୍ୟା ରାତ୍ରିର ଏକ ଏକ ଭେଦ ବିଶେଷ । ପ୍ରତ୍ୟେକଙ୍କର ଗୋଟିଏ ଗୋଟିଏ ପୁଅ ଜନ୍ମ ହୋଇଥିଲେ । କୁହୂଙ୍କ ପୁତ୍ରର ନାମ ସାୟମ୍ । ସୂର୍ଯ୍ୟାସ୍ତ

ସମୟରେ ଯେଉଁ ପୂଜା, ହୋମ କରାଯାଏ ତାହା ସାୟଂହବନ ନାମରେ ନାମିତ । ସିନୀବାଲୀର ପୁତ୍ର ହେଲେ ଦର୍ଶ । ଅମାବାସ୍ୟାରେ ପିତୃଗଣଙ୍କ ଉଦ୍ଦେଶ୍ୟରେ ଯେଉଁ ଯଜ୍ଞ ଅନୁଷ୍ଠିତ ହୁଏ ତାହା ଦର୍ଶଯାଗ ନାମରେ ଅଭିହିତ । ଏହାର ଅଧିଷ୍ଠାତା ଦେବତା ଧାତା ଏହାଙ୍କର ଦ୍ୱିତୀୟ ପୁତ୍ର । ରାକା ନାମ୍ନୀ ପତ୍ନୀଙ୍କର ପୁତ୍ର ହେଲେ ପ୍ରାତଃ । ଏହା ସୂର୍ଯ୍ୟୋଦୟ ପୂର୍ବ ଓ ପର ସମୟର ଅଧିଷ୍ଠାତା ଦେବତା ଏହି ଅଟନ୍ତି । ଏହି ସମୟରେ ଅନୁଷ୍ଠିତ ହୋମ ପ୍ରାତଃକାଳୀନ ଅଗ୍ନିହୋତ୍ର ନାମରେ ନାମିତ । ଧାତାଙ୍କ ଚତୁର୍ଥ ପତ୍ନୀ ଅନୁମତିଙ୍କଠାରୁ ପୂର୍ଣ୍ଣମାସ ଜନ୍ମ ଗ୍ରହଣ କଲେ । ମାସ ଶେଷରେ ପୂର୍ଣ୍ଣିମାଦିନ ଦେବତାଙ୍କ ଉଦ୍ଦେଶ୍ୟରେ ଯେଉଁ ଯଜ୍ଞ କରାଯାଏ ତା'ର ଅଧିଷ୍ଠାତୃ ଦେବତା ଧାତାଙ୍କ ୪ର୍ଥ ପୁତ୍ର । ବର୍ତ୍ତମାନ ଅଷ୍ଟମ ବିଧାତାଙ୍କ ପିଲାମାନଙ୍କ କଥା ଶୁଣନ୍ତୁ ।

ଧାତାଙ୍କ ସାନଭାଇ ବିଧାତାଙ୍କ ସ୍ତ୍ରୀର ନାମ କ୍ରିୟା । ତାଙ୍କର ପୁରୀଷ୍ୟ ଇତ୍ୟାଦି ପାଞ୍ଚପୁଅ ହେଲେ । ପୂର୍ବ ଜନ୍ମରେ ଏମାନେ ପବିତ୍ର ଅଗ୍ନି ଥିଲେ । ତପସ୍ୱୀମାନେ ଏବେ ପଞ୍ଚାଗ୍ନି ତପସ୍ୟା କରନ୍ତି । ସେହି ପାଞ୍ଚଅଗ୍ନିର ଅଧିଷ୍ଠାତା ଦେବତା ଏହିମାନେହିଁ ଅଟନ୍ତି । ନବମ ଆଦିତ୍ୟ ହେଲେ ବରୁଣ । ତାଙ୍କ ପତ୍ନୀଙ୍କ ନାମ ଚର୍ଷଣୀ । ଯେଉଁ ଭୃଗୁ ପ୍ରଥମେ ବ୍ରହ୍ମାଙ୍କ ପୁତ୍ର ଥିଲେ ସେ କୌଣସି କାରଣବଶତଃ ପୁଣି ଚର୍ଷଣୀଙ୍କ ପୁତ୍ର ରୂପେ ପରିଚିତ ହେଲେ । ତାଙ୍କର ଆଉ ଏକ ତେଜସ୍ୱୀ ଓ ତପସ୍ୱୀ ପୁତ୍ର ଥିଲା । ସେ ଏପରି ତପସ୍ୱୀ ଥିଲେ ଯେ ତପସ୍ୟା କରୁଥିବାବେଳେ ତାଙ୍କ ଉପରେ ଉଇହୁଙ୍କା ହୋଇଯାଇଥିଲା । ସେହି ଉଇହୁଙ୍କା ବା ବାଲ୍ମୀକରୁ ବାହାରିଥିବାରୁ ତାଙ୍କର ନାମ ହୋଇଥିଲା ବାଲ୍ମୀକି । ଏହି ଦୁଇ ପୁଅଙ୍କ ବ୍ୟତୀତ ବରୁଣଙ୍କ ଔରସରେ ଓ ଉର୍ବଶୀଙ୍କ ଦର୍ଶନରୁ ଆଉ ଦୁଇଟି ପୁଅ ଜନ୍ମ ହୋଇ ଥିଲେ । ଏହାର ମୂଳକଥା ହେଉଛି—ଥରେ ବରୁଣ ନିଜ ଭାଇ ମିତ୍ର ସହିତ ଆସୁଥିଲେ । ବାଟରେ ଅପ୍ସରା ଉର୍ବଶୀକୁ ଦେଖି ଉଭୟଙ୍କର ଶୁକ୍ର ସ୍ଖଳିତ ହେଲା । ଏହା ଥିଲା ଅମୋଘ ବୀର୍ଯ୍ୟ । ତେଣୁ ସ୍ଖଳିତ ଶୁକ୍ରକୁ ଦୁହିଁଭାଇ ଏକ ଘଟରେ ସ୍ଥାପନ କଲେ । ଏହି ସମୟରେ ଯଜ୍ଞକାର୍ଯ୍ୟ ବିଷୟରେ ବଶିଷ୍ଠଙ୍କ ସହିତ ରାଜା ନିମିଙ୍କ କଳହ ହେଲା । ଏଥିରେ ଉଭୟ ପରସ୍ପରକୁ ଅଭିଶାପ ଦେଲେ । ବଶିଷ୍ଠ କହିଲେ—ତୁମର ଦେହ ନଷ୍ଟ ହୋଇଯାଉ ।" ରାଜର୍ଷି ନିମି କହିଲେ—"ଆପଣଙ୍କ ଦେହ ନଷ୍ଟ ହୋଇଯାଉ ।" ବଶିଷ୍ଠ ଥିଲେ କଳ୍ପଜୀବୀ । ଶରୀର ବିନା ସେ କିପରି ରହିବେ ? ତେଣୁ ଜୀବ ରୂପରେ ସେ ସେହି ଘଟରେ ପ୍ରବେଶ କଲେ । ସେହିପରି ଆଉ ଏକ ଦିବ୍ୟ ଜୀବ ସେ ଘଟରେ ପ୍ରବେଶ କଲା । ତେଣୁ ଉଭୟ ଜୀବ ଜନ୍ମଲାଭ କରି ବଶିଷ୍ଠ ଓ ଅଗସ୍ତ୍ୟ ନାମରେ ପରିଚିତ ହେଲେ । ଏହି ଉଭୟ ଋଷିଙ୍କୁ ମିତ୍ରାବରୁଣ କୁହାଯାଏ । ଦୁହେଁ ଅଯୋନିଜ ଓ ଘଟରୁ ଜନ୍ମ ଗ୍ରହଣ କରିଥିବାରୁ କୁମ୍ଭଜ ବା କୁମ୍ଭଯୋନି ନାମରେ ଅଭିହିତ ।

ଦଶମ ଆଦିତ୍ୟ ମିତ୍ରଙ୍କ ପତ୍ନୀ ହେଲେ ରେବତୀ । ତାଙ୍କଠାରୁ ଉତ୍ସର୍ଗ, ଅରିଷ୍ଟ, ପିପ୍ପଳ ନାମରେ ତିନିପୁଅ ଜନ୍ମ ହୋଇଥିଲେ । ଏକାଦଶ ଆଦିତ୍ୟ ହେଲେ ଶକ୍ର । ସେ

ଦେବତାମାନଙ୍କ ରାଜା ହୋଇଥିବାରୁ ଇନ୍ଦ୍ର ନାମରେ ଅଭିହିତ । ସେ ଅସୁରବଂଶରେ ବିବାହ କରିଥିଲେ । ପୁଲୋମା ନାମକ ଅସୁରର କନ୍ୟା ଶଚୀ ଥିଲେ ଅପୂର୍ବ ସୁନ୍ଦରୀ । ତିନିଲୋକରେ ତାଙ୍କପରି ସୁନ୍ଦରୀ କନ୍ୟା ନ ଥିଲେ । ତାଙ୍କର ପୁଲୋମା ନାମରେ ଆଉ ଏକ ଭଉଣୀ ଥିଲା । ଶକ୍ର ଶଚୀଙ୍କୁ ଓ ଭୃଗୁ ପୁଲୋମାଙ୍କୁ ବିବାହ କରିଥିଲେ । ଭୃଗୁଙ୍କଠାରୁ ଚ୍ୟବନ ଓ ଇନ୍ଦ୍ରଙ୍କଠାରୁ ଜୟନ୍ତ, ଋଷଭ ଓ ମୀଢ଼ୁଷ ନାମରେ ତିନିପୁଅ ଜନ୍ମ ହେଲେ ଏବଂ ଜୟନ୍ତୀ ନାମରେ ଝିଅଟିଏ ଜନ୍ମ ହେଲା । ଋଷଭ ଦେବଙ୍କ ସହିତ ଜୟନ୍ତୀର ବିବାହ ହୋଇଥିଲା ଏବଂ ତାଙ୍କଠାରୁ ଶହେ ପୁଅ ଜନ୍ମ ଗ୍ରହଣ କରିଥିଲେ ।

ଶୌନକ ପଚାରିଲେ—"ହେ ସୂତ ! ଆମେ ତ ଶୁଣିଛୁ ଯେ ଦେବତାମାନଙ୍କର ସନ୍ତାନ ନାହାନ୍ତି । ଆପଣ କିପରି କହୁଛନ୍ତି ଇନ୍ଦ୍ରଙ୍କର ତିନିପୁଅ ଓ ଗୋଟିଏ ଝିଅ ଥିଲା ।"

ମହର୍ଷି ସୂତ କହିଲେ—"ଭଗବନ୍ ! ପୂର୍ବେ ସମସ୍ତଙ୍କର ପିଲା ଜନ୍ମ ହେଉଥିଲେ । କିନ୍ତୁ ପାର୍ବତୀ ଯେଉଁଦିନଠାରୁ ଦେବତାମାନଙ୍କୁ ଅଭିଶାପ ଦେଲେ ସେହିଦିନଠାରୁ ସେମାନଙ୍କର ଛୁଆ ପିଲା ଜନ୍ମ ହେବା ବନ୍ଦ ହୋଇଗଲା । କୁବେରଙ୍କର ନଳକୁବର ଓ ମଣିଗ୍ରୀବ ନାମରେ ଦୁଇ ପୁଅ ଥିଲେ । ବରୁଣଙ୍କ ପୁଅର ନାମ ପୁଷ୍କର । ଯମରାଜଙ୍କ କନ୍ୟା ସୁନୀତା ଅଙ୍ଗଙ୍କ ପତ୍ନୀ ଥିଲା । କିନ୍ତୁ ଅଭିଶାପହେତୁ ଅଧେ ସେଥିରୁ ନପୁଂସକ ହୋଇ-ଗଲେ । ଦେବତା ଶବ୍ଦ ପୁଂଲିଙ୍ଗ ହୁଏ ସ୍ତ୍ରୀଲିଙ୍ଗ ବି ହୁଏ ।"

ଶୌନକ ପୁଣି ପଚାରିଲେ—"ମହାଭାଗ ! ଦେବତାମାନଙ୍କୁ ପାର୍ବତୀ କାହିଁକି ଅଭିଶାପ ଦେଲେ ।" ସୂତ ସାମାନ୍ୟ ଅନ୍ୟମନସ୍କ ହେବାପରେ କହିଲେ "ଭଗବନ୍ ! କଣ ହେବ ସେସବୁ କଥା ଶୁଣି । ସେସବୁ ବଡ଼ ଗୋଳମାଳିଆ କଥା । ଏତିକି ଜାଣ ଏହା ଥିଲା ଦେବତାମାନଙ୍କ ପ୍ରାରବ୍ଧ । ଭଗବତୀ ପାର୍ବତୀ ସେମାନଙ୍କୁ ଅଭିଶାପ ଦେଇ ଭଲ କରିଛନ୍ତି । ନୋହିଲେ ସେମାନେ ସମସ୍ତେ କାମୁକ ପାଲଟି ଯାଇଥାନ୍ତେ । ପ୍ରତିଦିନ ପିଲା ଜନ୍ମ କରୁ-ଥାନ୍ତେ ଓ ଐଶ୍ୱର୍ଯ୍ୟ ଗର୍ବରେ ମଦୋନ୍ମତ୍ତ ହୋଇ ସେମାନଙ୍କ ପିଲାମାନେ ନାନାପ୍ରକାର ଅନର୍ଥରେ ଲିପ୍ତ ଥାନ୍ତେ । ଦେଖନ୍ତୁ, ଇନ୍ଦ୍ରଙ୍କ ପୁତ୍ର ଜୟନ୍ତ କିପରି ଅଶିଷ୍ଟ ଆଚରଣ କଲେ । ମାତୃସ୍ଥାନୀୟା ଜାନକୀଙ୍କ ଉପରେ ସେ ଖରାପ ଦୃଷ୍ଟି ପକାଇଥିଲେ । ନଳକୁବର, ମଣିଗ୍ରୀବର ଅଶିଷ୍ଟ ବ୍ୟବହାରରେ ଦୁଃଖିତ ହୋଇ ନାରଦ ତାଙ୍କୁ ବୃକ୍ଷ ହୋଇଯିବା ପାଇଁ ଶାପ ଦେଇଥିଲେ । ତେଣୁ ଏପରି ଐଶ୍ୱର୍ଯ୍ୟଶାଳୀ ଧନିକମାନେ ନିଃସନ୍ତାନ ହେବା ଉଚିତ । ଯଦି ବି ସେମାନଙ୍କର ସନ୍ତାନ ହେଲା ତେବେ ଗୋଟିଏ ଦୁଇଟି ହେଲେ ଯଥେଷ୍ଟ ।"

ପାର୍ବତୀ କାହିଁକି ସେମାନଙ୍କୁ ଅଭିଶାପ ଦେଲେ ସେକଥା କହିଲେ ବହୁ ସମୟ ନିବ । କିନ୍ତୁ ଖୁବ୍ ସଂକ୍ଷେପରେ ସେକଥା ମୁଁ କହୁଛି ଶୁଣନ୍ତୁ । ପାର୍ବତୀଙ୍କର ସନ୍ତାନ ପାଇଁ ଇଚ୍ଛା ହେଲା । ସ୍ନେହ ଭାବନାରେ ସେ ଗର୍ଭଧାରଣ କଲେ । ଦେବତାମାନେ ସ୍ୱାର୍ଥପର ହୋଇ ଅଗ୍ନିଙ୍କୁ ପଠାଇ ତାଙ୍କ ଗର୍ଭକୁ ଖଣ୍ଡବିଖଣ୍ଡିତ କରିଦେଲେ । ଭଗବତୀଙ୍କ ଅଭିଳାଷ ପୂର୍ଣ୍ଣ ହେଲା ନାହିଁ । ସେ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ "ହେ ଦେବଗଣ !

ତୁମ୍ଭେମାନେ ମୋର ସନ୍ତାନ ଇଚ୍ଛାରେ ବ୍ୟାଘାତ ସୃଷ୍ଟି କଲ । ତେଣୁ ତୁମ୍ଭମାନଙ୍କର ଆଉ ସନ୍ତାନ ଜନ୍ମ ନ ହେଉ ।' ସେହି ଦିନଠାରୁ ଦେବତାମାନେ ଅପୁତ୍ରିକ ହୋଇଗଲେ । ପ୍ରଥମେ ପ୍ରଥମେ ଯେଉଁମାନଙ୍କର ପିଲା ହୋଇଯାଇଥିଲା ତ ହୋଇଥିଲା; କିନ୍ତୁ ପରେ ଆଉ କାହାର ପିଲା ହେଲେ ନାହିଁ ।''

ସର୍ବଶେଷ ଅର୍ଥାତ୍ ଦ୍ୱାଦଶ ଆଦିତ୍ୟ ହେଲେ ବିଷ୍ଣୁ । ସେ ଇନ୍ଦ୍ରଙ୍କଠାରୁ ସାନ ହୋଇଥିବାରୁ ଉପେନ୍ଦ୍ର ନାମରେ ପରିଚିତ ହେଲେ । ସ୍ୱର୍ଗର ଦେବସଭାର ସେ ଉପ-ସଭାପତି । ଏହା ଶୁଣି ଶୌନକ ପଚାରିଲେ—''ବିଷ୍ଣୁ ତ ସମସ୍ତଙ୍କଠାରୁ ବଡ଼, ଆପଣ ତାଙ୍କୁ ଶ୍ରେଷ୍ଠ ବୋଲି କହୁଛନ୍ତି କିପରି ? ସେ ତ ଇନ୍ଦ୍ରଙ୍କର ଶାସନକର୍ତ୍ତା; କିନ୍ତୁ ଆପଣ ତାଙ୍କୁ ସ୍ୱର୍ଗର ଉପସଭାପତି ଉପେନ୍ଦ୍ର ବୋଲି କହୁଛନ୍ତି କିପରି ?''

ମହର୍ଷି ସୂତ ହସି ହସି କହିଲେ—''ଭଗବନ୍ ! ବିଷ୍ଣୁଙ୍କର ଅପାର ମାୟା । ସେ ଶ୍ରେଷ୍ଠ ହୋଇ ମଧ୍ୟ ବଡ଼ କାମ କରିପାରନ୍ତି । ବଳିରାଜାକୁ କିପରି ଦଣ୍ଡ ଦେଲେ ? ତା'ର କ୍ଷମତା, ରାଜତ୍ୱ ସବୁ ନେଇ ତାକୁ ପାତାଳକୁ ପଠାଇଦେଲେ । ସେ ବଳିକୁ ବାନ୍ଧିବା ପାଇଁ ଯାଇଥିଲେ କିନ୍ତୁ ନିଜେ ବନ୍ଧା ପଡ଼ିଗଲେ । ସେବକ କରିବା ପାଇଁ ଯାଇ ନିଜେ ସେବକ ହୋଇଗଲେ । ଏବେ ବାଡ଼ି ଖଣ୍ଡିଏ ହାତରେ ଧରି ବଳିର ଦ୍ୱାରଦେଶରେ ପହରା ଦେଉଛନ୍ତି । ଭଗବନ୍ ! ସେସବୁ ବଡ଼ ଉପାଦେୟ କଥା । ଭଗବାନ୍ ଅଦିତି ଦେବୀଙ୍କୁ ଖୁସି କରାଇବା ପାଇଁ ତା' ଗର୍ଭରେ ଅବତୀର୍ଣ୍ଣ ହେଲେ । ଇନ୍ଦ୍ରଙ୍କ ସାନଭାଇ ରୂପରେ ତାଙ୍କ ଦୁଃଖ ଦୂରକଲେ । ଅସୁରମାନଙ୍କୁ ପ୍ରବଞ୍ଚିତ କରି ସେମାନଙ୍କ ସମ୍ପତ୍ତି ଦେବତାମାନଙ୍କୁ ଦେଇଦେଲେ । ଏସବୁ କଥା ମୁଁ ପରେ ବାମନାବତାର କଥା ପ୍ରସଙ୍ଗରେ କହିବି । ବର୍ତ୍ତମାନ ଭଗବାନ୍ କଶ୍ୟପଙ୍କ ଦ୍ୱାଦଶ ପତ୍ନୀଙ୍କଠାରୁ ଯେଉଁ ପିଲାମାନେ ଜନ୍ମ ହେଲେ ସେମାନଙ୍କ କଥା ସଂକ୍ଷେପରେ କହୁଛି ।''

ଏହା ଶୁଣି ଶୌନକ କହିଲେ—''ଭଗବନ୍ ! ଆପଣ ତ ଭଲକଥା କହୁଛନ୍ତି ? ଆପଣ ସବୁ ସେହି ଦ୍ୱାଦଶ ପତ୍ନୀଙ୍କ କଥା କହିସାରିଲେଣି । ଏବେ କେବଳ ଦିତିଙ୍କ କଥା ବାକି ଅଛି । ତାଙ୍କର ବଂଶ କଥା କହନ୍ତୁ ।''

## ଛପ୍‌ପଦୀ

ବରୁଣ ଚର୍ଷଣୀ ମାହିଁ ଭଯ୍ୟେ ଭୃଗୁ ମୁନି ପୁନ ତନ ତେଁ ।
ସୁତ ବଶିଷ୍ଠ ବାଲ୍ମୀକି ଅଗସ୍ତ୍ୟହୁଁ ଜନମେ ଇତ ତେଁ ।।
ମିତ୍ର ରେବତୀ ନାରୀ ମାହିଁ ସୁତ ତିନ ଭୟେ ବର ।
ଇନ୍ଦ୍ର ଶଚୀ ତେଁ ଋଷଭ ଜନେ ମୀଢୁଷ ଜୟନ୍ତ ସୁର ।।
ବାମନ ପତ୍ନୀ କୀର୍ତ୍ତିନେ, ବୃହଚ୍ଛୋକ ଶୁଭ ସୁତ ଜନେ ।
ଶ୍ରୀ ଉପେନ୍ଦ୍ର ବଳ ଜଙ୍କ ମେଁ ଛୋଟେ ସେ ବୌନା ବନେ ।।

# ଦିତିବଂଶ ବର୍ଣ୍ଣନ

ଅଥ କଶ୍ୟପଦାୟାଦାନ୍ ଦୈତେୟାନ୍ କୀର୍ତ୍ତୟାମି ତେ ।
ଯତ୍ର ଭାଗବତଃ ଶ୍ରୀମାନ୍ ପ୍ରହ୍ଲାଦୋ ବଲିରେବ ଚ ॥

(ଶ୍ରୀମଦ୍ଭାଗବତ—୬ସ୍କନ୍ଧ-୧୮ଅ-୧୦ ଶ୍ଳୋକ)

## ଛପ୍‌ପୟ

ହିରନକଶିପୁ ହିରନାକ୍ଷ ଭଯେ ଦିତି ସୁତ ଖଳ ଭାରୀ ।
ହିରନକଶିପୁ କୀ ବହୂ କୟାଧୂ ଅତି ପତି ପ୍ୟାରୀ ॥
ଅନୁହ୍ଲାଦ ସଂହ୍ଲାଦ ହ୍ଲାଦ ପ୍ରହ୍ଲାଦ ଜନେ ସୁତ ।
ସୁତା ସିଂହିକା ଭଈ ଜାସୁ ସୁତ ଭଯୋ ବିପ୍ରଚିତ ॥
ଜନେ୍ୟା ପଞ୍ଚଜନ ଅସୁର କୂଁ, କୃତି ତେ ସୁତ ସଂହ୍ଲାଦ ନେ ।
ଇଲ୍ୱଲ ବାତାପି ଜନେ, ଧମନି ପତ୍ନୀ ତେ ହ୍ଲାଦ ନେ ॥

ସଂସାରରେ ଯାହା କିଛି ବଳ ପୌରୁଷ, ପରାକ୍ରମ, ଶ୍ରୀ, ତେଜ, ଐଶ୍ୱର୍ଯ୍ୟ ଅଛି, ସେସବୁ ଭଗବଦ୍‌ଦତ୍ତ । ଯେଉଁଠି ଏସବୁ ଦେଖାଯାଏ ସେଠାରେ ଭଗବାନ୍‌ଙ୍କ ବିଭୂତି ପ୍ରକାଶ ପାଉଛି ବୋଲି ବୁଝିବା ଉଚିତ । ଭଗବାନ୍‌ଙ୍କ ସାତ୍ତ୍ୱିକ ବିଭୂତିରୁ ଆଦିଦେବତା, ରାଜସୀ ବିଭୂତିରୁ ବ୍ରହ୍ମା, ମନୁ, ପ୍ରଜାପତି ଆଦି ଏବଂ ତାମସୀ ବିଭୂତିରୁ ରୁଦ୍ର, ଅସୁର, ଭୂତ, ପ୍ରେତ, ପିଶାଚ, ଦୈତ୍ୟ, ଦାନବ ଆଦି ସୃଷ୍ଟି ହୋଇଛନ୍ତି । ଯେତେବେଳେ ସେ ସତ୍ତ୍ୱଗୁଣ ବୃଦ୍ଧି ପାଇଁ ଇଚ୍ଛା କରନ୍ତି, ସେତେବେଳେ ଦେବତାମାନଙ୍କର ବଳ ବଢ଼ାଇ-ଦିଅନ୍ତି ଏବଂ ତମୋଗୁଣ ବଢ଼ାଇବାର ଇଚ୍ଛା ହେଲେ ଅସୁର, ରାକ୍ଷସମାନଙ୍କୁ ବଢ଼ାଇ-ଦିଅନ୍ତି । ସେ ଯେତେବେଳେ ଇଚ୍ଛା କରନ୍ତି ଦେବତାମାନଙ୍କୁ ମାରଧର କରି ସ୍ୱର୍ଗରୁ ବିଦା କରିଦିଅନ୍ତି. ଇନ୍ଦ୍ରପଦ ଛଡ଼େଇନିଅନ୍ତି ଏବଂ ନିଜେ ଦାସି ହସୁଥାନ୍ତି ।

ଭଗବାନ୍ ଅସୁରମାନଙ୍କୁ ବଳବାନ୍ କରନ୍ତି କାହିଁକି ? ଏହି କାହିଁକିର ଉତ୍ତର କିଣ ? ଲଡ଼ୁ ସନ୍ଦେଶ ମରିଚ କାହିଁକି ଖାଆନ୍ତି ? ଶିଙ୍ଘ ସହିତ ଖଟା କାହିଁକି ଖାଆନ୍ତି ? ମନକୁ ଖୁସି କରିବା ପାଇଁ ଏସବୁ କରାଯାଏ । ଶତରଞ୍ଜି ଖେଳରେ କେବେ କେବେ ସୈନିକ ବି ରାଜାଙ୍କୁ ହରାଇ ଦିଏ । କାଠର ସୈନ୍ୟ କାଠର ରାଜାକୁ କିଣ ହରାଇବ ? ଏହା ଖେଳିବା ଲୋକର

ଏକ କୌତୁକ । ସେହିପରି ତ୍ରିଗୁଣାତୀତ ଭଗବାନ୍‌ଙ୍କ ଦୃଷ୍ଟିରେ କେହି ଅଧମ ନୁହେଁ କି କେହି ଉତ୍ତମ ନୁହେଁ । ସମସ୍ତେ ତାଙ୍କର ଖେଳନା ମାତ୍ର । ଲୀଳା ପାଇଁ, ବିନୋଦ ପାଇଁ ଜୟ ପରାଜୟ କରାନ୍ତି । ନାଟକରେ ଯେପରି ନାନା ପ୍ରକାର ଖେଳ ହୁଏ, ପୁଣି ନାଟକ ଶେଷରେ ସେସବୁ କିଛି ନଥାଏ । ତେଣୁ ସୃଷ୍ଟିର ଲୀଳା ସମ୍ପାଦନ ପାଇଁ ସୁରମାନେ ଯେପରି ଆବଶ୍ୟକ, ଅସୁରମାନେ ସେହିପରି ଆବଶ୍ୟକ । ଦେବତାମାନଙ୍କ ପୂର୍ବରୁ ମଧୁ ଓ କୈଟଭ ଅସୁର ଜନ୍ମ ହୋଇଥିଲେ । ସେଥିପାଇଁ ସେମାନେ ଦେବତାମାନଙ୍କ ବଡ଼ଭାଇରୂପେ ଅଭିହିତ । ସୁରବଂଶର ଇତିହାସ ଶ୍ରବଣରେ ଯେଉଁ ଫଳ ଅସୁରବଂଶର ଇତିହାସ ଶ୍ରବଣରେ ସେହି ଫଳ ମିଳେ । ଉଭୟଙ୍କର ପିତା ଜଣେ । କେବଳ ମା ଅଲଗା ଅଲଗା ହୋଇଥିବାରୁ ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି ହୋଇଛି । ଅଦିତିଙ୍କ ପୁତ୍ରମାନେ ଆଦିତ୍ୟ ଓ ଦିତିଙ୍କ ପୁତ୍ରମାନେ ଦୈତ୍ୟ ନାମରେ ପରିଚିତ ।

ଶ୍ରୀ ଶୁକଦେବ କହିଲେ —"ରାଜନ୍ ! ମୁଁ ତୁମକୁ ଭଗବାନ୍ କଶ୍ୟପଙ୍କ ଦ୍ୱାଦଶ ପତ୍ନୀଙ୍କ କଥା କହିସାରିଛି । ବର୍ତ୍ତମାନ ତାଙ୍କର ତ୍ରୟୋଦଶ ପତ୍ନୀ ଦିତିଙ୍କ ବଂଶାବଳୀ କହୁଛି ଶୁଣନ୍ତୁ । ମୁଁ ଶୂକରାବତାର ପ୍ରସଙ୍ଗରେ କହିଛି ଯେ ନିଜର ସଉତୁଣୀମାନଙ୍କୁ ସନ୍ତାନବତୀ ହେବାର ଦେଖି ଦିତିଙ୍କ ମନରେ ଘୋର ଈର୍ଷା ଜାତ ହେଲା । ସେ ସନ୍ଧ୍ୟା ସମୟରେ ଯେତେବେଳେ ଭଗବାନ୍ କଶ୍ୟପ ହୋମ କରୁଥିଲେ ସେତେବେଳେ ପୁତ୍ରକାମନା କରି ଦିତି ତାଙ୍କ ପାଖରେ ପହଞ୍ଚିଲେ ଏବଂ ଆଗ୍ରହର ସହିତ ଗର୍ଭାଧାନ ପାଇଁ ମୁନିଙ୍କୁ ପ୍ରାର୍ଥନା କଲେ । ମୁନି କଶ୍ୟପ ପତ୍ନୀଙ୍କୁ ବହୁତ ବୁଝାଇଲେ; କିନ୍ତୁ ଫଳ କିଛି ହେଲାନାହିଁ । ଦିତି ଅତ୍ୟଧିକ କାମାତୁରା ହୋଇପଡ଼ିଥିବାରୁ ପତିଙ୍କ କଥା ପ୍ରତି କର୍ଣ୍ଣପାତ କଲେ ନାହିଁ । ଶେଷରେ ମୁନି ନିରୁପାୟ ହୋଇ ସେହି ଦାରୁଣ ବେଳାରେ ଦିତିଙ୍କ ଗର୍ଭାଧାନ କଲେ ।" ଗର୍ଭାଧାନ ସଂସ୍କାର ପରେ ମୁନି କହିଲେ —"ତୁମର ମହାକ୍ରୂର ଆସୁରିଭାବପୂର୍ଣ୍ଣ ଦୁଇଟି ପରାକ୍ରମଶାଳୀ ପୁତ୍ର ଜନ୍ମ ହେବେ । ସର୍ବଜ୍ଞ ମୁନିଙ୍କ କଥା ଅନ୍ୟଥା ହେଲା ନାହିଁ । ଦିତିଙ୍କ ଗର୍ଭରୁ ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ନାମରେ ଦୁଇ ଦୈତ୍ୟ ଜନ୍ମ ହେଲେ । ସେ ଦୁହେଁ ଅନ୍ୟ କେହି ନୁହନ୍ତି, ଭଗବାନ୍‌ଙ୍କ ଦ୍ୱାରରକ୍ଷୀ ଥିବା ଜୟ ଓ ବିଜୟ । ସନକାଦି ଋଷିଙ୍କ ଅଭିଶାପ ହେତୁ ଦୁହେଁ ଅସୁର ହୋଇ ଜନ୍ମଗ୍ରହଣ କଲେ । ତାଙ୍କ ଜନନୀ ଦିତି କଶ୍ୟପଙ୍କଠାରୁ ବର ମାଗିନେଇ-ଥିଲେ—'ମୋ' ପୁଅଙ୍କ ମୃତ୍ୟୁ ଭଗବାନ୍‌ଙ୍କ ହାତରେ ହିଁ ହେବ । ତେଣୁ ଭଗବାନ୍ ଦୁଇ ଅବତାରରେ ସେ ଦୁହିଁଙ୍କୁ ସଂହାର କରିଥିଲେ । ଶୂକର ଅବତାରରେ ହିରଣ୍ୟାକ୍ଷ ଓ ନୃସିଂହ ଅବତାରରେ ହିରଣ୍ୟକଶିପୁ ମୃତ୍ୟୁବରଣ କରିଥିଲେ । ପୂର୍ବରୁ ଶୂକରାବତାର କଥା କହିଛି, ପରେ ନୃସିଂହାବତାର କଥା କହିବି । ଏବେ ହିରଣ୍ୟକଶିପୁ ଦୈତ୍ୟର ବଂଶ ପ୍ରସଙ୍ଗ କହୁଛି ।"

ରାଜନ୍ ! ଜମ୍ଭ ନାମକ ଦାନବର ପୁତ୍ରୀ କୟାଧୁ ସହିତ ହିରଣ୍ୟକଶିପୁର ବିବାହ ହୋଇଗଲା । କୟାଧୁ ଗର୍ଭରୁ ସଂହ୍ଲାଦ, ଅନୁହ୍ଲାଦ, ହ୍ଲାଦ ଓ ଭକ୍ତାଗ୍ରଗଣ୍ୟ ପ୍ରହ୍ଲାଦ ଜନ୍ମ

ଗ୍ରହଣ କରିଥିଲେ । ସିଂହିକା ନାମରେ ଝିଅଟିଏ ମଧ୍ୟ ଜନ୍ମ ହେଲା । ବିପ୍ରଚିତ୍ତି ନାମକ ଦାନବ ସହିତ ସିଂହିକାର ବିବାହ ହୋଇଥିଲା । ସିଂହିକାଠାରୁ ଯେଉଁ ପୁଅ ରାହୁ ନାମରେ ଜନ୍ମ ହୋଇଥିଲା ସମୁଦ୍ର ମନ୍ଥନ ସମୟରେ ଭଗବାନ୍ ମୋହିନୀ ରୂପରେ ତା'ର ମୁଣ୍ଡ କାଟି ଦେଇଥିଲେ । ଏହାଛଡ଼ା ହିରଣ୍ୟକଶିପୁର ସ୍ମର, ଉଦ୍‌ଗୀଥ, ପରିଷ୍ୱଙ୍ଗ' ତଙ୍ଗ, ପତଙ୍ଗ, କ୍ଷୁଦ୍ରଭୃତ୍ ଓ ଘୃଣୀ ନାମରେ ଛ' ପୁତ୍ର ଜନ୍ମ ହେଲେ, ଯେଉଁମାନେ ପ୍ରଥମ ସ୍ୱାୟମ୍ଭୁବ ମନ୍ୱନ୍ତରରେ ପ୍ରଜାପତି ମରୀଚିଙ୍କ ପତ୍ନୀ ଊର୍ଣ୍ଣାଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ ଏବଂ ବ୍ରହ୍ମାଙ୍କ ଅଭିଶାପରେ ଅସୁର ହୋଇଗଲେ । କିନ୍ତୁ ଏହି ଦଶ ପୁତ୍ରଙ୍କ ମଧ୍ୟରୁ ମୁଖ୍ୟ ଚାରି ପୁତ୍ରଙ୍କ ବଂଶ କଥା କହୁଛି ।

ହିରଣ୍ୟକଶିପୁଙ୍କ ବଡ଼ପୁଅ ସହ୍ଲାଦର ସ୍ତ୍ରୀ ଥିଲେ କୃତି । ତାଙ୍କ ଗର୍ଭରୁ ପଞ୍ଚଜନ୍ୟ ନାମକ ପୁତ୍ର ଜନ୍ମ ହୋଇଥିଲା । ସେ ଅସୁର ସମୁଦ୍ରରେ ଶଙ୍ଖ ରୂପରେ ରହୁଥିଲା । ଦ୍ୱାପର ଯୁଗ ଶେଷରେ ଭଗବାନ୍ ତାକୁ ମାରି ତାର ଶଙ୍ଖକୁ ଧାରଣ କଲେ । ତେଣୁ ତାଙ୍କ ଶଙ୍ଖର ନାମ ହେଲା ପାଞ୍ଚଜନ୍ୟ । ସେ ଅସୁରର ଜୀବନ ଧନ୍ୟ ହେଲା । କାରଣ ତାହାର ଅସ୍ଥିକୁ ଭଗବାନ୍ ଶ୍ୟାମସୁନ୍ଦର ନିଜର କୋମଳ ହସ୍ତରେ ଧାରଣ କରି କୋମଳ ଅଧରରେ ସ୍ପର୍ଶ କରୁଛନ୍ତି । ହିରଣ୍ୟକଶିପୁର ଦ୍ୱିତୀୟ ପୁତ୍ରର ନାମ ହ୍ଲାଦ ଓ ତା'ର ସ୍ତ୍ରୀର ନାମ ଧମନୀ । ସେହି ଧମନୀ ଗର୍ଭରୁ ଇଲ୍ୱଳ ଓ ବାତାପି ନାମରେ ଦୁଇପୁଅ ଜନ୍ମ ହୋଇଥିଲେ । ଇଲ୍ୱଳର ଅନ୍ୟ ନାମ ହେଉଛି ଆତାପୀ । ମହାମୁନି ଅଗସ୍ତ୍ୟ ବାତାପିକୁ ଖାଇ ହଜମ କରି ଦେଇଥିଲେ ।"

ଶୌନକ ପଚାରିଲେ - "ଭଗବନ୍ ! ଏଡ଼େ ବଳବାନ୍ ଅସୁରକୁ ଭଗବାନ୍ ଅଗସ୍ତ୍ୟ ବ୍ରାହ୍ମଣ ହୋଇ ଖାଇଗଲେ ଆଉ ହଜମ କରିଦେଲେ, ଏହାତ ବଡ଼ ବିଚିତ୍ର କଥା । ଆପଣ ଉଚିତ ମନେ କରୁଥିଲେ ସେହି ଅସୁର କଥା କୁହନ୍ତୁ ।"

ଶୌନକଙ୍କ ପ୍ରଶ୍ନ ଶୁଣି ମହର୍ଷି ସୂତ କହିଲେ—"ମହାଭାଗ ! ଏହା ଏକ ଖୁବ୍ ବଡ଼ କାହାଣୀ । କିନ୍ତୁ ସଂକ୍ଷେପରେ ସେକଥା ଆପଣମାନଙ୍କୁ କହୁଛି, ମନଦେଇ ଶୁଣନ୍ତୁ ।"

ଆତାପୀ ଓ ବାତାପୀ ଦୁହେଁ ବଡ଼ ବୀର ପରାକ୍ରମଶାଳୀ ଥିଲେ । ସେମାନଙ୍କର ଅପରିମିତ ଧନ, ସମ୍ପଦ ଥିଲା । ଯେତେବେଳେ ସେମାନେ ପୃଥିବୀରେ ରହୁଥିଲେ । ପୃଥିବୀରେ ଯେତେ ରାଜା ଥିଲେ ସେମାନଙ୍କ ମଧ୍ୟରେ ସେ ଦୁଇ ଭାଇ ଅଧିକ ସମ୍ପଦଶାଳୀ ଥିଲେ । କିନ୍ତୁ ଦୁଇଭାଇଙ୍କର ଏକ ଖରାପ ଅଭ୍ୟାସ ଥିଲା । ସେମାନେ ନର ମାଂସାଶୀ ଥିଲେ । ଋଷି, ମୁନିମାନଙ୍କ ମାଂସ ଖାଇବା ତାଙ୍କର ବେଶି ଲୋଭ ଥିଲା । ଶ୍ରାଦ୍ଧ ଅନ୍ନ ଖାଇ ମୋଟା ହୋଇଥିବା ବ୍ରାହ୍ମଣମାନଙ୍କ ମାଂସ ତାଙ୍କର ଅତି ପ୍ରିୟ ଖାଦ୍ୟ ଥିଲା । ଯେଉଁମାନେ ତେଜୋହିନ, ଅଳ୍ପବୟସ୍କ ମୁନି ଥିଲେ ସେମାନଙ୍କୁ ଦୁଇଭାଇ ଖାଇଗଲେ । ସେମାନେ ଏକ ଉପାୟ କରିଥାନ୍ତି । ଇଚ୍ଛା ଅନୁସାରେ ରୂପ ଧାରଣ କରିବା ଶକ୍ତି ସେମାନଙ୍କର ଥିଲା । ଯେଣୁପାଇଁ ବାତାପୀ ଏକ ସୁନ୍ଦର ଛେଳି ହୋଇଯାଉଥିଲା ଏବଂ ଆତାପୀ ଏକ ବ୍ରାହ୍ମଣ

ବେଶ ଧାରଣ କରୁଥିଲା । ସେ ମୁନିଙ୍କ ପାଖକୁ ଯାଇ ବିନୟର ସହିତ କହୁଥିଲା—"ମୁନିଗଣ ! ଆଜି ଆମର ଶ୍ରାଦ୍ଧ । ଆପଣମାନେ ଭୋଜନ କରିବା ପାଇଁ ଆମ ଘରକୁ ଆସିବେ । ମୁଁ ମାଂସ ଖାଏ । ତେଣୁ ଆପଣମାନଙ୍କୁ ମଧ୍ୟ ମାଂସ ଭୋଜନ କରାଇବି । ବ୍ରାହ୍ମଣମାନେ, ମୁନିମାନେ ନିମନ୍ତ୍ରଣ ଗ୍ରହଣ କରନ୍ତି । ଛେଳିରୂପରେ ଥିବା ମାୟାବୀ ବାତାପୀକୁ କାଟି ତା'ର ମାଂସ ରାନ୍ଧି ସମସ୍ତଙ୍କୁ ଖାଇବାକୁ ଦିଏ ଏବଂ ନିମନ୍ତ୍ରିତ ବ୍ରାହ୍ମଣମାନେ ଖାଇ ପିଇ ସୁସ୍ଥହୋଇ ଯେତେବେଳେ ବାହାରନ୍ତି ସେତେବେଳେ ଆତାପୀ ଡାକେ—"ଭାଇ ବାତାପୀ ! ଶୀଘ୍ର ବାହାରି ଆ ।"

ଏହି ଡାକ ଶୁଣିବାମାତ୍ରେ ବାତାପୀ ସମସ୍ତଙ୍କ ପେଟକୁ ଚିରି ବାହାରି ଆସେ । ଏହା ପରେ ଦୁହେଁ ମିଶି ଆନନ୍ଦରେ ବ୍ରାହ୍ମଣମାନଙ୍କ ମାଂସ ଭକ୍ଷଣ କରନ୍ତି । ଯେଉଁ ବ୍ରାହ୍ମଣମାନେ କହନ୍ତି, 'ଆମେ ନିରାମିଷାଶୀ, ମାଂସ ଖାଉନା', ସେମାନଙ୍କୁ ଫଳ ଦିଅନ୍ତି; ମାତ୍ର ସେ ଫଳ ଖାଇବା ପରେ ପରେ ସେମାନଙ୍କ ପେଟକୁ ଚିରିଦିଅନ୍ତି ଏବଂ ସେମାନଙ୍କ ମାଂସ ଖାଆନ୍ତି । ଏହିପରି ସେମାନେ ଶ୍ରାଦ୍ଧ କରୁଥିବା କଥା କେହି ଜାଣିପାରୁ ନଥିଲେ । ବହୁଦିନ ପର୍ଯ୍ୟନ୍ତ ସେମାନେ ବହୁ ବ୍ରାହ୍ମଣଙ୍କୁ ହତ୍ୟା କଲେ । କିନ୍ତୁ ପାପ ବେଶିଦିନ ଲୁଚି ରହେନାହିଁ । ମୁନିମାନେ ଏକଥା ଜାଣିପାରିଲେ । କିପରି ଏହାର ପ୍ରତିକାର କରିବେ ସେଇକଥା ଭାବି ବ୍ୟସ୍ତ ହୋଇ ପଡ଼ିଲେ । ସମସ୍ତେ ମିଶି ଏକ ସଭା କଲେ । ସେଥିରେ ସିଦ୍ଧାନ୍ତ ହେଲା ଯେ ମହର୍ଷି ଅଗସ୍ତ୍ୟଙ୍କ ପାଖକୁ ପ୍ରତିନିଧି ପଠାଯାଉ । ସେ ଆମ୍ଭମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଓ ଶ୍ରେଷ୍ଠ । ସେ ସମୁଦ୍ରକୁ ଚଳୁ କରି ଦେଇଥିଲେ ଏବଂ ପରିସ୍ରା ଦ୍ୱାର ଦେଇ ବାହାର କରି ଦେଇଥିଲେ । ସେହି ଦିନରୁ ସମୁଦ୍ରର ପାଣି ଲୁଣିଆ ହୋଇଛି । ସେ ଇଚ୍ଛାକଲେ ଏ ଅସୁରଙ୍କୁ ଯଥାର୍ଥ ଦଣ୍ଡ ଦେଇପାରିବେ । ବର୍ତ୍ତମାନ ସାଧାରଣ ମୁନିଙ୍କ ଆପତ୍ତିରେ ଅସୁର ଆଉ ନାହିଁ ।

ମୁନିମାନଙ୍କ ସିଦ୍ଧାନ୍ତ ଅନୁସାରେ କେତେକ ବୟସ୍କ ମୁନି ଯାଇ ଅଗସ୍ତ୍ୟଙ୍କ ପାଖରେ ପହଞ୍ଚିଲେ । ଯଥାବିଧି ଶିଷ୍ଟାଚାର ଓ କୁଶଳ ପ୍ରଶ୍ନ ପରେ ମହର୍ଷି ଅଗସ୍ତ୍ୟ ପଚାରିଲେ— "ମୁନିଗଣ ! ଆପଣମାନେ ଆଜି କଣ ପାଇଁ ଆସିଥିଲେ ? ଆପଣମାନେ ଏପରି ବିମର୍ଷ ଓ ଚିନ୍ତିତ ଦେଖାଯାଉଛନ୍ତି କାହିଁକି ?"

ଋଷିମାନଙ୍କ ମଧ୍ୟରୁ ଜଣୈକ ବୃଦ୍ଧ ହାତଯୋଡ଼ି କହିଲେ—"ଭଗବନ୍ ! କଣ କହିବି ! ଆମ୍ଭେମାନେ ବଡ଼ ଦୁଃଖୀ । ହିରଣ୍ୟକଶିପୁର ନାତି ଆତାପୀ ଓ ବାତାପୀ ଦୁହେଁ ମିଶି କେତେ ଯେ ବ୍ରାହ୍ମଣଙ୍କୁ ଖାଇଗଲେଣି ତାହା ଠିକ୍‌ଭାବେ କହି ହେବନାହିଁ । ବାତାପୀ ଛେଳିମାଂସ ରୂପରେ ବ୍ରାହ୍ମଣମାନଙ୍କ ପେଟକୁ ଯାଉଛି ଓ ଆତାପୀ ଡାକିବାମାତ୍ରେ ସମସ୍ତଙ୍କ ପେଟକୁ ଚିରି ବାତାପୀ ବାହାରି ଆସୁଛି । ଦୁହେଁ ସେହି ବ୍ରାହ୍ମଣମାନଙ୍କୁ ଖାଇଯାଉଛନ୍ତି । ଦୁଇଭାଇ ଏହିପରି ବହୁ ବ୍ରାହ୍ମଣମାନଙ୍କୁ ଖାଇଗଲେଣି ।"

ଏହା ଶୁଣି ସେମାନଙ୍କୁ ଆଶ୍ୱାସନା ଦେଇ ଅଗସ୍ତ୍ୟ କହିଲେ—"ମୁନିଗଣ ! ଆଗେ ମୋତେ ନିମନ୍ତ୍ରଣ କରିବାର ବ୍ୟବସ୍ଥା କର, ତା'ପରେ ଯାହା କରିବା କଥା ମୁଁ କରିବି ।"

ଋଷିମାନେ କହିଲେ—"ଭଗବନ୍ ! ଆପଣ ଆମ୍ଭମାନଙ୍କର ଗୁରୁ ସ୍ଥାନୀୟ । ଆପଣଙ୍କର କିଛି ଅନିଷ୍ଟ ହେଲେ ଋଷି ସମାଜ ନଷ୍ଟ ହୋଇଯିବ ।"

ଅଗସ୍ତ୍ୟ ହସି ହସି କହିଲେ—"ମୁନିଗଣ ! ଆଦୌ ଭୟ କରନ୍ତୁ ନାହିଁ । ମୋର ଅସୁର କିଛି କରିପାରିବେ ନାହିଁ ।"

ଋଷିମାନେ କହିଲେ—"ଭଗବନ୍ ! ଆପଣ ମନେ ରଖିଥାନ୍ତୁ ସେ ବ୍ରାହ୍ମଣ ରୂପରେ ଆପଣଙ୍କୁ ନିମନ୍ତ୍ରଣ କରିବା ପାଇଁ ଆସିବ ।" ଋଷିମାନେ ସେଠାରୁ ଆସି ଥରେ ଅଗସ୍ତ୍ୟଙ୍କୁ ନିମନ୍ତ୍ରଣ କରିବା ପାଇଁ ଆତାପିକୁ କହିଲେ । ଆତାପି ମଧ୍ୟ ଋଷିଙ୍କ ପରିପୁଷ୍ଟ ଶରୀର ଦେଖି ଲୋଭେଇଗଲା । ଧନେ ମୂଲ୍ୟବାନ୍ ପୀତାମ୍ବର ପରିଧାନ କରି, ଚନ୍ଦନଚର୍ଚ୍ଚିତ ହୋଇ ଅଗସ୍ତ୍ୟଙ୍କ ପାଖରେ ପହଞ୍ଚିଲା । ଦୂରରୁ ମୁନିଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା । ମୁନି ଏସବୁ ଦେଖି କଥାଟା ବୁଝିଗଲେ । ତଥାପି କିଛି ନ କହି ଗମ୍ଭୀର ହୋଇ ରହିଲେ । ଆତାପି ଆସି ହାତ ଯୋଡ଼ି କହିଲା—"ଭଗବନ୍ ! କାଲି ଆମର ଶ୍ରାଦ୍ଧ । ଆପଣ ଶିଷ୍ୟମାନଙ୍କ ସହିତ ଆମ ଘରେ ପଦାର୍ପଣ କରିବାକୁ ନିବେଦନ କରୁଛି ।"

ମୁନି ଗମ୍ଭୀର ଭାବେ କହିଲେ—"ବାବୁ ! ଆମେତ ଶ୍ରାଦ୍ଧ ଅନ୍ନ ଖାଉନାହିଁ । ଶ୍ରାଦ୍ଧାନ୍ନ ବଡ଼ କଷ୍ଟରେ ହଜମ ହୁଏ । ସେଥିପାଇଁ ଜପ ତପ ନ କଲେ ବ୍ରାହ୍ମଣର ପ୍ରାଣ ଯାଏ । ତଥାପି ଆପଣ ଏତେଦୂରରୁ ଆସିଛନ୍ତି, ଆପଣଙ୍କ ଅନୁରୋଧ ପ୍ରତ୍ୟାଖ୍ୟାନ କରିବା ଉଚିତ ନୁହେଁ । ଆଚ୍ଛା ଠିକ୍ ଅଛି, ମୁଁ ଯିବି ।"

ଏହା ଶୁଣି ଆତାପୀ ଖୁସି ହୋଇଗଲା ଓ ଆନନ୍ଦ ମନରେ ଘରକୁ ଫେରିଲା । ଦ୍ୱିତୀୟ ଯଥାସମୟରେ ସେ ମୁନିଙ୍କ ପାଖରେ ଆସି ପହଞ୍ଚିଲା । ମୁନି ମଧ୍ୟ ଶିଷ୍ୟମାନଙ୍କ ସହିତ ତା' ଘର ପାଖରେ ପହଞ୍ଚିଲେ । ପ୍ରଥମେ ସମସ୍ତଙ୍କୁ ଯଥାବିଧି ପୂଜା କରିସାରି ପତ୍ର ଲଗାଇ ଦେଲେ ।

ମୁନି କହିଲେ—"ମୁଁ ଖାଇସାରିବା ପରେ ମୋର ଶିଷ୍ୟଗଣ ଭୋଜନ କରିବେ । ପ୍ରଥମେ ମୋତେ ଖାଇବାକୁ ଦିଅ, ପରେ ଅନ୍ୟମାନେ ଖାଇବେ ।"

ଏହା ଶୁଣି ଆତାପୀ କହିଲା—"ମହାରାଜ ! ମୁଁ ମାଂସରେ ଶ୍ରାଦ୍ଧ କରେଁ । ମୁନି କହିଲେ—ଠିକ୍ ଅଛି । ତୁମର ଯାହା ସଦାଚାର ଅଛି ସେଇଆ କର । ଆଣ, ଆଉ ବିଳମ୍ବ କର ନାହିଁ ।"

ଆତାପୀ ମାଂସ ଆଣି ମୁନିଙ୍କୁ ପରଷିଲା । ମୁନି ଖାଇବାକୁ ଲାଗିଲେ । ଖାଉ ଖାଉ ବାତାପୀର ପୁରାମାଂସ ଖାଇଦେଲେ । ଶେଷରେ ମୁନି ଏକ ହାକୁଟି ମାରିଲେ ଏବଂ ଏତେ ଜୋର୍‌ରେ ଏକ ଅପାନ ବାୟୁ ଛାଡ଼ିଲେ ଯେ ଶିଷ୍ୟମାନେ ହସି ହସି ଗଡ଼ିଗଲେ । ଏହି ସମୟରେ ଆତାପୀ ଡାକିଲା—"ବାତାପୀ ଭାଇ, ଶୀଘ୍ର ବାହାରି ଆ ।' ସେ ତିନି ଚାରିଥର ଡାକିଲା ।" ସେତେବେଳେ ମୁନି ଅପାନ ବାୟୁ ଛାଡ଼ିବା ସଙ୍ଗେ ସଙ୍ଗେ ହସିହସି କହିଲେ—"ବାବୁ ! ଏବେ ଇଷ୍ଟ ସ୍ମରଣ କର । ଆଉ ବାତାପୀ ଆଶା ଛାଡ଼ିଦେ । ମୁଁ ତାକୁ ଖାଇ ହଜମ କରିଦେଇଛି ।"

ଏହା ଶୁଣି ଆତାପି ମୁନିଙ୍କ ଉପରକୁ ଝପଟି ଆସିଲା । ମୁନି ଅଗସ୍ତ୍ୟ ଏପରି ଏକ ହୁଂକାର ଛାଡ଼ିଲେ ଯେ ଆତାପି ତଳେ କଚାଡ଼ି ହୋଇ ପଡ଼ିଗଲା ଓ ଅଚେତନ ହୋଇଗଲା । ମୁନି ନିଜ ଶିଷ୍ୟମାନଙ୍କୁ ନେଇ ସେଠାରୁ ଚାଲିଗଲେ ।

ଶ୍ରୀ ସୂତ ମହର୍ଷି କହିଲେ—"ମୁନିଗଣ ! ଭଗବାନ୍ ଅଗସ୍ତ୍ୟଙ୍କ ପେଟରେ ବଡ଼ବାଗ୍ନି ସର୍ବଦା ଜଳୁଥାଏ । ଯାହା ଖାଇଲେ ବି ତାହା ସଙ୍ଗେ ସଙ୍ଗେ ହଜମ ହୋଇଯାଏ । ତେଣୁ ଯାହାର ଅଜୀର୍ଣ୍ଣ ରୋଗ ଅଛି, ଖାଦ୍ୟ ପରିପାକ ହେଉନି, କ୍ଷୁଧା ନାହିଁ, ସେ ଭୋଜନ କରିବା ପରେ ତିନିଥର ପେଟରେ ହାତ ମାରି ମନ୍ତ୍ରଟିଏ ତିନି ଥର ପଢ଼ିଲେ ସବୁ କିଛି ହଜମ ହୋଇଯିବ ।"

ଶୌନକ କହିଲେ—"ଭଗବନ୍ ! ଆମକୁ ସେହି ମନ୍ତ୍ରଟି କହିଦିଅନ୍ତୁ । କଥା ଶୁଣିବାବେଳେ ଅଧିକ ସମୟ ବସିରହିବାକୁ ପଡ଼ୁଥିବାରୁ ଆମର ବି ବେଳେବେଳେ ପେଟ ଖରାପ ଲାଗୁଛି ।"

ଏହା ଶୁଣି ସୂତ କହିଲେ—"ଆରେ ଆପଣତ ବିଶ୍ୱକୁ ହଜମ କରିଦେବା ଲୋକ । ଆପଣଙ୍କର ଅଜୀର୍ଣ୍ଣ କଣ ହେଉଛି । ତଥାପି ମନ୍ତ୍ରଟା କହୁଛି, ଏହା ଅନ୍ୟମାନଙ୍କ କାମରେ ଲାଗିବ । ମନ୍ତ୍ରଟି ହେଉଛି—

ବାତାପି ଭକ୍ଷିତୋ ଯେନ ଆତାପି ଚ ନିପାତିତଃ ।
ସମୁଦ୍ର ଶୋଷିତୋ ଯେନ ସ ମେଽଗସ୍ତ୍ୟା ପ୍ରସାଦତୁ ॥

ଏହି ମନ୍ତ୍ରକୁ ପଢ଼ି ଖିରି, ପୁରି, ମାଲ୍‌ପା ଯାହା ଇଚ୍ଛା ଖାଇ ହଜମ କର । ହିରଣ୍ୟକଶିପୁର ଦୁଇପୁଅଙ୍କ ବଂଶପ୍ରସଙ୍ଗ କହିବା ପରେ ଏବେ ଅନ୍ୟ ପୁଅଙ୍କ ବଂଶପରିଚୟ କହୁଛି, ମନ ଦେଇ ଶୁଣନ୍ତୁ ।"

## ଛପପଦୀ

ଅନୁହ୍ରାଦ କୀ ନାରୀ ଭଇ ସୂର୍ମ୍ୟା ସୁକୁମାରୀ ।
ତାତେ ଦ୍ୱୈ ସୁତ ଭୟେ ବଲୀ ସୁରହିତ୍ତ ଅତି ଭାରୀ ॥
ପ୍ରଥମ ବାଷ୍କଲ ଭୟୋ ଦ୍ୱିତୀୟ ମହିଷାସୁର ମାନୀ ।
ଚଢ଼ୈ୍ୟା ସ୍ୱର୍ଗ ପର ବଲୀ ଭଗେ ସୁର ତଜି ରଜଧାନୀ ॥
ସ୍ୱର୍ଗ ଛୋଡ଼ ସୁର ଭଗି ଗୟେ, ମହିଷାସୁର ସୁରପତି ଭୟେ ।
ଦୁଃଖିତ ପରାଜିତ ସୁରଗନ ମିଲି, ବ୍ରହ୍ମ ପାଇ ବଧ ସନ କହୈ୍ୟା ॥



# ମହିଷାସୁର ବଧ

ଅନୁହ୍ଲାଦସ୍ୟ ସୂର୍ମ୍ୟା ସ୍ତ୍ୟାଂ ବାଷ୍କଲୋ ମହିଷସ୍ତଥା ।
ବିରୋଚନସ୍ତୁ ପ୍ରାହ୍ଲାଦିର୍ଦେବ୍ୟାସ୍ତସ୍ୟାଭବଦ୍ ବଳିଃ ॥

(ଶ୍ରୀମଦ୍ଭାଗବତ—୬ଷ୍ଠ ସ୍କନ୍ଧ-୧୮ଅ-୧୬ ଶ୍ଳୋ)

## ଛପ୍‌ପୟ

ମହିଷାସୁର କୀ ସୁନ ବାତ ବିଧି ହୁ ଘବରାୟେ ।
ଲୈକେଁ ଦେବନ ସଙ୍ଗ ତୁରତ ଶ୍ରୀହରି ଢିଁଗ ଆୟେ ॥
ସମ୍ମତ କରିକେଁ ତେଜ ନିକାର୍‌ୟୋ ସବ୍‌ନେ ନିଜ-ନିଜ ।
ଦୁର୍ଗାଦେବୀ ଭଈ ଶକ୍ତି ଦସ-ଦସ ଧାରେଁ ଭୁଜ ॥
ଗର୍ଜୀଂ ତର୍ଜୀଂ ଚଣ୍ଡିକା, ଆୟୁଧ ଲୈ ଋପୁ ଢିଁଗ ଗଈଂ ।
ମହିଷାସୁର କୂଁ ମାରିକେଁ, ଜଗତ ମାଁହି ପୂଜିତ ଭଈଂ ॥

ଏ ସଂସାର ମହାମାୟାଙ୍କ ଶକ୍ତିଦ୍ୱାରା ପରିଚାଳିତ । ଶକ୍ତି ବିନା ସର୍ବ-ସମର୍ଥ ଶିବ ମଧ୍ୟ ଶବ ପରି ନିଷ୍କ୍ରିୟ ହୋଇଯାନ୍ତି । ସଂସାରର ସବୁଠି, ସମସ୍ତ ରୂପରେ, ସର୍ବତୋଭାବରେ ଶକ୍ତି ପରିବ୍ୟାପ୍ତ । ସ୍ତ୍ରୀବାଚକ ଯେତେ ପଦାର୍ଥ ଅଛି, ସେ ସମସ୍ତ ଶକ୍ତିଙ୍କର ଭିନ୍ନ ଭିନ୍ନ ସ୍ୱରୂପ ମାତ୍ର । ସେମାନଙ୍କ ବ୍ୟତୀତ ପୁଂଲିଙ୍ଗବାଚକ ଶବ୍ଦର କୌଣସି ମହତ୍ତ୍ୱ ନାହିଁ । ଭଗବତୀ ମହାମାୟାଙ୍କର ଅନନ୍ତ ନାମ ଅଛି । ବ୍ରହ୍ମାଦି ଦେବଗଣ ମଧ୍ୟ ତାଙ୍କଠାରୁ ପାର ପାଇ ପାରନ୍ତି ନାହିଁ । ଶିବା, ଭଦ୍ରା, ଜଗଦମ୍ବା, ରୌଦ୍ରୀ, ନିତ୍ୟା, ଗୌରୀ, ଧାତ୍ରୀ, ଜ୍ୟୋତ୍ସ୍ନାମୟୀ, ଚନ୍ଦ୍ରରୂପିଣୀ, ସୁଖସ୍ୱରୂପା, ଶରଣାଗତବତ୍ସଳା, ସିଦ୍ଧିସ୍ୱରୂପା, ନୈଋତୀ, ଭୂଭୃତା, ଲକ୍ଷ୍ମୀ, ସତୀ, ଶର୍ବାଣୀ, ଦୁର୍ଗା, ଦୁର୍ଗପରା, ସାରା, ସର୍ବକାରିଣୀ, ଖ୍ୟାତି, କୃଷ୍ଣା, ଧୂମ୍ରା, ସୌମ୍ୟା, ରୌଦ୍ରରୂପା, ଜଗଦାଧାରଭୂତା, କୃତି, ବିଷ୍ଣୁମାୟା ଆଦି ଅନେକ ନାମରେ ସେ ବିଶ୍ୱରେ ବିଖ୍ୟାତ । ତାଙ୍କର ଅନେକ ରୂପ ଅଛି । ତାଙ୍କ ବିନା ବିଶ୍ୱର ସୃଷ୍ଟି, ତ୍ରିଦେବତା, ଚତୁର୍ଦ୍ଦଶ ଭୁବନ, ଚରାଚର ଜଗତ୍‌ର କଳ୍ପନା ସମ୍ଭବ ନୁହେଁ । ସେ ଜଗଦୀଶ୍ୱରଙ୍କ ଜନନୀ ଯଶୋଦା ରୂପରେ, କେତେବେଳେ ତାଙ୍କର ଭଗିନୀ ରୂପରେ ପୂଜିତା ହୁଅନ୍ତି । କେତେ-ବେଳେ ଶ୍ରୀକୃଷ୍ଣଙ୍କ ଆହ୍ଲାଦଦାୟିନୀ ଶ୍ରୀରୂପରେ ଚରାଚର ବିଶ୍ୱକୁ ସୁଖମୟ କରନ୍ତି ତ ପୁଣି ଧର୍ମପତ୍ନୀ ରୂପରେ ଧର୍ମର ପୁତ୍ରମାନଙ୍କୁ ଜନ୍ମ ଦିଅନ୍ତି । ପ୍ରାଣୀମାନଙ୍କ ମଧ୍ୟରେ ସୁଖଦାୟିନୀ ଶାନ୍ତି ରୂପରେ ସେ ଅବସ୍ଥାନ କରନ୍ତି ।

ସନାତନୀ ଶକ୍ତିଭୂତା ଦେବୀ ତୁଷ୍ଟି, ପୁଷ୍ଟି, ସ୍ମୃତି, ଶାନ୍ତି, କାନ୍ତି, ଭ୍ରାନ୍ତି, ଶକ୍ତି, ବୃତ୍ତି, ବୁଦ୍ଧି, ଜାତି, ବ୍ୟାପ୍ତି, ଲକ୍ଷ୍ମୀ, ଈଶ୍ୱରୀ, କ୍ଷୁଧା, ତୃଷ୍ଣା, ଛାୟା, ମାୟା, ନିଦ୍ରା, ଚେତନା, କ୍ଷମା, ଶ୍ରଦ୍ଧା, ବିଶୁଦ୍ଧା, ଦୟା ଆଦି ଅନେକ ରୂପରେ ଚରାଚର ଜଗତରେ ପରିବ୍ୟାପ୍ତ ହୋଇ ରହିଛନ୍ତି । ସାତ୍ତ୍ୱିକ, ରାଜସିକ, ତାମସିକ ଆଦି ଅନେକ ଭେଦ ଥିଲେ ମଧ୍ୟ ବାସ୍ତବତଃ ମୂଳତଃ ସେ ଏକ ଓ ଅଦ୍ୱୈତ । ରଜୋଗୁଣୀ ଶକ୍ତି ସତ୍ତ୍ୱଗୁଣୀ ଶକ୍ତିଦ୍ୱାରା ଓ ତମୋଗୁଣୀ ଶକ୍ତି ରଜୋଗୁଣୀ ଶକ୍ତିଦ୍ୱାରା ପରାଭୂତ ହୁଏ । ଭିନ୍ନ ଭିନ୍ନ ଶକ୍ତି ଯେତେବେଳେ କାର୍ଯ୍ୟ ସାଧନରେ ଅସଫଳ ହୁଅନ୍ତି, ସେତେବେଳେ ସେହି ଦେବୀ ସଂଘଶକ୍ତି ପ୍ରଭାବରେ କଠିନତର କାର୍ଯ୍ୟକୁ ଅତି ସହଜ କରିଦିଅନ୍ତି ଏବଂ ଅତୀବ ଦୁର୍ଜୟ ଶତ୍ରୁଙ୍କୁ ମଧ୍ୟ ଜୟ କରନ୍ତି । କ୍ରୋଧ ରୂପକ ମହିଷ ଯେତେବେଳେ ଆମର ଦୈବୀ ବୃତ୍ତିକୁ ଆବୃତ କରି ସ୍ୱର୍ଗରେ ବି ଆଧିପତ୍ୟ ବିସ୍ତାର କଲା ସେତେବେଳେ ଆମେ ସମସ୍ତ ସଦ୍‌ଗୁଣ, ବିବେକଶକ୍ତିକୁ ଉତ୍ପନ୍ନ କରୁଁ । ସେହି ଶକ୍ତି ସମସ୍ତ ଶତ୍ରୁଙ୍କୁ ବିନାଶ କରେ । ଦେବତାମାନଙ୍କର ବିଜୟ ହୁଏ । ଆତ୍ମାର କ୍ଷତିସାଧକ କାମ, କ୍ରୋଧ, ଲୋଭ ଆଦି ପ୍ରବଳ ଶତ୍ରୁଙ୍କୁ ଚଣ୍ଡୀଦେବୀ ବିନାଶ କରିଦିଅନ୍ତି । ତମୋଗୁଣରେ ବ୍ୟାପ୍ତ, ଐଶ୍ୱର୍ଯ୍ୟ ମଦରେ ମତ୍ତ କ୍ରୂର ଅସୁରଗଣଙ୍କ ତୁଳନାରେ ଦେବୀ କୋମଳାଙ୍ଗୀ ହେଲେ ମଧ୍ୟ ରଣରଙ୍ଗଦୁର୍ମଦା ପାଲଟି ଯାଆନ୍ତି । ସୁକୁମାରୀ ହୋଇ ମଧ୍ୟ ରଣଚଣ୍ଡୀ ହୋଇଯାନ୍ତି । ସେ ଅବଳା ହୋଇ ମଧ୍ୟ ସବଳା ପାଲଟି-ଯାନ୍ତି । ସିଂହକୁ ବାହନ କରି ସେ ଶତ୍ରୁ ଉପରକୁ ଡେଇଁ ପଡ଼ନ୍ତି । ସେତେବେଳେ ସେ ଫଳାହାର ଅପେକ୍ଷା ଆମିଷ ଆହାର ଗ୍ରହଣ କରନ୍ତି । ଅଳତା ଓ କୁଙ୍କୁମରେ ସେ ପାଦ ଓ ଅଧର ରଞ୍ଜିତ କରନ୍ତି ନାହିଁ । ମଧୁପାନଦ୍ୱାରା ସେ ମୁଖମଣ୍ଡଳକୁ ଆରକ୍ତ କରିଦିଅନ୍ତି । ସେତେବେଳେ ସେ ମୋତିର ହାର ନ ପିନ୍ଧି ନରମୁଣ୍ଡମାଳା ପରିଧାନ କରନ୍ତି । ହାତରେ ଧରିଥିବା ଖପରକୁ ସେ ଶତ୍ରୁରକ୍ତରେ ରଞ୍ଜିତ କରନ୍ତି । ସେ ପ୍ରବଳ ପ୍ରତାପୀ ମହିଷାସୁରକୁ ପାଦ ତଳେ ପକାଇ ବିନାଶ କରିଛନ୍ତି । ସେ ସମସ୍ତଙ୍କ ଶକ୍ତିକୁ ନେଇ ପ୍ରକଟ ହୋଇଛନ୍ତି । ସେ ସମସ୍ତଙ୍କ ସାଙ୍ଗରେ ନେଇ, ସମ୍ମିଳିତ ଅସ୍ତ୍ରଶସ୍ତ୍ର ଧାରଣ କରି ଯୁଦ୍ଧ କରନ୍ତି, ବିଜୟିନୀ ହୁଅନ୍ତି ଏବଂ ଦେବତାମାନଙ୍କୁ ସୁଖୀ କରନ୍ତି । ସେହି ସଂଘଶକ୍ତି ସ୍ୱରୂପା, ମହିଷାସୁରମର୍ଦ୍ଦିନୀ ଦେବୀଙ୍କ ପାଦପଦ୍ମରେ କୋଟି କୋଟି ପ୍ରଣାମ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ହିରଣ୍ୟକଶିପୁର ତୃତୀୟ ପୁତ୍ର ଅନୁହ୍ଲାଦର ସ୍ତ୍ରୀ ଥିଲେ ସୂର୍ମ୍ୟା । ତାଙ୍କ ଗର୍ଭରୁ ବାଷ୍କଳ ଓ ମହାପରାକ୍ରମଶାଳୀ ମହିଷାସୁର ଜନ୍ମ ହୋଇ-ଥିଲେ । ମହିଷାସୁର ଏପରି ବଳବାନ୍ ଥିଲା ଯେ କେହି ତା'ର ସମ୍ମୁଖୀନ ହୋଇପାରିଲେ ନାହିଁ । ଯୁଦ୍ଧରେ ପରାଜିତ କରି ଦେବତାମାନଙ୍କୁ ସେ ସ୍ୱର୍ଗରୁ ବାହାର କରିଦେଲା ଏବଂ ନିଜେ ଇନ୍ଦ୍ର ହୋଇ ତିନି ଲୋକର ଶାସନ କାର୍ଯ୍ୟ ପରିଚାଳନା କଲା । ସେତେବେଳେ ଭଗବତୀ ଦୁର୍ଗାଦେବୀ ଆବିର୍ଭୂତା ହୋଇ ମହିଷାସୁରକୁ ସଂହାର କରିଥିଲେ ।"

ଏହା ଶୁଣି ଶୌନକ ମୁନି ପଚାରିଲେ—"ଭଗବନ୍ ! ଦେବୀ ଭଗବତୀ କପରି ଆବିର୍ଭାବ ହେଲେ ? ସ୍ତ୍ରୀ ହୋଇ ମଧ୍ୟ ତାଙ୍କର ଏତେ ବଳ କେଉଁଠୁ ଆସିଲା । ସେ କାହାର ଝିଅ ଏବଂ କାହାକୁ ସେ ବିବାହ କରିଥିଲେ । ସେ ମହିଷାସୁରକୁ କାହିଁକି ସଂହାର କଲେ । ଦୟା କରି ମୋର ପ୍ରଶ୍ନର ଉତ୍ତର ଦିଅନ୍ତୁ ।"

ମହର୍ଷି ସୂତ କହିଲେ—"ମୁନିବର ! ଏହା ଏକ ବଡ଼ କାହାଣୀ । ମହାମାୟା ଭଗବତୀଙ୍କ ଚରିତ ଅନନ୍ତ । ଭଗବତୀଙ୍କ ମହିମା ମାତ୍ର ମୁଁ ଏଠାରେ ବର୍ଣ୍ଣନା କରିବି । ସେ କପରି ମହିଷାସୁରକୁ ସଂହାର କଲେ ସେଇ କଥା କହୁଛି । ମହିଷାସୁର ଯେତେବେଳେ ଅସୁର ବଳ ନେଇ ସ୍ୱର୍ଗ ଅଧିକାର କଲା ଓ ଇନ୍ଦ୍ରଙ୍କୁ ବାହାର କରି ଦେଇ ସ୍ୱର୍ଗରେ ଶାସନ କାର୍ଯ୍ୟ ପରିଚାଳନା କଲା ସେତେବେଳେ ଦେବତାମାନେ ଦୁଃଖିତ ହୋଇ ସ୍ୱର୍ଗ ତ୍ୟାଗ କରି ପୃଥିବୀରେ ମଣିଷ ରୂପରେ ବୁଲିଲେ । ସେମାନେ ସମସ୍ତେ ଏକତ୍ରିତ ହୋଇ ଶିବଙ୍କ ପାଖକୁ ଗଲେ । ଶିବ ମଧ୍ୟ ଦେବଗଣଙ୍କୁ ସାଙ୍ଗରେ ନେଇ ବିଷ୍ଣୁଙ୍କ ପାଖକୁ ଗଲେ । ଦେବଗଣଙ୍କ ପାଖରୁ ମହିଷାସୁରର ଅତ୍ୟାଚାର କଥା ଶୁଣିବାମାତ୍ରେ ବିଷ୍ଣୁ ଅତ୍ୟଧିକ କ୍ରୋଧାନ୍ୱିତ ହୋଇପଡ଼ିଲେ । ତାଙ୍କର କ୍ରୋଧପୂର୍ଣ୍ଣ ମୁଖରୁ ଏକ ଜ୍ୟୋତି ନିର୍ଗତ ହେଲା । ରୁଦ୍ରଙ୍କ ସହିତ ଦେବଗଣଙ୍କ ମୁଖରୁ ସେହିପରି ଜ୍ୟୋତି ନିର୍ଗତ ହୋଇ ଏକ ମହା-ଜ୍ୟୋତିରେ ପରିଣତ ହେଲା । ଏହି ତେଜ ତପସ୍ୟା, ତ୍ୟାଗ, ଶମ, ଦମ-ଜନିତ ସାତ୍ତ୍ୱିକ ଗୁଣରୁ ସୃଷ୍ଟି ନ ହୋଇ କ୍ରୋଧରୁ ଉତ୍ପନ୍ନ ହୋଇଥିବାରୁ ବୀରତ୍ୱପୂର୍ଣ୍ଣ ରୌଦ୍ରରସରେ ପ୍ଳାବିତ ହୋଇଥିଲା ।"

ଦେବଗଣଙ୍କ ତେଜ ମିଳିତ ହୋଇ ଏକ ଆକାର ଧାରଣ କଲା । ରୌଦ୍ରତେଜରୁ ମୁଖ, ଯମଙ୍କ ତେଜରୁ କେଶ, ବିଷ୍ଣୁଙ୍କ ତେଜରୁ ବାହୁଯୁଗଳ, ଚନ୍ଦ୍ରଙ୍କ ତେଜରୁ ସ୍ତନ, ଇନ୍ଦ୍ରଙ୍କ ତେଜରୁ କଟୀଭାଗ, ବରୁଣଙ୍କ ତେଜରୁ ଜଙ୍ଘ, ପୃଥ୍ୱୀଙ୍କ ତେଜରୁ ନିତମ୍ବ ରୂପ ଗ୍ରହଣ କଲା । ବ୍ରହ୍ମାଙ୍କ ତେଜରୁ ଦୁଇପାଦ, ସୂର୍ଯ୍ୟଙ୍କ ତେଜରୁ ଅଙ୍ଗୁଳି, କୁବେରଙ୍କ ତେଜରୁ ନାସିକା, ପ୍ରଜାପତିଙ୍କ ତେଜରୁ ଦାନ୍ତ, ଅଗ୍ନିଙ୍କ ତେଜରୁ ନେତ୍ର, ସନ୍ଧ୍ୟାଙ୍କ ତେଜରୁ ଭ୍ରୂ, ବାୟୁଙ୍କ ତେଜରୁ କାନ ଏବଂ ଅନ୍ୟାନ୍ୟ ଦେବତାଙ୍କ ତେଜରୁ ଅନ୍ୟ ଅଙ୍ଗପ୍ରତ୍ୟଙ୍ଗମାନ ସୃଷ୍ଟି ହୋଇଗଲା । ବର୍ତ୍ତମାନ ସମସ୍ତ ତେଜ ମିଶି ଏକ ବୀରାଙ୍ଗନା ରୂପ ଗ୍ରହଣ କଲା । ଦେବଗଣ ସେହି ଦେବୀଙ୍କୁ ଶ୍ରଦ୍ଧା, ଭକ୍ତିପୂର୍ବକ ପ୍ରଣାମ କଲେ ଓ ଦେବୀଙ୍କ ଜୟଗାନ କଲେ । ଦେବୀଙ୍କ ଜୟଘୋଷରେ ସମସ୍ତ ଦିଗ ପୂର୍ଣ୍ଣ ହୋଇଗଲା ।

ଦେବୀ ଦେବତାମାନଙ୍କ ପ୍ରତି କରୁଣାପୂର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲେ—"ତୁମ୍ଭେମାନେ ମୋତେ କାହିଁକି ସ୍ମରଣ କଲ ?"

ଦେବତାମାନେ କହିଲେ—"ଜଗଦମ୍ବେ ! ମହିଷାସୁର ଆମକୁ ବହୁତ ଦୁଃଖ ଦେଉଛି । ଦୁର୍ଦ୍ଦାନ୍ତ ରାକ୍ଷସ କବଳରୁ ଆମ୍ଭମାନଙ୍କୁ ରକ୍ଷା କର, ଆମକୁ ଅଭୟ ଦିଅ । ଆମର ହୃତ ଗୌରବ, ଶ୍ରୀ ଓ ସମୃଦ୍ଧିକୁ ଫେରାଇ ଦିଅ ।"

ଦେବୀ କହିଲେ—"ହେ ଦେବଗଣ ! ମୁଁ ଆପଣମାନଙ୍କ ଶକ୍ତିରୁ ଆବିର୍ଭୂତା ହୋଇଛି । ବର୍ତ୍ତମାନ ଆପଣମାନେ ମୋତେ ନିଜ ନିଜର ଅସ୍ତ୍ରଶସ୍ତ୍ର ଦିଅନ୍ତୁ । ମୁଁ ମହିଷାସୁରକୁ ସଂହାର କରିବି ।"

ଭଗବତୀଙ୍କ କଥା ଶୁଣି ଦେବଗଣ ନିଜ ନିଜର ଅସ୍ତ୍ରଶସ୍ତ୍ର ପ୍ରଦାନ କଲେ । ଶିବ ଦେଲେ ତ୍ରିଶୂଳ, ବିଷ୍ଣୁ ଚକ୍ର, ବରୁଣ ଶଙ୍ଖ, ଅଗ୍ନି ଶକ୍ତି, ବାୟୁ ଧନୁ ଓ ବାଣ, ଇନ୍ଦ୍ର ବଜ୍ର ଓ ଘଣ୍ଟା, ଯମ ଦଣ୍ଡ, ବରୁଣ ପାଶ, ବ୍ରହ୍ମା କମଣ୍ଡଳୁ, ପ୍ରଜାପତି ମାଳା, ସୂର୍ଯ୍ୟ ତେଜ, କାଳ ଢାଲ ଓ ତରବାରି, ସମୁଦ୍ର ମୁକ୍ତାହାର, ଦିବ୍ୟବସ୍ତ୍ର, ଚୂଡ଼ାମଣି, କୁଣ୍ଡଳ, କଙ୍କଣ, କେୟୂର, ନୂପୁର, ଅଙ୍ଗୁରୀୟ ଓ ଅନ୍ୟାନ୍ୟ ଭୂଷଣ ପ୍ରଦାନ କଲେ । ବିଶ୍ୱକର୍ମା କଟାରି ଓ ନିକୁମ୍ଭିଳ ମାଳା, ହିମାଳୟ-ବାହନ-ରୂପେ ସିଂହ ଓ ଅନ୍ୟାନ୍ୟ ରତ୍ନ, କୁବେର ମଧୁପୂର୍ଣ୍ଣ ପାତ୍ର, ଶେଷନାଗ ନାଗହାର ଆଦି ଏହିପରି ଅସଂଖ୍ୟ ସୁନ୍ଦର ବସ୍ତୁ ମାତୃଭୂମିର ଉଦ୍ଧାର ପାଇଁ ଅକୁଣ୍ଠ ଚିତ୍ତରେ ପ୍ରଦାନ କଲେ ।

ଦେବତାଙ୍କ ଦ୍ୱାରା ଉତ୍ସାହିତ ହୋଇ ମହାମାୟା ସିଂହ ଉପରେ ଚଢ଼ି କଟାରି ଘୂରାଇ, ପୃଥିବୀକୁ ତେଜ, ବଳ, ପୌରୁଷରେ ପ୍ରକମ୍ପିତ କରି ଅସୁର ଆଡ଼କୁ ପ୍ରସ୍ଥାନ କଲେ । ଦୈତ୍ୟମାନେ ଦୂରରୁ ଦେବୀଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ମହିଷାସୁର ନିଜର ସୁସଜ୍ଜିତ ସୈନ୍ୟବାହିନୀ ନେଇ ଦେବୀଙ୍କ ଆଡ଼କୁ ଦୌଡ଼ିଲା । ଅସୁର ଦେଖିଲା ଦେବୀଙ୍କ ସହସ୍ର ଭୁଜରେ ସହସ୍ର ସହସ୍ର ଆୟୁଧ ଅଛି । ସେ ନିର୍ଭୟରେ ଅସୁରସେନା ସଂହାର କରୁଛନ୍ତି । ତେଣୁ ମହିଷାସୁର ପୂରା ଶକ୍ତି ବିନିଯୋଗ କରି ଯୁଦ୍ଧ କରିବାକୁ ଲାଗିଲା । ଚକ୍ଷୁର ନାମକ ପରାକ୍ରମଶାଳୀ ଦୈତ୍ୟ ଥିଲା, ମହିଷାସୁର ସେନାବାହିନୀର ଅଧିନାୟକ । ସେ ଯୁଦ୍ଧ କରିବା ପାଇଁ ଦେବୀଙ୍କ ଆଡ଼କୁ ଆଗେଇ ଆସିଲା । ଦେବୀ ଅଟ୍ଟହାସ କରିବା ମଧ୍ୟରେ ତାକୁ ସଂହାର କଲେ । ପରେ ପରେ ଚାମର, ଉଦଗ୍ର, ଅସିଲୋମା, ବାଷ୍କଳ ଆଦି ସେନାପତିଗଣ ମୃତ୍ୟୁବରଣ କଲେ । କେତେକ ଅସୁର ଦେବୀଙ୍କ ଅସ୍ତ୍ରଶସ୍ତ୍ରରେ ମରୁଥିବାବେଳେ କେତେକ ଅସୁରଙ୍କୁ ସିଂହ ମାରିଦେଉଥିଲା । ଦେବୀ ଥିଲେ ଅପରାଜିତା । ସେ ବାରମ୍ବାର ମଧୁପାନ କରୁଥିଲେ । କ୍ରୋଧରେ ତାଙ୍କର ସର୍ବାଙ୍ଗ କମ୍ପି ଉଠୁଥିଲା । ସମଗ୍ର ସେନାବାହିନୀ ନଷ୍ଟଭ୍ରଷ୍ଟ ହୋଇଯିବାର ଦେଖି ମହିଷାସୁର ନିଜେ ଯୁଦ୍ଧ କରିବାପାଇଁ ଦେବୀଙ୍କ ଆଡ଼କୁ ଆଗେଇ ଆସିଲା । ଦେବୀ ହେରେକାର କରି କହିଲେ—"ରେ ଦୁଷ୍ଟ ! ତୁ ତୋ କୁତ୍ସିତକର୍ମର ଫଳ ଭୋଗ କର । ଆଜି ତୋତେ ଯମସଦନକୁ ପଠାଇଦେବି । ଆଜି ତୁ ମୋର ବଳ ଦେଖିବୁ । ଗର୍ବର ଫଳ ତୁ ପାଇବୁ ।" ଏହାଶୁଣି ମହିଷାସୁର ଶିଙ୍ଗରେ ବଡ଼ ବଡ଼ ପାହାଡ଼ ଉପାଡ଼ିଆଣି ଦେବୀଙ୍କ ଆଡ଼କୁ ଫିଙ୍ଗିବାରେ ଲାଗିଲା । ଖୁରାରେ ପୃଥିବୀକୁ ଖୋଳି ପକାଇଲା । ମେଘ ପରି ଘୋର ଗର୍ଜନ କଲା । ନିଜର ସମସ୍ତ ବଳ ପ୍ରୟୋଗ କରି ଦେବୀଙ୍କୁ ପରାଜିତ କରିବାପାଇଁ ଯତ୍ନ କଲା । ଦେବୀ ହଠାତ୍ ତା' ପାଖକୁ ଯାଇ ତାକୁ ନାଗପାଶରେ ବାନ୍ଧି ପକାଇଲେ । ଉଚ୍ଚ ସ୍ୱରରେ ଅଟ୍ଟହାସ କରି ଦେବୀ ପଚାରିଲେ—"ଏବେ ତୁ କ'ଣ କରିବୁ କହ ?"

ଏହିକ୍ଷଣବେଳେ ଅସୁର ମହିଷ ରୂପ ତ୍ୟାଗ କରି ଏକ ବଡ଼ ସିଂହର ରୂପ ଧାରଣ କଲା । ଦେବୀ ସିଂହରୂପୀ ଅସୁରର ମୁଣ୍ଡ କାଟିବାପାଇଁ ଉଦ୍ୟତ ହେବାମାତ୍ରେ ମହିଷାସୁର ଖଡ଼୍ଗଧାରୀ ମନୁଷ୍ୟରୂପ ଧାରଣ କଲା । ଦେବୀ ଢାଲ, ତରବାରୀ ଉଠାଇ ଅନ୍ୟ ହାତରେ ତାକୁ ବାନ୍ଧି ପକାଇଲେ । ଯେତେବେଳେ ସେ ପୁରୁଷ ରୂପ ଗ୍ରହଣ ହାତୀ ହୋଇଗଲା ଏବଂ ଦେବୀଙ୍କ ବାହନ ସିଂହକୁ ଶୁଣ୍ଢରେ ଟାଣିବାକୁ ଲାଗିଲା । ଦେବୀ ଖଡ଼୍ଗରେ ତା'ର ଶୁଣ୍ଢ କାଟିବା ପାଇଁ ଉଦ୍ୟତ ହେବାମାତ୍ରେ ସେ ପୁଣି ମହିଷ ପାଲଟିଗଲା । ପୁଣି ପର୍ବତ ଉପାଡ଼ି ଦେବୀଙ୍କ ଉପରକୁ ଫିଙ୍ଗିବାକୁ ଆରମ୍ଭ କଲା ।

ଦେବୀ ଅତ୍ୟଧିକ କ୍ରୋଧାନ୍ୱିତା ହୋଇ ଡେଇଁପଡ଼ି ଦୈତ୍ୟକୁ ଧରି ପକାଇଲେ ଏବଂ ପାଦତଳେ ଚାପିଧରି ତା'ର ମୁଣ୍ଡ କାଟିବାକୁ ଉଦ୍ୟତ ହେଲାବେଳେ ସେ ବାହାରି ପଳାଇବାକୁ ଯତ୍ନ କଲା । ମାତ୍ର ଦେବୀ ହଠାତ୍ ତା' ମୁଣ୍ଡକୁ ଖଡ଼୍ଗରେ କାଟି ପକାଇଲେ । ମହିଷାସୁର ମରିବା ସଙ୍ଗେ ସମସ୍ତ ଅସୁର ବାହିନୀରେ ହାହାକାର ଖେଳିଗଲା । ଦେବତାମାନେ ଦେବୀଙ୍କ ଉପରେ ପୁଷ୍ପ ବୃଷ୍ଟି କଲେ, ଗନ୍ଧର୍ବମାନେ ବିଜୟ ସଙ୍ଗୀତ ଗାନ କଲେ ଅପ୍ସରାଗଣ ନୃତ୍ୟ କରିବାକୁ ଲାଗିଲେ । 'ଭଗବତୀଙ୍କର ଜୟ', 'ମହାମାୟୀଙ୍କର ଜୟ', 'ଜଗଦମ୍ବିକାଙ୍କର ଜୟ' ଧ୍ୱନିରେ ଆକାଶ ମଣ୍ଡଳ ପୂର୍ଣ୍ଣ ହୋଇଗଲା ।

ଶ୍ରୀସୂତ କହିଲେ—"ମୁନିଗଣ ! ମୁଁ ଅତି ସଂକ୍ଷେପରେ ଅନୁହ୍ଲାଦର ପୁତ୍ର ମହିଷାସୁର ବଧ କଥା କହିଲି । ଏହାପରେ ହିରଣ୍ୟକଶିପୁର ଚତୁର୍ଥ ପୁତ୍ର, ମହାଭାଗବତ ପ୍ରହ୍ଲାଦଙ୍କ ବଂଶ ଇତିହାସ କହୁଛି, ଆପଣମାନେ ଧୀର ସ୍ଥିର ହୋଇ ଶୁଣନ୍ତୁ ।"

## ଛପ୍‌ପୟ

ଦୁର୍ଗା ଦେବୀ ଦୟା କରିହୁ ଦୁଃଖ ଦୁରିତ ନସାଓ ।
ଶକ୍ତିହୀନ ସନ୍ତାନ ପରୀ ମା ଆୟ ଜଗାଓ ॥
ଭୟେ ଭବାନୀ ଭୀତ ଆଇ ଭୟ ଭୂତ ଭଗାଓ ।
ଖଡ଼୍ଗ ହାଥ ମହଁ ଦେହୁ ଯୁଦ୍ଧ କୋ ପାଠ ପଢ଼ାଓ ॥
କଲି କଗଲ କଲୁଷିତ କରହୁଁ, କର କଲ୍ୟାନ କପର୍ଦ୍ଦିନୀ ।
ମୈଁତୋ ମମତା ମୋହ କୂଁ, ମହିଷାସୁର ମଦ ମର୍ଦ୍ଦିନୀ ॥



# ମରୁଦ୍‌ଗଣଙ୍କ ଉତ୍ପତ୍ତି

ମରୁତଶ୍ଚ ଦିତେଃ ପୁତ୍ରାଶ୍ଚତ୍ୱାରିଂଶନ୍ନବାଧିକାଃ ।
ତ ଅସାନ୍ନପ୍ରଜାଃ ସର୍ବେ ନୀତା ଇନ୍ଦ୍ରେଣ ସାତ୍ମତାମ୍ ॥

(ଶ୍ରୀମଦ୍ଭାଗବତ—୬ସ୍କନ୍ଧ-୧୮ଅ-୧୯ଶ୍ଳୋ)

**ଛପ୍ପୟ**

ହିରନକଶିପୁ ଲଘୁ ପୁତ୍ର ଭୟେ ଦୈତ୍ୟନ କୁଲ ଭୂଷନ ।
ଭକ୍ତ ମୁକୁଟ ପ୍ରହ୍ଲାଦ ଭୟେ ତିନ ପୁତ୍ର ବିରୋଚନ ॥
ତିନ ସୁତ ଦାନୀ ପରମ ଭୟେ ବଲି ଜଗ ବିଖ୍ୟାତା ।
ଜିନକେ କୀୟେ ବିଷ୍ଣୁ ଦ୍ୱାର ରକ୍ଷକ ସୁରତ୍ରାତା ॥
ବଲି ଅସନା ମହଁ ଜନେ ସୁତ, ଶତ ସବକେ ସବ ଶ୍ରେଷ୍ଠ ହେଁ ।
ତିନ ସବ ମହଁ ଶିବ ଭକ୍ତ ଅତି ବାଣାସୁର ହୀ ଜ୍ୟେଷ୍ଠ ହେଁ ॥

ପ୍ରାରବ୍ଧ ଚକ୍ରରେ କିଏ କେଉଁଠି ଜନ୍ମ ହୁଏ ଏବଂ ଅନ୍ୟ କେଉଁଠି ତା'ର ପ୍ରସିଦ୍ଧି ପ୍ରସାରିତ ହୁଏ । ଉଚ୍ଚ କୁଳରେ ନୀଚ ପ୍ରକୃତିର ପୁରୁଷ ଏବଂ ନୀଚ କୁଳରେ ଭଗବଦ୍‌ଭକ୍ତ ମହାପୁରୁଷ ଜନ୍ମ ଗ୍ରହଣ କରିଥାନ୍ତି । ଆମେ ମନରେ ଯାହା ଭାବି କାର୍ଯ୍ୟ କରୁଁ ଶେଷରେ ତା'ର ଫଳ ବିପରୀତ ହୁଏ । ଦିତି ଇନ୍ଦ୍ରଙ୍କୁ ମାରିବା ପାଇଁ ପୁତ୍ର ଉତ୍ପନ୍ନ କରିବାକୁ ଚାହୁଁଥିବାବେଳେ ଭାଗ୍ୟବଶତଃ ଏପରି ପୁତ୍ର ଜନ୍ମ ହେଲେ ଯାହାଙ୍କୁ ଇନ୍ଦ୍ର ହତ୍ୟା କଲେ । ପ୍ରତିଦିନ ଏହିପରି ଘଟଣାମାନ ଘଟୁଥିବାର ଦେଖି ମୁନିଋଷିମାନେ କହିଛନ୍ତି ସାମର୍ଥ୍ୟ ଅନୁସାରେ ପୁରୁଷାର୍ଥ ସମ୍ପାଦନ କରିବା ଉଚିତ । କାରଣ ପୁରୁଷାର୍ଥ ବ୍ୟତୀତ ପ୍ରାରବ୍ଧ ପ୍ରକାଶ ପାଏ ନାହିଁ ଏବଂ ପ୍ରାରବ୍ଧ କିଛି ଅଛି କି ନାହିଁ ତାହା ଜଣାପଡ଼େ ନାହିଁ । ତେଣୁ କର୍ମ କରିବା ସମ୍ବନ୍ଧରେ ଆମର ସେଥିରେ ଅଧିକାର ଅଛି କି ନାହିଁ ଚିନ୍ତା କରିବାକୁ ପଡ଼ିବ ଏବଂ ଫଳାଫଳ ଈଶ୍ୱରଙ୍କ ଉପରେ ଛାଡ଼ିଦେବାକୁ ହେବ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମୁଁ ଆପଣଙ୍କୁ ହିରଣ୍ୟକଶିପୁର ବଡ଼ ପିଲାପୁଅଙ୍କ କଥା କହିଲି । ବର୍ତ୍ତମାନ ସବୁଠୁ ସାନପୁଅ ପ୍ରହ୍ଲାଦଙ୍କ କଥା କହୁଛି ଶୁଣ । ମହାରାଜ !

ଆପଣ ଉତ୍କଣ୍ଠିତ ହେବେ ନାହିଁ । କାରଣ ଭକ୍ତାଗ୍ରଗଣ୍ୟ ପ୍ରହ୍ଲାଦଙ୍କ କଥା ବିସ୍ତୃତଭାବେ ମୁଁ ପ୍ରସଙ୍ଗ ଅନୁସାରେ ପରେ କହିବି ।"

ପ୍ରହ୍ଲାଦଙ୍କ ପୁତ୍ର ଥିଲେ ବିରୋଚନ । ସେ ଥିଲେ ପରମ ବ୍ରାହ୍ମଣ । ସେ ବ୍ରାହ୍ମଣ ରୂପରେ ଆସିଥିବା ଦେବତାଙ୍କୁ ନିଜର ପ୍ରାଣଦାନ କରିଥିଲେ । ସେହି ଶ୍ରେଷ୍ଠ ଭକ୍ତ ବିରୋଚନଙ୍କ ପୁତ୍ର ଥିଲେ ମହାରାଜ ବଳୀ । ତାଙ୍କ ପରି ସାହସୀ, ଦାନୀ ପୃଥିବୀରେ ନ ଥିଲେ । ମହାରାଜ ବଳୀଙ୍କ ପତ୍ନୀ ଅଶନାଙ୍କ ଗର୍ଭରୁ ଶହେ ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ ବାଣାସୁର ଥିଲେ ଜ୍ୟେଷ୍ଠ ଓ ଶ୍ରେଷ୍ଠ । ଭଗବାନ୍ ଭୂତନାଥଙ୍କର ସେ ଅନନ୍ୟ ଭକ୍ତ ଥିଲେ । ଶିବଭକ୍ତମାନଙ୍କ ମଧ୍ୟରେ ତାଙ୍କର ସ୍ୱତନ୍ତ୍ର ସ୍ଥାନ ଥିଲା । ପରେ ମୁଁ ବାଣାସୁରଙ୍କ ଚରିତ ବିସ୍ତୃତଭାବେ ବର୍ଣ୍ଣନା କରିବି । ହିରଣ୍ୟକଶିପୁଙ୍କ ବଂଶାବଳୀ ବର୍ଣ୍ଣନା ପରେ ଏବେ ମୁଁ ହିରଣ୍ୟାକ୍ଷ ବଂଶ ପରିଚୟ କହୁଛି ।

ଭଗବାନ୍ କଶ୍ୟପଙ୍କ ଔରସରେ ଦିତିଙ୍କ ଗର୍ଭରୁ ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ନାମରେ ଦୁଇ ପୁଅ ଜନ୍ମ ହୋଇଥିଲେ । ହିରଣ୍ୟାକ୍ଷ ଉପାଭାନୁକୁ ବିବାହ କରିଥିଲେ । ତାଙ୍କଠାରୁ ଶକୁନି, ଶମ୍ବରାସୁର, ଧୃଷ୍ଟ, ଭୂତସନ୍ତାପନ, ବୃକ, କାଳନାଭ, ମହାନାଭ, ହରିଶ୍ମଶ୍ରୁ ଓ ଉତ୍କଚ ନାମରେ ନଅ ପୁଅ ଜନ୍ମ ଗ୍ରହଣ କରିଥିଲେ । ଏମାନେ ସମସ୍ତେ ପରମବୀର, ଉତ୍ସାହୀ, ମହାପରାକ୍ରମୀ ଓ ଦେବବିଦ୍ୱେଷୀ ଥିଲେ । ଏହିପରି ଅନେକ ଅସୁର ଥିଲେ । କିନ୍ତୁ ଦିତିଙ୍କ ଦୁଇ ପୁଅଙ୍କର ବଂଶର ବର୍ଣ୍ଣନା କଲି । ଏସବୁ କହିଲି କେବଳ ମହାଭାଗବତ ପ୍ରହ୍ଲାଦଙ୍କର ପରିଚୟ ଦେବା ପାଇଁ । ଏହାକୁ ଭୂମିକା ରୂପେ ଗ୍ରହଣ କରାଯାଇପାରେ । ସାଧାରଣ ଅସୁରଙ୍କ ଅପେକ୍ଷା ଯେଉଁମାନଙ୍କର ଶତ୍ରୁତା ମଧ୍ୟରେ ବି ଭଗବାନଙ୍କ ସହିତ ସମ୍ବନ୍ଧ ସ୍ଥାପିତ ହୋଇଛି ଅଥବା ଯେଉଁମାନେ ଭଗବଦ୍‌ଭକ୍ତ ସେଇମାନଙ୍କ ଚରିତ ଶ୍ରବଣୀୟ ଓ କଥନୀୟ ।

ରାଜନ୍ ! ଦିତିଙ୍କ ପୁତ୍ର ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷଙ୍କ ବଂଶ ପରିଚୟ କହିଲି । ସେ ଦୁଇଭାଇଙ୍କ ବ୍ୟତୀତ ଦିତିଙ୍କର ଆହୁରି ୪୯ ପୁତ୍ର ଥିଲେ । ସେମାନେ ମରୁତ୍ ନାମରେ ଅଭିହିତ । ସେମାନେ ଦିତିଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ଦୈତ୍ୟ ନାମରେ ଅଭିହିତ ନ ହୋଇ ଦେବତାର ସ୍ଥାନ ଲାଭ କରିଥିଲେ । ସେହି ୪୯ ଦେବତା ଏକ ପୃଥକ୍ ଗଣରୂପେ ଅଭିହିତ ।

ଏହା ଶୁଣି ମହାରାଜା ପରୀକ୍ଷିତ କହିଲେ—"ପ୍ରଭୋ ! ଆପଣତ ବଡ଼ ବିଚିତ୍ର କଥା କହୁଛନ୍ତି । ଦିତିଙ୍କ ଗର୍ଭରୁ ଉତ୍ପନ୍ନ ହୋଇ ମଧ୍ୟ ମରୁଦ୍‌ଗଣ ଦୈତ୍ୟ ନ ହୋଇ ଦେବତା ହେଲେ କିପରି ? ପ୍ରାରବ୍ଧର ଫଳ ବିଚିତ୍ର । ଏହା ଶୁଣିବା ପାଇଁ ମୋର କୌତୂହଳ ଜାତ ହେଉଛି । ଦିତିଙ୍କ ଏହି ୪୯ ପୁତ୍ର କି କି ଶୁଭ କାର୍ଯ୍ୟ କରିଥିଲେ ଯାହାଦ୍ୱାରା ଅସୁର କୁଳରେ ଜନ୍ମ ହୋଇ ମଧ୍ୟ ଦେବତା ହୋଇପାରିଥିଲେ । ଏଥିରେ କେବଳ ମୁଁ ନୁହେଁ ଏହି ସଭାରେ ଉପସ୍ଥିତ ସବୁ ମୁନି, ଋଷି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ କଥାଟା ଜାଣିବା ପାଇଁ ଆଗ୍ରହୀ । ଏଣୁ ଦୟାକରି ଆମକୁ ଏଇ ପରମ ରହସ୍ୟପୂର୍ଣ୍ଣ ଉପାଖ୍ୟାନଟି କହନ୍ତୁ ।"

ମହାରାଜ ପରୀକ୍ଷିତଙ୍କର ଉତ୍ସୁକତା ଦେଖି ବ୍ୟାସନନ୍ଦନ ଶ୍ରୀ ଶୁକଦେବ ଅତ୍ୟନ୍ତ ପ୍ରସନ୍ନ ହୋଇ ରାଜାଙ୍କୁ ପ୍ରଶଂସା କରି କହିଲେ—ରାଜନ୍ ! "ଆପଣ ଏକ ଉତ୍ତମ ପ୍ରଶ୍ନ ପଚାରିଛନ୍ତି ଏବଂ ଭଗବାନ୍‌ଙ୍କ ପ୍ରତି ଯଥାର୍ଥ ଭକ୍ତି ପ୍ରଦର୍ଶନ କରିଛନ୍ତି । ମୁଁ ସେହି ପବିତ୍ର ଉପାଖ୍ୟାନ କହୁଛି, ଆପଣ ଓ ମୁନି, ଋଷିଗଣ, ସମସ୍ତେ ମନ ଦେଇ ଶୁଣନ୍ତୁ ।"

ଭଗବାନ୍ ଶୂକର ରୂପରେ ହିରଣ୍ୟାକ୍ଷ ଓ ନୃସିଂହ ରୂପରେ ହିରଣ୍ୟକଶିପୁଙ୍କ ସଂହାର କରିବା ପରେ ଦିତି ହୃଦୟରେ ଦାରୁଣ ଆଘାତ ଲାଗିଲା । ସେ ଭାବିଲା—ବିଷ୍ଣୁ ତ ସର୍ବଦର୍ଶୀ ଓ ସମଦର୍ଶୀ । ତାଙ୍କର କେହି ଶତ୍ରୁ ନୁହେଁ କି ମିତ୍ର ନୁହେଁ । ସେ ଅଧିକ ସ୍ତୁତିପ୍ରିୟ ବୋଲି ମନେ ହୁଅନ୍ତି । ଯେ ତାଙ୍କୁ ଅନୁସରଣ କରେ, ତାଙ୍କର ପ୍ରଶଂସାଗାନ କରେ ତା' ଉପରେ ସେ ପ୍ରସନ୍ନ ହୁଅନ୍ତି ଏବଂ ତାକୁ ସମର୍ଥନ ଜଣାଇ ନ କରିବା କାମ ବି କରନ୍ତି । ମୋର ପୁତ୍ର ଆତ୍ମାଭିମାନୀ ଥିଲେ । ସେମାନେ ବିଷ୍ଣୁଙ୍କ ପାଖକୁ ଯିବା ଆସିବା କରୁ ନଥିଲେ । ଇନ୍ଦ୍ରାଦି ଦେବଗଣ ସବୁବେଳେ ବିଷ୍ଣୁଙ୍କ ପଛରେ ଗୋଡ଼ାନ୍ତି । ସେ ହିଁ କହିଲେ ଏମାନେ ହିଁ କହନ୍ତି ଏବଂ ନାଁ କହିଲେ ଏମାନେ ବି ନାଁ କହନ୍ତି । ସେ ଯାହା କହନ୍ତି, କରନ୍ତି ସମସ୍ତେ ତାଙ୍କୁ ସମର୍ଥନ କରନ୍ତି । ଦେବତାମାନେ ମଧ୍ୟ ବିଷ୍ଣୁଙ୍କ କାନରେ ନାନାପ୍ରକାର କଥା ଯୋଡ଼ିଯାଡ଼ି କହନ୍ତି । ସେମାନେ ମୋ' ପୁଅଙ୍କ ବିରୁଦ୍ଧରେ ବିଷ୍ଣୁଙ୍କୁ ଉତ୍ତେଜିତ କରିଦେଇଛନ୍ତି । ସ୍ୱର୍ଗ-ସୁଖକୁ ନିଷ୍କଣ୍ଟକଭାବେ ଭୋଗ କରିବା ପାଇଁ ମୋର ଦୁଇ ପୁଅଙ୍କୁ ମରାଇଛନ୍ତି । ସବୁ ଦୋଷ ସେହି ଶଚୀପତି ଇନ୍ଦ୍ରଙ୍କର । ତେଣୁ ମୋ' ସପତ୍ନୀର ପୁଅହିଁ ମୋର ଓ ମୋ' ପୁଅଙ୍କର ପ୍ରଧାନ ଶତ୍ରୁ । ବଡ଼ ଦୁଷ୍ଟ ଏହି ଇନ୍ଦ୍ର, ହୃଦୟ ତା'ର ଅତି ନିଷ୍ଠୁର । ନିଜ ଭାଇମାନଙ୍କୁ ହତ୍ୟା କରାଇ ସ୍ୱର୍ଗସୁଖ ଭୋଗ କରିବା ତା'ର ଭିତରି ଉଦ୍ଦେଶ୍ୟ । ଭାଇମାନଙ୍କ ରକ୍ତ-ରଞ୍ଜିତ ବିଷୟକୁ ଭୋଗ କରି ସେ ସୁଖୀ ହେବାକୁ ଚାହୁଁଛି । ଏହି ଇନ୍ଦ୍ର ବଡ଼ ବିଷୟ ଲୋଲୁପ, ପାପାତ୍ମା ଓ ନିର୍ଦ୍ଦୟ । ମୁଁ ଏବେ ଏପରି ଏକ ଉଦ୍ୟମ କରିବି ଯାହାଦ୍ୱାରା ଏ ପାପୀର ବିନାଶ ଘଟିବ । ଇନ୍ଦ୍ର ମଲେ ହିଁ ମୁଁ ଶାନ୍ତିରେ ନିଃଶ୍ୱାସ ମାରିବି । ନିଜର ମୃତ-ପୁତ୍ରଙ୍କ ପ୍ରତିଶୋଧ ନେଲେ ଯାଇ ମୋର ମନ ଶାନ୍ତ ହେବ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଯଦି ଜଣଙ୍କ ଉପରେ ରାଗ ଆସିଯାଏ ତେବେ ତା'କୁ ସବୁକଥା ଖରାପ ଦେଖାଯାଏ । ସେ ଭଲକଥା କହିଲେ ବି ଶୁଣିବାକୁ ଖରାପ ଲାଗେ । ଦ୍ୱେଷ କାରଣରୁ ତା'ର ଗୋଟିଏ ହେଲେ ଭଲଗୁଣ ଆଖିରେ ପଡ଼େ ନାହିଁ । ଦିତି ପୁତ୍ର ଶୋକରେ ଅନ୍ଧ ହୋଇଯାଇଥିଲା । ତା'ର ବିଚାରବୁଦ୍ଧି ଲୋପ ହୋଇ-ଯାଇଥିଲା । ସେ ଭାବିଲା—ଇନ୍ଦ୍ର ଅତି ନୀଚ । ସାମାନ୍ୟ ସୁଖ ପାଇଁ ଏକ ବାପଠାରୁ ଜନ୍ମ ହୋଇଥିବା ଭାଇଙ୍କୁ ମାରିଦେଲା । ନଶ୍ୱର ଦେହକୁ ନଷ୍ଟ କରିଦେଇ ସୁଖଭୋଗ କରିବା କେତେଦୂର ଉଚିତ ହୋଇଛି । ଦେହଧାରୀ ରାଜା ହେଉ ବା ଭିକାରୀ ହେଉ ସମସ୍ତଙ୍କର

ଚନ୍ଦ୍ରପ୍ରକାର ଗତି ହୁଏ । ଦେହକୁ ଜଳାଇଦେଲେ ଭସ୍ମ ହୋଇ ମାଟିରେ ମିଶିଯାଏ । ଅରଣ୍ୟରେ ପକାଇଦେଲେ ତାକୁ କୁକୁର, ଶିଆଳ, କୁଅ, ଗୃଧ୍ର ଆଦି ଖାଇ ମଳ ରୂପେ ନିଷ୍କାସନ କରି ଦିଅନ୍ତି । ଯଦି ମାଟିରେ ପୋତି ଦିଆଯାଏ ତେବେ ସେଥିରେ ଅଶେଷ କୃମି ସୃଷ୍ଟି ହୋଇଯାନ୍ତି । ଏହିପରି ଏକ ତୁଚ୍ଛ ଦେହକୁ ପାଳନ ପୋଷଣ କରିବା ପାଇଁ ଜୀବହିଂସା କରିବା, ନିଜର ବନ୍ଧୁ, ସ୍ୱଜନଙ୍କୁ ହତ୍ୟା କରିବା ପାପୀମାନଙ୍କ କାମ । ଯେ ଏହି ସଂସାର ସୁଖ ପାଇଁ ହିଂସା କରେ, ପାପକାମ କରେ, ପ୍ରାଣୀମାନଙ୍କ ପ୍ରତି ଈର୍ଷାନ୍ୱିତ ହୁଏ, ଶଠତା ଆଚରଣ କରେ, ତାକୁ ଚିରକାଳ ନରକର ଅଗ୍ନିରେ ଦଗ୍‌ଧୀଭୂତ ହେବାକୁ ପଡ଼ିବ । ଯମପୁରରେ ଅନେକ ଦୁଃଖ ଭୋଗ କରିବାକୁ ପଡ଼ିବ । ମୋର ପୁତ୍ରମାନଙ୍କୁ ମରାଇବା ଲୋକ ହେଉଛି ଇନ୍ଦ୍ର । ସେ ଯେପରି ମୃତ୍ୟୁବରଣ କରିବ ସେହି ଚେଷ୍ଟା ମୋତେ ନିଶ୍ଚୟ କରିବାକୁ ହେବ ।”

ପୁଣି ସେ ଭାବିଲା—କଣ କଲେ ଇନ୍ଦ୍ର ମରିବ ? ବିଷ୍ଣୁଙ୍କୁ ପୂଜା କଲେ ସମ୍ଭବ ହୁଅନ୍ତା, କିନ୍ତୁ ବିଷ୍ଣୁ ତ ଇନ୍ଦ୍ରଙ୍କ ସମର୍ଥକ । ତେଣୁ ସର୍ବସମର୍ଥ ମୋର ପତିଙ୍କୁ ହିଁ ମୋତେ ଆଶ୍ରୟ ନେବାକୁ ପଡ଼ିବ । ମୋର ସେବା, ହାବ, ଭାବ, କଟାକ୍ଷାଦି ମାଧ୍ୟମରେ ମୁଁ ତାଙ୍କୁ ବଶୀଭୂତ କରିବି । ତାଙ୍କୁ ସନ୍ତୁଷ୍ଟ କରି ତାଙ୍କଠାରୁ ଏପରି ଏକ ପୁତ୍ର ପ୍ରାର୍ଥନା କରିବି ଯେ ଇନ୍ଦ୍ରକୁ ମାରିଦେବା ପାଇଁ ସମର୍ଥ ହେବ ।

ଶ୍ରୀ ଶୁକଦେବ କହିଲେ—“ରାଜନ୍ ! ସ୍ତ୍ରୀଲୋକମାନେ ବଡ଼ ଜିଦ୍‌ଖୋର । ଯେଉଁ ବିଷୟରେ ସେମାନେ ଜିଦ୍ କରନ୍ତି ସେଥିରେ ସେମାନେ ତନ୍ମୟ ହୋଇଯାଆନ୍ତି । ସେମାନେ ନିଜର ବୁଦ୍ଧି, ବିଚାର ସବୁ ଭୁଲିଯାନ୍ତି । ସେମାନଙ୍କ ମନର କଥା ଜାଣିହୁଏ ନାହିଁ, ମାତ୍ର ସେବାଶୁଶ୍ରୂଷାଦ୍ୱାରା ସେମାନେ ପାଷାଣ ହୃଦୟକୁ ମଧ୍ୟ ତରଳାଇ ପାରନ୍ତି । କୌଣସି ଉପାୟରେ ବଶୀଭୂତ ନ ହେବା ବ୍ୟକ୍ତି ସେମାନଙ୍କ ସେବା ଓ ଶୁଶ୍ରୂଷାରେ ବଶୀଭୂତ ହୋଇଯାଏ । ଦିତି ମଧ୍ୟ ମନରେ ସେହିପରି ସିଦ୍ଧାନ୍ତ ନେଇ ପରମ ଅନୁରାଗ ଓ ବିନୟ ସହକାରେ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ଅହୋରାତ୍ର ନିଜର ପତି ମୁନି କଶ୍ୟପଙ୍କ ସେବାରେ ଆତ୍ମନିୟୋଗ କଲେ । ସେ ପତିଙ୍କର ମନୋଭାବ ଜାଣିଥିଲେ । କ'ଣ ତାଙ୍କର ପ୍ରିୟବସ୍ତୁ, କେତେବେଳେ ତାଙ୍କର କଣ ଦରକାର ସେ ବିଷୟ ତାଙ୍କର ଅଜ୍ଞାତ ନ ଥିଲା । ତେଣୁ ମିଠା କଥା କହି, ଯଥାଯଥ ସେବା କରି ଦିତି ଯେପରି ପତି ସନ୍ତୁଷ୍ଟ ହେବେ ସେହିପରି ବ୍ୟବସ୍ଥା କଲେ । ଏପରି କେଉଁ ପୁରୁଷ ଅଛି ଯେ ପତ୍ନୀର ସେବାରେ ସନ୍ତୁଷ୍ଟ ନ ହେବ । ମୁନି କଶ୍ୟପ ପତ୍ନୀ ଦିତିଙ୍କ ସେବାରେ ଖୁସି ହୋଇଗଲେ । ସେ କ'ଣ ଜାଣିଥିଲେ ଦିତିଙ୍କ ମନର କଥା ? କି ପ୍ରକାର ସ୍ୱାର୍ଥସିଦ୍ଧି ପାଇଁ ଦିତି ଏପରି ସେବା ଶୁଶ୍ରୂଷା କରୁଛନ୍ତି ତାହା ମୁନି କଶ୍ୟପ ଜାଣି ନ ଥିଲେ ।”

ମହାରାଜ ! ମହର୍ଷି କଶ୍ୟପ ପତ୍ନୀଙ୍କ ସେବାରେ ସନ୍ତୁଷ୍ଟ ହୋଇ ଦିତିଙ୍କୁ ବରପ୍ରଦାନ ଦେବାକୁ ପ୍ରସ୍ତୁତ ହୋଇଗଲେ ।

## ଛପ୍ପୟ

ଉନଂଚାଶ ଯେ ମରୁତ ପୁତ୍ର ତେଜ ଦିତି ଯେ ହେଂ ।
କିନ୍ତୁ ଭୟେ ନହିଁ ଦୈତ୍ୟ ମରୁଦ୍‌ଗଣ ସୁର ସବ ତେ ହେଁ ।
ରାଜା ପୁଚ୍ଛେଁ—ଦୈତ୍ୟ ଦେବତା ଭୟେ ବିଭୋ କସ ?
ଅସୁର ସଙ୍ଗ କୁଁ ତ୍ୟାଗି ରାଗ ସୁରପତି କୀୟୋ କସ ॥
ଶ୍ରୀ ଶୁକ ବୋଲେ—ଭୂପବର ଦିତି ଯେ ଚହ୍ୟେ ଜବ ମରେ ସୁତ ।
ଶତ୍ରୁ ଇନ୍ଦ୍ର ବଧ ଯେ ନିମିତ୍ତ, ପତି ସେବା ମହିଁ ଭଇ ରତ ॥



# ଦିତିଙ୍କର ପୁତ୍ର ପ୍ରାର୍ଥନା

ବରଦୋ ଯଦି ମେ ବ୍ରହ୍ମନ୍ ପୁତ୍ରମିନ୍ଦ୍ରହଣଂ ବୃଣେ ।
ଅମୃତ୍ୟୁଂ ମୃତପୁତ୍ରାହଂ ଯେନ ମେ ଘାତକୌ ସୁତୌ ॥

(ଶ୍ରୀମଦ୍‌ଭାଗବତ—୬ଷ୍ଠ ସ୍କନ୍ଧ-୧୮ ଅ-୩୭ ଶ୍ଳୋକ)

## ଛପ୍‌ପୟ

ମନ୍ଦ ମନ୍ଦ ମୁସ୍କାଇ ମଧୁର ବର ବୋଲେ ବୈଁନା ।
କଜରାରେ ଅନୁରାଗ ନୟନ କେ ଛୋଡ଼େ ସୈଁନା ॥
ପ୍ରତିପଲ ପତି ମୁଖ ଜୋହି ଭାବ କୂଁ ସମୁଝି ସୟାନୀ ।
କରେ କାଜ ଅନୁକୂଲ ସଦା ଈ ରହୈ ସିହାନୀ ॥
ଦିୟୌ ନରତ ସମୁଝୟୌ ନହୀଁ ମୁନି, ମୋହିତ ସେ ହୈ ଗୟେ ।
ସୁଠି ସ୍ୱଭାବ ସେବା ନିରଖି, ଅତି ପ୍ରସନ୍ନ ଦିତି ପୈ ଭୟେ ॥

ମନରେ ଯେତେବେଳେ ଈର୍ଷାର ବହ୍ନି ଜଳି ଉଠେ ସେତେବେଳେ ନାରୀର ପରର ଚିନ୍ତାର ବିବେକ ଲୋପ ପାଇଯାଏ । ହୃଦୟରେ କ୍ରୂରତା ଆସିଗଲେ ଏବଂ କୌଣସି ସାଧୁପୁରୁଷଦ୍ୱାରା ସେହି କ୍ରୂରତାକୁ ସଫଳ କରିବା ପାଇଁ ଆକାଂକ୍ଷା ଜାଗ୍ରତ ହେଲେ କିଛିକାଳ ଜଣେ ସାଧୁସ୍ୱଭାବ ସମ୍ପନ୍ନ ହୋଇପଡ଼େ । ସେ ନାରୀର ମନକୁ ବଶୀଭୂତ କରେ, ତାକୁ ସ୍ଥିର ରଖେ । ଇନ୍ଦ୍ରିୟମାନଙ୍କୁ ସଂଯତ ରଖି ସମସ୍ତ ସୁଖକୁ ଜଳାଞ୍ଜଳି ଦେଇଦିଏ । ଯାହାଦ୍ୱାରା ଉଦ୍ଦେଶ୍ୟ ସିଦ୍ଧ କରିବା ପାଇଁ ମନରେ ସ୍ଥିର କରିଥାଏ କିଛିକାଳ ପାଇଁ ତା'ର ବଶୀଭୂତ ହୋଇଯାଏ । ସାଧୁପୁରୁଷଙ୍କ ପରି ସେ ସୁଖ ଦୁଃଖରେ ସମଭାବେ ରହି ନାରୀର ଉଦ୍ଦେଶ୍ୟ ସିଦ୍ଧି ପାଇଁ ସହନଶୀଳ ହୁଏ । ସେତେବେଳେ ସ୍ୱାର୍ଥୀ ଓ ମନସ୍ୱୀଙ୍କ ମଧ୍ୟରେ କୌଣସି ଭେଦଭାବ ଦେଖାଯାଏ ନାହିଁ । ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି ମନସ୍ୱୀ ବ୍ୟକ୍ତି ଆନ୍ତରିକତାର ସହିତ କାର୍ଯ୍ୟ କରେ ଓ ସବୁ ସମୟ ପାଇଁ ସେହି ଭାବରେ ରହେ । କିନ୍ତୁ ସ୍ୱାର୍ଥପର, କାର୍ଯ୍ୟସିଦ୍ଧି ପାଇଁ ତତ୍ପର ବ୍ୟକ୍ତି ସବୁଠି ଅଭିନୟ କରିଥିଲେ ଏବଂ କାର୍ଯ୍ୟସିଦ୍ଧି ପର୍ଯ୍ୟନ୍ତ ନିଜର ନିପୁଣ ଅଭିନୟକୁ ଜାରି ରଖେ । କାର୍ଯ୍ୟ ସିଦ୍ଧ ହେବା ପରେ ସେ ପୂର୍ବ

ଅଭିନୟରୁ ନିବୃତ୍ତ ହୋଇଯାଏ । ତା'ର ନିଜ ରୂପ, ପ୍ରକୃତ ଆସୁର ବିତ୍ତିର ପ୍ରକାଶ ପାଇଯାଏ । ସେତେବେଳେ ଯାଇ ତା'ର ପ୍ରକୃତ ରୂପକୁ ସାଧୁମାନେ ବୁଝିପାରନ୍ତି । କିନ୍ତୁ ଏପରି ସ୍ୱାର୍ଥପର ଲୋକଙ୍କର ମଙ୍ଗଳ ହୁଏ ନାହିଁ । ସେମାନେ ପରେ ବହୁ ଭାବରେ ଅନୁତପ୍ତ ହୁଅନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଦିତି ନିଜର ପତି ମୁନି କଶ୍ୟପଙ୍କୁ ଏପରି ସେବା କଲି ଯେ କଶ୍ୟପ ତା'ର ବଶୀଭୂତ ହୋଇଗଲେ । ଦିତି ଯେ ତାଙ୍କର ଜ୍ୟେଷ୍ଠ ପୁତ୍ର ଇନ୍ଦ୍ରଙ୍କୁ ମାରିବା ପାଇଁ ଏପରି ଚକ୍ରାନ୍ତ କରିଛି ତାହା କଶ୍ୟପ ବୁଝିପାରି ନ ଥିଲେ । ଦିତିଙ୍କ ମିଠା ମିଠା କଥାର ଅନ୍ତରାଳରେ ବିଷ ପୂରି ରହିଥିଲା । ମୃଗକୁ ଫାଶରେ ପକାଇବା ପାଇଁ ଯେପରି ମନ ମୋହନୀୟ ସଙ୍ଗୀତ ବୀଣାର ମଧୁର ଝଙ୍କାର ମଧ୍ୟରେ ଗାନ କରାଯାଏ ସେହିପରି ଦିତି କଶ୍ୟପଙ୍କୁ ଆସକ୍ତ କରିବା ପାଇଁ ସମସ୍ତ ପ୍ରକାର ଉଦ୍ୟମ କରିଥିଲେ । ଫଳରେ ସେ ଦିତିଙ୍କର ବଶ୍ୟତା ସ୍ୱୀକାର କରିଯାଇଥିଲେ ।"

ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! କଶ୍ୟପ ଥିଲେ ଜଣେ ବିଜ୍ଞ ବ୍ୟକ୍ତି ଓ ବିଚାରବାନ୍ ପୁରୁଷ । ସେ ଦିତିଙ୍କ ମାୟା ଜାଣି ନ ପାରିଲେ କିପରି ?"

ଏହା ଶୁଣି ହସି ହସି ଶୁକଦେବ କହିଲେ—"ରାଜନ୍ ! ସ୍ତ୍ରୀରୂପିଣୀ ମହାମାୟା ଏପରି ବଳବତୀ ଯେ ବଡ଼ ବଡ଼ ଯୋଗୀ ମଧ୍ୟ ତାଙ୍କ ମାୟାଜାଲରେ ପଡ଼ିଯାଆନ୍ତି । ସେବା ମଧ୍ୟ ଏପରି ଏକ ମୋହନୀୟ ବସ୍ତୁ ଯାହାଦ୍ୱାରା ଯେକୌଣସି ଲୋକ ବଶୀଭୂତ କରିବା ଆଦୌ କଷ୍ଟକର ହୁଏନାହିଁ । ସଂସାରରେ ଯେତେ ମନୋମୁଗ୍ଧକର ବସ୍ତୁ ଅଛି ତନ୍ମଧ୍ୟରେ ସ୍ତ୍ରୀରୂପିଣୀ ମାୟା ସବୁଠାରୁ ଶ୍ରେଷ୍ଠ । ନାରୀର ଉଠିବା ବସିବା, କଥାବାର୍ତ୍ତା, ଗ୍ଭଲିଚଳନ, ହସ, କ୍ରୋଧ, କାନ୍ଦ, ସ୍ପର୍ଶ, ବାଣୀ ଆଦି ସମସ୍ତ ଚେଷ୍ଟା ମନପ୍ରାଣକୁ ପୁଲକିତ କରେ, ଆକର୍ଷିତ କରେ । ଯଦି ସେ ରୂପବତୀ ଓ ବୁଦ୍ଧିମତୀ ହୋଇଥିବ ତେବେ ବ୍ରହ୍ମାଙ୍କୁ ମଧ୍ୟ ବଶୀଭୂତ କରିବା ପାଇଁ ବେଶି ସମୟ ଲାଗିବ ନାହିଁ । ସାଧାରଣ ଲୋକଙ୍କ କଥା ନ କହିବା ଉଚିତ । ନାରୀର ସେବାରେ ବଜ୍ରାଦପି କଠୋର ହୃଦୟର ପୁରୁଷ ସହଜ ହୋଇପଡ଼େ ଓ ବଶୀଭୂତ ହୁଏ । ସେ ଅବସ୍ଥାରେ ଭଗବାନ୍ କଶ୍ୟପଙ୍କ ପରି ସହୃଦୟ ମୁନି ଯେ ବଶୀଭୂତ ହୋଇପଡ଼ିବେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେବାରେ ସନ୍ତୁଷ୍ଟ ହୋଇଥିବା ପୁରୁଷଠାରୁ ସ୍ତ୍ରୀ ଯାହା ଇଚ୍ଛା କରେ ତାହା ପାଏ । ବୁଦ୍ଧିମତୀ ସ୍ତ୍ରୀ ପକ୍ଷରେ ନିଜର ଉଦ୍ଦେଶ୍ୟ ସିଦ୍ଧି କରିବା ଆଦୌ କଷ୍ଟକର ମନେ ହୁଏ ନାହିଁ । ସେହିପରି ନାରୀ-ଆସକ୍ତ ପୁରୁଷ ପକ୍ଷରେ ଯେକୌଣସି କାର୍ଯ୍ୟ କରିବା ଆଦୌ ଅସମ୍ଭବ ନୁହେଁ । ସୃଷ୍ଟିକର୍ତ୍ତା ବ୍ରହ୍ମା ମଧ୍ୟ ଏଥିରୁ ବାଦ୍ ଯାଇ ନାହାନ୍ତି ।"

ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ନାରୀ କାହିଁଠାରେ ଏପରି ମୋହିନୀ ଶକ୍ତି ଆସିଲା କିପରି ? ସେମାନେ ଏପରି ଶକ୍ତିମୟୀ ହେବାର କାରଣ କଣ ?"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏସବୁ ହେଉଛି ଯେହ୍ନ ଚତୁର୍ମୁଖ ବ୍ରହ୍ମାଙ୍କ କାଣ୍ଡ । ମଣିଷ ମୂଳ ସୃଷ୍ଟି ଥିଲାବେଳେ ସେ ବାନ୍ଧି ହୋଇପଡ଼େ । ଏହା ବି ବ୍ରହ୍ମାଙ୍କ ସୃଷ୍ଟିର ପ୍ରଥମଫଳ । ବ୍ରହ୍ମା ନାରୀ ରୂପକ ବିଷବୃକ୍ଷକୁ ନିଜେ ଲଗାଇଛନ୍ତି । କଥା ହେଉଛି, ସୃଷ୍ଟି ଆରମ୍ଭରେ ପ୍ରଜା ବୃଦ୍ଧି ପାଇଁ ବ୍ରହ୍ମାଙ୍କ ଇଚ୍ଛା ହେଲା । ସେ ବହୁ ମୁନି, ଋଷିଙ୍କୁ ମନରୁ ସୃଷ୍ଟି କଲେ । ଯାହାକୁ ସୃଷ୍ଟି କଲେ ସେ ଯାଇ ତପସ୍ୟାରେ ବସିଗଲା । ଭଗବାନ୍‌ଙ୍କ ଧ୍ୟାନରେ ସମସ୍ତେ ଲୀନ ହୋଇପଡ଼ିଲେ । କାହାର ସହିତ କାହାର ସମ୍ପର୍କ ରହିଲା ନାହିଁ । ସମସ୍ତେ ଏକାନ୍ତ ଅବସ୍ଥାକୁ ଆଦର କଲେ । ଏହା ଦେଖି ବ୍ରହ୍ମା ବଡ଼ ଚିନ୍ତିତ ହୋଇପଡ଼ିଲେ । ଏପରି ଅବସ୍ଥା ହେଲେ ସୃଷ୍ଟି ବଢ଼ିବ କିପରି ? ଧ୍ୟାନରେ ମଗ୍ନ ଥିବା ଋଷିଙ୍କଠାରୁ ସୃଷ୍ଟି ବଢ଼ାଇବାର ଆଶା କିଣ କରିହେବ ? ବହୁ ଚିନ୍ତା କରି ମଧ୍ୟ ବ୍ରହ୍ମା କୌଣସି ସିଦ୍ଧାନ୍ତରେ ପହଞ୍ଚିପାରିଲେ ନାହିଁ । ସ୍ୱୟଂ ଭଗବାନ୍ ବ୍ରହ୍ମାଙ୍କୁ କହିଲେ ତୁମେ ଏପରି ଏକ ମାଦକ ବସ୍ତୁ ତିଆରି କର ଯାହାଦ୍ୱାରା ସମସ୍ତେ ବଶୀଭୂତ ହେବେ । ଏକାନ୍ତରେ ରହିବା ଅଭ୍ୟାସ ଛାଡ଼ି ତାହାର ସଙ୍ଗଲାଭ ପାଇଁ ବ୍ୟାକୁଳ ହେବେ । ଏହି କଥାର ମନରେ ଆସିବାମାତ୍ରେ ବ୍ରହ୍ମାଙ୍କ ଶରୀର ଦୁଇଭାଗରେ ବିଭକ୍ତ ହୋଇଗଲା । ଏକ ଅଂଶ ମୋହିନୀ ନାରୀ ରୂପେ ଓ ଅପର ଅଂଶ ନାରୀର ଅନୁଗାମୀ ପୁରୁଷ ରୂପେ ଆବିର୍ଭୂତ ହେଲେ । ମୋହ ଅଂଶ ନାରୀ ନାମରେ ପ୍ରସିଦ୍ଧ ହେଲା । ସେଥିପାଇଁ ସ୍ତ୍ରୀକୁ ଅର୍ଦ୍ଧାଙ୍ଗିନୀ କହନ୍ତି । ସ୍ତ୍ରୀ ବିନା ପୁରୁଷ ଓ ପୁରୁଷ ବିନା ନାରୀ ଅପୂର୍ଣ୍ଣ । ଦୁହେଁ ମିଶିଲେ ଏକ ଓ ପୂର୍ଣ୍ଣାଙ୍ଗ ହୁଅନ୍ତି । ସେ ପୁଣି ଏକରୁ ଅନେକ ହୁଅନ୍ତି । ଯେ କୌଣସି ମଞ୍ଜିରୁ ଅଧା ବୁଣିଲେ ସେଥିରୁ ଗଛ ବାହାରେ ନାହିଁ କି ତାହା କୌଣସି ଉପାୟରେ ପୁଷ୍ପିତ, ଫଳିତ ହୁଏ ନାହିଁ । ଏହି ଦୁଇ ଭାଗ ମଧ୍ୟରେ ସ୍ତ୍ରୀ ଭାଗଟି ଅଧିକ ଆକର୍ଷକ । ନାରୀକୁ ଦେଖିବାମାତ୍ରେ ଋଷି, ମୁନିଗଣ, ମାଳା, କୋଥଳି ଫିଙ୍ଗିଦେଇ ଗୃହସ୍ଥ ହେବାକୁ ବ୍ୟାକୁଳ ହୋଇପଡ଼ନ୍ତି । ଏହି ଭାବରେ ବ୍ରହ୍ମାଙ୍କ ଉଦ୍ଦେଶ୍ୟ ସଫଳ ହେଲା, ସଂସାରର ଚକ ଗଡ଼ିଚାଲିଲା । ପୁରୁଷ ପାଗଳ ପରି ନାରୀର ଇଙ୍ଗିତରେ ନାଚିବାକୁ ଲାଗିଲା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତେଣୁ ମୋହିନୀ ନାରୀର ସେବାରେ ଅତ୍ୟଧିକ ମାଦକତା ଥାଏ । ଆପଣ ତ ଭୋଗମୁକ୍ତ, ନାଁ କଣ ?"

ଲଜ୍ଜିତ ହୋଇ ମହାରାଜ ପରୀକ୍ଷିତ କହିଲେ—"ଭଗବନ୍ ! ଶାସ୍ତ୍ରକାରମାନଙ୍କ ଅନୁଭବ କଣ ମିଥ୍ୟା ହୁଏ ? ହଉ, ତା'ପରେ କଣ ହେଲା ?"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଆଉ କଣ ହେବ ? ହରିଣ ଜାଲରେ ପଡ଼ିଗଲେ ତାକୁ ଯେପରି ଇଚ୍ଛା ସେପରି ବ୍ୟବହାର କରାଯାଏ । ଦିନେ ମୁନି କଶ୍ୟପ ସ୍ନେହମୟୀ ପତ୍ନୀଙ୍କ ସେବାରେ ସନ୍ତୁଷ୍ଟ ହୋଇ କହିଲେ—"ମୁଁ ତୁମ ସେବାରେ ସନ୍ତୁଷ୍ଟ । ହେ ଭାମିନି ! ହେ ଆନନ୍ଦିତେ ! ତୁମେ ମୋ'ଠାରୁ କୌଣସି ବର ପ୍ରାର୍ଥନା କର । ତୁମେ ଯାହା ମାଗିବ ମୁଁ ତାହା ଦେବା ପାଇଁ ପ୍ରସ୍ତୁତ ।"

ପ୍ରେମବିହ୍ୱଳ ମୁନିଙ୍କ ମୁଖକୁ ଚାହିଁ ଅଦିତି କହିଲେ —"ଥାଉ ଥାଉ, ଆପଣ ବରଦାନ କଣ ଦେବେ । ଆପଣ ମୋତେ ଏହିପରି ଆଦର କରନ୍ତୁ ତାହାହିଁ ମୋ' ପକ୍ଷରେ ଯଥେଷ୍ଟ । ଆପଣ କହିବା ଅନୁସାରେ ଯଦି ମୁଁ କିଛି ମାଗିବି ଆଉ ଆପଣ ଦେଇ ନ ପାରିବେ ତେବେ ଆମେ ଉଭୟ ଲଜ୍ଜିତ ହେବୁ । ତେଣୁ ଏହିପରି ରହିବା ଶ୍ରେୟସ୍କର ।"

ନିଜ କଥାରେ ଗୁରୁତ୍ୱ ଦେଇ ମୁନି କଶ୍ୟପ କହିଲେ—"ପ୍ରିୟେ ! ତୁମେ ଏପରି କଣ କହୁଛ ? ତୁମେ କଣ ମୋ' କଥାକୁ ବିଶ୍ୱାସ କରୁନାହଁ ?"

ଅଦିତି କହିଲେ—"ମହାରାଜ ! ବିଶ୍ୱାସ କଥା ଛାଡ଼ନ୍ତୁ । ମୋର ଭୟ ହେଉଛି, ଯଦି ମୁଁ କୌଣସି ଦୁର୍ଲଭ ବସ୍ତୁ ମାଗିଲି ତେବେ ଆପଣ ଲଜ୍ଜାଜନକ ଅବସ୍ଥାରେ ପଡ଼ିଯିବେ ।"

ସ୍ନେହ ଓ ମମତାପୂର୍ଣ୍ଣ ବାକ୍ୟରେ କଶ୍ୟପ ମୁନି କହିଲେ—"ପ୍ରିୟେ ! ତୁମେ ମୋତେ ବର ମାଗିବାରେ କୌଣସି ପ୍ରକାର ଲଜ୍ଜା କର ନାହିଁ । ପତି ପ୍ରସନ୍ନ ହେଲେ ସତୀ ନାରୀ ପାଇଁ ଦୁର୍ଲଭ ହୋଇ କୌଣସି ବସ୍ତୁ ରହେ ନାହିଁ । ତାହା ଇହଲୋକ ପାଇଁ ହେଉ ବା ପରଲୋକ ପାଇଁ ହେଉ ମୁଁ ତୁମର ମନୋରଥ ନିଶ୍ଚୟ ପୂର୍ଣ୍ଣ କରିବି ।"

ଭକ୍ତି ପ୍ରଦର୍ଶନ ପୂର୍ବକ ଅଦିତି କହିଲେ—"ପ୍ରଭୋ ! ଆପଣ ମୋର ପୂଜନୀୟ, ଆରାଧନୀୟ ଓ ଇଷ୍ଟ । ସଂସାରରେ ଆପଣଙ୍କୁ ଛାଡ଼ି ମୋର ଆଉ କିଏ ଅଛି ?"

ଏହା ଶୁଣି ମୁନି କଶ୍ୟପ କହିଲେ—"ନାଁ ପ୍ରିୟେ ! ମୁଁ କିଛି ନୁହେଁ । ଆମ ସମସ୍ତଙ୍କର ପୂଜନୀୟ ହେଉଛନ୍ତି ସର୍ବାନ୍ତର୍ଯ୍ୟାମୀ ସେହି ଶ୍ରୀହରି । ଭଗବାନ୍ ବାସୁଦେବହିଁ ସମସ୍ତଙ୍କ ଅନ୍ତଃକରଣରେ ବିରାଜମାନ ଅଛନ୍ତି । ତାଙ୍କୁ ଯେ ଯେଉଁ ଭାବରେ ଭଜନ କରେ ସେ ତାଙ୍କୁ ସେହି ଭାବରେ, ସେହି ରୂପ ଓ ନାମରେ ଦର୍ଶନ ଦିଅନ୍ତି । ଯେ କୌଣସି ଦେବତାଙ୍କୁ ପୂଜା କଲେ ମଧ୍ୟ ସେହି ଅଖିଳେଶ ଅଚ୍ୟୁତ ପୂଜିତ ହୁଅନ୍ତି । ସତୀ, ସାଧ୍ୱୀ ନାରୀଗଣ ପତି ରୂପରେ ତାଙ୍କୁହିଁ ପୂଜା କରନ୍ତି । ତେଣୁ ତୁମେ ଯେଉଁ ପୂଜା, ଅର୍ଚ୍ଚନା କରୁଛ, ତାହାଦ୍ୱାରା ମୋର ଏ ଭୌତିକ ଶରୀର ନୁହେଁ, ସେହି ଅନ୍ତର୍ଯ୍ୟାମୀ ଶ୍ରୀହରିଙ୍କ ପୂଜା ସମାହିତ ହେଉଛି । ତୁମେ ନିଷ୍କପଟ ଭାବରେ ଶରୀର ସୁଖ ମନରୁ ପୋଛି ଦେଇ ମୋତେ ପୂଜା କରିଛ ଆଉ ମୁଁ ଆଜି ତୁମର ଅଭିଳାଷ ପୂର୍ଣ୍ଣ କରିବି । ତୁମେ ଇଚ୍ଛା ଅନୁସାରେ ବର ପ୍ରାର୍ଥନା କର । ତୁମର ଅଭିଳାଷ ପୂର୍ଣ୍ଣ ହେବ କି ନାହିଁ, ତୁମେ ଯାହା ମାଗିବ ମୁଁ ଦେଇ ପାରିବି କି ନାହିଁ, ସେ ପ୍ରକାର ସନ୍ଦେହ ମନରୁ ଦୂର କର । ତୁମର ଇଚ୍ଛା ପୂର୍ଣ୍ଣ ହୋଇଛି ବୋଲି ଭାବିନିଅ ।"

ଶ୍ରୀ ଶୁକଦେବ କହିଲେ—ରାଜନ୍ ! "ଅଦିତି ଯେତେବେଳେ ଭଗବାନ୍ କଶ୍ୟପଙ୍କୁ ନିଜର ସମ୍ପୂର୍ଣ୍ଣ ବଶୀଭୂତ ହୋଇ ରହିବାର ଅନୁଭବ କଲେ ସେତେବେଳେ ହୃଦୟକୁ ହ୍ଲାହ୍ଲଳ ପୂର୍ଣ୍ଣ କରି ମଧୁର ବଚନରେ କହିଲେ—ବ୍ରହ୍ମନ୍ ! ଆପଣ ଯଦି ପ୍ରକୃତରେ ମୋ' ପ୍ରତି ପ୍ରସନ୍ନ ଓ ମୋତେ ବର ଦେବାପାଇଁ ଇଚ୍ଛୁକ ତେବେ ମୁଁ ଏହି ବର ମାଗୁଛି, ମୋତେ ଆପଣ ପୁତ୍ରଟିଏ ପ୍ରଦାନ କରନ୍ତୁ ।"

ମହାମୁନି କଶ୍ୟପ କହିଲେ—"ସୁନ୍ଦରି ! ଏପରି ଏକ ଛୋଟିଆ କଥା ପାଇଁ ତୁମେ ଏତେ ବଡ଼ ଭୂମିକା କରୁଥିଲ । ଏହା କିବା କଥା..."

ମଝିରେ କଥା କାଟିଦେଇ ଦିତି କହିଲେ—"ନାଁ ବ୍ରହ୍ମନ୍ ! ମୁଁ ଏକ ସାଧାରଣ ପୁଅ ଚାହୁଁ ନାହିଁ । ମୋର ବିଶ୍ୱବିଜୟୀ, ପ୍ରବଳ ପରାକ୍ରମୀ, ତ୍ରୈଲୋକ୍ୟ ବିଖ୍ୟାତ ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ଦୁଇ ପୁଅଙ୍କୁ ଯେଉଁ ଇନ୍ଦ୍ର ଚକ୍ରାନ୍ତ କରି ମାରିଦେଇଛି ସେହି ଦୁଷ୍ଟ ଇନ୍ଦ୍ରକୁ ମାରିବା ପାଇଁ ମୋର ପୁତ୍ର ଦରକାର । ମୋ' ସଉତୁଣୀର ଏହି ସମୃଦ୍ଧଶାଳୀ, ଈର୍ଷାଳୁ, ଅସହିଷ୍ଣୁ ଶତକ୍ରତୁକୁ ଯେ ଯମପୁର ପଠାଇପାରିବ ସେହିପରି ପୁଅ ମୋର ଆବଶ୍ୟକ । ଆପଣ ଦୟାକରି ମୋତେ ସେହିପରି ପୁଅ ଦିଅନ୍ତୁ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଦିତିଙ୍କ କଥା ଶୁଣି ଭଗବାନ୍ କଶ୍ୟପ ସ୍ତବ୍ଧ ହୋଇଗଲେ । ସେ କିଛି କହି ପାରିଲେ ନାହିଁ । ସେ ହଁ କହିପାରିଲେ ନାହିଁ କି ନାହିଁ କରି ପାରିଲେ ନାହିଁ ।"

### ଛପ୍ପୟ

ବୋଲେ ଦିତି ତେଁ ପ୍ରିୟ୍ଯ ମାଗୁଁ ବର ଇଚ୍ଛିତ ମୋତେ ।
ତବ ସେବା ଲଖି ତୁଷ୍ଟ ଭୟୋ ଭାମିନ ହୌଁ ତୋତେ ।।
ହେଁ ପ୍ରାନନ ତେଁ ଅଧିକ ପିୟ୍ଯାରେ ନଜ ପଡ଼ି ଜିନକୁଁ ।
ତବ ଜଗ ମହୁଁ ଫିର କୌନ ବସ୍ତୁ ହୈ ଦୁର୍ଲଭ ତିନକୁଁ ।।
ମାଗେଁ ବର ହିୟ୍ଯ ବଜ୍ର କରି, ଦିତି ଲଖିପତି ଅତି ପ୍ରୀତି ଯୁତ ।
ଜୋ ମାରେ ଦେବେନ୍ଦ୍ର କୁଁ, ଅମର ଏକ ଅସ ଦେହୁଁ ସୁତ ।।



# କଶ୍ୟପଙ୍କ ବରଦାନ

ପୁତ୍ରସ୍ତେ ଭବିତା ଭଦ୍ରେ ଇନ୍ଦ୍ରହା ଦେବବାନ୍ଧବଃ ।
ସମ୍ବତ୍ସରଂ ବ୍ରତମିଦଂ ଯଦ୍ୟଞ୍ଜୋ ଧାରୟିଷ୍ୟସି ॥

(ଶ୍ରୀମଦ୍ଭାଗବତ-୬ଷ୍ଠ ସ୍କନ୍ଧ-୧୮ଅ, ୪୫ ଶ୍ଳୋ)

## ଛପ୍‌ପୟ

ଦିତି କେ ବର କୁଁ ସୁନତ ଭୟେ ବ୍ୟାକୁଲ କଶ୍ୟପ ମୁନି ।
ହାୟ କହା ମୈଁ କର୍‌ୟୋ ଭୟୋ ପରବଶ ସୋଚେଁ ପୁନି ॥
ନାରୀ ଚରିତ ଅତି ପ୍ରବଲ ନୟନ—ସର ବଡ଼େ କଁଟୀଲେ ।
କମଲ କୁସୁମ କେ ସରସ ମଧୁର ମୁଖ ବୈଁନର ସୀଲେ ॥
କ୍ଷୁର ଧାର୍ କେ ସରସ ହିୟ, କୋ ଗୃହେଁ ଜେ କରି ସକେଁ ।
କ୍ରୁଦ୍ଧ ଭୟେ ପତି ପୁତ୍ର କେ, ପ୍ରାନନି କୁଁ ହୃ ହରି ସକେଁ ॥

କ୍ରୋଧ ହିଁ ପାପର ମୂଳ କାରଣ । କ୍ରୋଧପରବଶ ହେଲେ ସ୍ତ୍ରୀ ବା ପୁରୁଷ କେହି ନିଜ ଆୟତ୍ତରେ ରହନ୍ତିନାହିଁ । କ୍ରୋଧୀ ବ୍ୟକ୍ତିର ମୁଣ୍ଡରେ ଭୂତ ସବାର ହୋଇଯାଏ । ସେ ନିଜର ଜ୍ଞାନ ହରାଇବସେ । ସ୍ତ୍ରୀଲୋକ ଯେତିକି କୋମଳ କ୍ରୋଧାନ୍ୱିତ ହେଲେ ସେତିକି କଠୋର ଆଚରଣ କରନ୍ତି । ପ୍ରକୃତିସ୍ଥ ଥିବାବେଳେ ନାରୀ ଯେପରି ଦୟାମୟୀ, ମମତାମୟୀ, ପ୍ରେମମୟୀ ହୋଇଥାଏ ପ୍ରତିକୂଳ ହେଲେ ସେହିପରି କ୍ରୂର, ଦୟାହୀନ ଓ ବଜ୍ର ପରି କଠୋର ହୃଦୟା ହୋଇଉଠେ । ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀଲୋକ ସ୍ୱଭାବତଃ ଅଧିକ ଚଞ୍ଚଳ ଓ ଅସ୍ଥିର । ସଦାଚାର, ନମ୍ରଭାବ ଓ ଲଜ୍ଜାଯୁକ୍ତ ନାରୀ ହିଁ ପ୍ରକୃତ ନାରୀ ଭାବରେ ରହେ ଅନ୍ୟଥା ସେ ଚଣ୍ଡୀ ପାଲଟିଯାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଦିତି ଯେତେବେଳେ ନିଜର ପତି କଶ୍ୟପଙ୍କୁ ଇନ୍ଦ୍ରଙ୍କୁ ମାରିଦେବା ପାଇଁ ସାମର୍ଥ୍ୟ ଥିବା ପୁଅଟିଏ ପାଇଁ ପ୍ରାର୍ଥନା କଲେ ସେତେବେଳେ ମୁନି ଏକ ଧର୍ମସଙ୍କଟରେ ପଡ଼ିଗଲେ । ତାଙ୍କର ଆଖି ଖୋଲିଗଲା । ସେ ସଚେତନ ହୋଇ ଉଠିଲେ । ଏବେ ସେ ଦିତିଙ୍କ ସେବାର ରହସ୍ୟ ବୁଝିପାରିଲେ । ସେ ସେବା ଯେ ସ୍ୱାର୍ଥ-ପ୍ରଣୋଦିତ, ପ୍ରେମ ଯେ କପଟପୂର୍ଣ୍ଣ ଆଉ ସ୍ନେହ ଯେ କୃତ୍ରିମ ଥିଲା, ତାହା ମୁନି ଭଲ ଭାବେ ହୃଦୟଙ୍ଗମ କଲେ । ଦିତି ଯେ ବିଷପୂର୍ଣ୍ଣ ପୟୋମୁଖ ସ୍ୱର୍ଣ୍ଣଘଟ ସେଥିରେ ଆଉ ସନ୍ଦେହ ରହିଲା ନାହିଁ । ମୁନି ଭାବିଲେ—ଏବେ କ'ଣ କରିବି । ଯଦି ବର ଦେବି ତେବେ ନିଜର ଜ୍ୟେଷ୍ଠପୁତ୍ର, ଦେବତାଙ୍କ ଅଧୀଶ୍ୱର, ତ୍ରିଲୋକପୂଜିତ ପୁତ୍ରବଧର ଭାଗୀଦାର ହେବି । ଯଦି ବର ନ ଦେବି ତେବେ ପ୍ରତିଜ୍ଞା ଭଙ୍ଗ ହେବ । ଉଭୟ ଅପରାଧରେ ମୁଁ ନରକଗାମୀ ହେବି ।"

ହାୟ, ମୋର କାହିଁକି ଏପରି କୁବୁଦ୍ଧି ଜାତ ହେଲା ? ଇନ୍ଦ୍ରିୟ ଲୋଲୁପ ହୋଇ ମୁଁ ଏହି ଚପଳାର କୁହକଚକ୍ରରେ ମୋହିତ ହୋଇଗଲି । ମୁନିମନମୋହିନୀ ମହିଳାରୂପିଣୀ ମାୟା ମୋର ମନକୁ ଆଚ୍ଛନ୍ନ କରିଦେଲା । ମୋତେ ବି ଏକ କଣ୍ଢେଇରୂପେ ନଚାଇ ଦେଲା ।

ନାରୀମାନେ ବାଳିକା ଥିବା ପର୍ଯ୍ୟନ୍ତ ସମସ୍ତଙ୍କର ଆଦରଣୀୟା ହୋଇଥାନ୍ତି । ଏପରିକି ସତୀଧର୍ମରେ ଥିବାଯାଏ ସମସ୍ତେ ତାକୁ ସମ୍ମାନ କରନ୍ତି । କିନ୍ତୁ ନାରୀ ସ୍ୱେଚ୍ଛାଚାରିଣୀ, ବିବେକହୀନା ହେଲେ ନିଜର ଉଦ୍ଦେଶ୍ୟସିଦ୍ଧି ପାଇଁ ନାନା ଉପାୟ କରେ । ବାହାରକୁ ସରଳ, ସୁନ୍ଦର ଦେଖାଗଲେ ମଧ୍ୟ ଭିତରେ ରାଗ, ଦ୍ୱେଷ ପୂର୍ଣ୍ଣ ରହିଥାଏ । ଭିତରେ ଛୁରି ମାରିବା ଭଳି ଯନ୍ତ୍ରଣା ଅନୁଭବ କରୁଥିଲେ ମଧ୍ୟ ମୁରୁକି ହସ, ଛଳ ଛଳ ଆଖିରେ ନାରୀ ଅତି ସହଜ ଓ ସରଳ ପ୍ରକାଶରେ ସିଦ୍ଧହସ୍ତା । କଥାରେ ସେ ଅମୃତ ଝରାଇଦିଏ ଏବଂ ଯାହାଦ୍ୱାରା ନିଜର ଉଦ୍ଦେଶ୍ୟ ସିଦ୍ଧ କରିବାର ଅଭିଳାଷ ପୋଷଣ କରେ ତା'ର ଅତି ପ୍ରିୟ ହୋଇପଡ଼େ । କିନ୍ତୁ ଏପରି ସ୍ୱାର୍ଥପରାୟଣା ନାରୀର କେହି ନିଜର ହୋଇ ରହନ୍ତି ନାହିଁ । ସ୍ୱାର୍ଥତତ୍ପରା ନାରୀର କେହି ପ୍ରିୟ ନୁହେଁ କି କେହି ଭାଇ, ବନ୍ଧୁ, କୁଟୁମ୍ବ ନୁହେଁ । ନିଜର ସ୍ୱାର୍ଥ ପାଇଁ ସେ ପତି, ପୁତ୍ର, ପିତା, ଭାଇ ବା ଅନ୍ୟ ଯାହାକୁ ଇଚ୍ଛା ତାକୁ ବିନାଶ କରିବା ପାଇଁ ଆଦୌ କୁଣ୍ଠିତ ହେବ ନାହିଁ । ସତୀ ପତିର, କିନ୍ତୁ କାମିନୀ କାହାର ନୁହେଁ ।

ମୁନି କଶ୍ୟପ ପୁଣି ଭାବିଲେ—"କିନ୍ତୁ ଏଥିରେ ଦିତିର ଅପରାଧ କଣ ହେଲା ? ମୁଁ ଏହାକୁ ଲକ୍ଷ୍ୟ କରି ସମଗ୍ର ନାରୀଜାତିକୁ ଦୋଷୀ କରିବାର କାରଣ କଣ ? ନିଜର ଜିନିଷ ଯଦି ଖରାପ ହୋଇ ନ ଥିବ ତେବେ ତାକୁ ପରଖିବା ଲୋକ ଖରାପ କହିବ କିପରି ? କେହି ଅନ୍ୟକୁ ସୁଖ ଦୁଃଖ ଦେଇପାରେ ନାହିଁ । ମଣିଷ ନିଜ ବାସନାର ଶୀକାର ହୋଇ ପାପଭାଗୀ ହୁଏ । ମୁଁ ମୋ'ର ଇନ୍ଦ୍ରିୟମାନଙ୍କୁ ସଂଯତ ରଖିଥିଲେ ଆଜି ଏ ବିପଦ ଆସି ନ ଥାନ୍ତା । ମୁଁ ବିଷୟଭୋଗରେ ମଜ୍ଜିଗଲି । ସ୍ତ୍ରୀ ସୁଖକୁ ସର୍ବସ୍ୱ ମନେ କରି ତା'ର ଅଧୀନ ହୋଇପଡ଼ିଲି । ଏହାର ମିଥ୍ୟା ପ୍ରେମରେ ତନ୍ମୟ ହୋଇ ମୁଁ ନିଜର ବାସ୍ତବ ସ୍ୱାର୍ଥକୁ ଭୁଲିଗଲି । ଏଥିରେ ଦିତିର କଣ ଭୁଲ୍ ହେଲା ? ଦୋଷ ତ ମୋର । ମୁଁ ବାରମ୍ବାର ବର ମାଗିବା ପାଇଁ ତାଙ୍କୁ ବାଧ୍ୟ କରିଛି । ଧିକ୍ ମୋତେ ? ମୋ'ର ତପ, ସଂଯମ, ଅଗ୍ନିହୋତ୍ର, ବ୍ରତ ସବୁ ମୋର ବ୍ୟର୍ଥ ହୋଇଗଲା । ଯେ ସ୍ତ୍ରୈଣ ତା'ର ତ ଏହି ପରିଣତି ଘଟେ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏହିପରି କଶ୍ୟପ ସ୍ତ୍ରୀ ପୁରୁଷ ଉଭୟଙ୍କୁ ନିନ୍ଦା କରି ଦୁଃଖୀ ହେଲେ । ସେ ଧୈର୍ଯ୍ୟ ଧାରଣ କରି ପୁଣି ଚିନ୍ତା କଲେ—ବର୍ତ୍ତମାନ ଯାହା ହେବାର କଥା ହୋଇ ସାରିଛି । ଏବେ କଣ କରିବି ? କଣ ବର ଦେଇ ଦେବି ? ନାଁ, ମୁଁ ଏପରି ବର ଦେଇପାରିବି ନାହିଁ । ମୁଁ ଏବେ ଏପରି କିଛି ଉପାୟ କରିବି ଯାହାଦ୍ୱାରା ମୁଁ ବଚନଭ୍ରଷ୍ଟ ହେବି ନାହିଁ କି ଇନ୍ଦ୍ରଙ୍କର ମଧ୍ୟ କ୍ଷତି ହେବ ନାହିଁ । ଏଥିରେ କପଟର ଆଶ୍ରୟ ନେବାକୁ ପଡ଼ିବ, ମାତ୍ର ଏ ଅବସ୍ଥାରେ ତାହା କ୍ଷମଣୀୟ । ବରଦାନ ସହିତ ଏପରି ଏକ ନିୟମ ଖଞ୍ଜିଦେବି ଯେ ତାହା ପୂର୍ଣ୍ଣ ହେବ ନାହିଁ କି ଇନ୍ଦ୍ରଙ୍କୁ ମାରିବା ଭଳି ପୁତ୍ର ଜନ୍ମ ହେବ ନାହିଁ । ନଅ ମହଣ ଘିଅ ମିଳିବ ନାହିଁ କି ରାଧା ନାଚିବ ନାହିଁ । ଏହିପରି

ଚିନ୍ତା କରି କଶ୍ୟପ କହିଲେ—"ପ୍ରିୟେ ! ଇନ୍ଦ୍ରକୁ ମାରିବା ପାଇଁ ତୁମର ପୁତ୍ର ହେବ କିନ୍ତୁ ଗୋଟିଏ ସର୍ତ୍ତରେ ।"

ଦିତି ପଚାରିଲେ—"ସେହି ସର୍ତ୍ତଟି କଣ ?"

ଭଗବାନ୍ କଶ୍ୟପ କହିଲେ—"ମୁଁ ତୁମକୁ ଏକ ବ୍ରତ ଆଚରଣପାଇଁ କହିବି । ବର୍ଷେ କାଳ ତୁମେ ନିର୍ବିଘ୍ନରେ ଏହି ବ୍ରତ ପାଳନ କଲେ ଇନ୍ଦ୍ରଙ୍କୁ ନିହତ କରିବା ପାଇଁ ଏକ ପୁତ୍ର ଲାଭ କରିବ । ଯଦି ବ୍ରତରେ କୌଣସି ବିଘ୍ନ ହେବ ତେବେ ପରିଣାମ ବିପରୀତ ହେବ ଏବଂ ପୁଅ ତୁମର ଇନ୍ଦ୍ରହନ୍ତା ନ ହୋଇ ଦେବତାମାନଙ୍କର ବନ୍ଧୁ ହୋଇଯିବ ।"

ଦୃଢ଼ତାର ସହିତ ଦିତି କହିଲେ—"ବ୍ରହ୍ମନ୍ ! ମୁଁ ସବୁକିଛି କରିବା ପାଇଁ ସମର୍ଥ । ଆପଣ ବ୍ରତ ବିଷୟରେ ମୋତେ ଉପଦେଶ ଦିଅନ୍ତୁ । ଆପଣ ଯେପରି କହିବେ ମୁଁ ସାବଧାନତାର ସହିତ ତାହା ପାଳନ କରିବି । କୌଣସି ପ୍ରକାର ବିଘ୍ନ ଯେପରି ନ ହେବ ସେଥିପାଇଁ ଯତ୍ନ କରିବି । ପ୍ରଥମେ ବିଧି ଓ ପରେ ନିଷେଧ ବିଷୟ କହନ୍ତୁ । କ'ଣ କଲେ ବ୍ରତ ଭଙ୍ଗ ହେବ, ତାହା ବୁଝାଇ ଦିଅନ୍ତୁ ।"

ଏହା ଶୁଣି ଭଗବାନ୍ କଶ୍ୟପ କହିଲେ—"ପ୍ରିୟେ ! ତୁମେ ପୁଂସବନ ନାମକ ବ୍ରତ ପାଳନ କର । ସକାଳେ ଉଠି ଶୌଚ ହୋଇ ଶୁଭ୍ରବସ୍ତ୍ର ପରିଧାନ କରିବ । ସମସ୍ତ ପ୍ରକାର ସୌଭାଗ୍ୟ ଚିହ୍ନରେ ଭୂଷିତ ହେବ, ବାରମ୍ବାର ଭୋଜନ କରିବନାହିଁ । କିଛି ନଖାଇ ଗୋ, ବ୍ରାହ୍ମଣ, ଲକ୍ଷ୍ମୀନାରାୟଣଙ୍କୁ ପୂଜା କରିବ । ସଧବା ନାରୀମାନଙ୍କୁ ଗନ୍ଧ ଚନ୍ଦନ, ମାଳ, ଧୂପ ଦୀପ, ନୈବେଦ୍ୟାଦି ଦେଇ ପୂଜା କରିବ । ପତିଙ୍କ ସେବାରେ ଆତ୍ମନିୟୋଗ କରିବ । ପତିଙ୍କ ତେଜ ନିଜ କୁକ୍ଷିରେ ବିରାଜିତ ଅଛି ବୋଲି ସର୍ବଦା ଚିନ୍ତା କରିବ । ଏହାହିଁ ପୁଂସବନର ସଦାଚାର । ବ୍ରତର ପ୍ରକୃତ ନିୟମ ପରେ କହିବି, ଏହା କେବଳ ସଦାଚାର ମାତ୍ର ।

ଏହା ଶୁଣି ଦିତି କହିଲେ—"ବ୍ରହ୍ମନ୍ ! ଆପଣ ବ୍ରତର କର୍ତ୍ତବ୍ୟ ବିଷୟ କହିଲେ । କିନ୍ତୁ କଣ କଣ କଲେ ବ୍ରତ ଭଙ୍ଗ ହେବ ତାହା ଦୟାକରି ବୁଝାଇ ଦିଅନ୍ତୁ ।"

ଭଗବାନ୍ କଶ୍ୟପ କହିଲେ—"ଦେଖ, ଏଇ କେତୋଟି ବିଷୟରେ ସାବଧାନ ହୋଇ ବ୍ରତ ପାଳନ କରିବ ।"

(୧) କାହାରକୁ ହିଂସା କରିବ ନାହିଁ । (୨) କ୍ରୋଧାନ୍ୱିତ ହୋଇ ଅଭିଶାପ ଦେବ ନାହିଁ (୩) ମିଛ କହିବ ନାହିଁ, ନୀରବ ରହିବ ଅଥବା ସତ୍ୟ କହିବ । (୪) ବ୍ରତପାଳନ କାଳରେ ନଖ ଓ ଲୋମ କାଟିବ ନାହିଁ । (୫) ଅଶୁଦ୍ଧ ଦ୍ରବ୍ୟ ସ୍ପର୍ଶ କରିବ ନାହିଁ । (୬) ଜଳ ଭିତରେ ପଶି ସ୍ନାନ କରିବ ନାହିଁ । (୭) କ୍ରୋଧ ପ୍ରକାଶ କରିବ ନାହିଁ । (୮) ଦୁଷ୍ଟ ଓ ଦୁର୍ଜନ ପୁରୁଷ ସହିତ କଥା କହିବ ନାହିଁ । (୯) ଅଶୁଦ୍ଧ ବସ୍ତ୍ର ପିନ୍ଧିବ ନାହିଁ । (୧୦) ଅନ୍ୟର ମାଳା ପିନ୍ଧିବ ନାହିଁ । (୧୧) ଉଚ୍ଛିଷ୍ଟ ଭୋଜନ କରିବ ନାହିଁ । (୧୨) କାଳୀଙ୍କୁ ନିବେଦିତ ଅନ୍ନ ଖାଇବ ନାହିଁ । (୧୩) ମାଂସ ଖାଇବ ନାହିଁ । (୧୪) ଶୂଦ୍ର ସ୍ପର୍ଶ କରିଥିବା ଅନ୍ନ ଖାଇବ ନାହିଁ । (୧୫) ରଜସ୍ୱଳା ନାରୀ ସ୍ପର୍ଶ ଅନ୍ନ ଗ୍ରହଣ କରିବ ନାହିଁ । (୧୬) ଦୁଇହାତ ଅଞ୍ଜଳି କରି ପାଣି ପିଇବ ନାହିଁ । (୧୭) ମୁହଁ ଅଇଁଠା କରି ଘରୁ ବାହାରକୁ ଯିବନି ।

(୧୮) ଖାଇବା ପରେ ହାତ ନ ଧୋଇ ବାହାରିବ ନାହିଁ । (୧୯) ସକାଳ ଓ ସନ୍ଧ୍ୟାରେ ଘରୁ ବାହାରକୁ ଯିବ ନାହିଁ । (୨୦) କେଶ ମୁକୁଳା ରଖିବ ନାହିଁ । (୨୧) ସଧବାର ବେଶ ବିନା ବାହାରକୁ ବାହାରିବ ନାହିଁ । (୨୨) କଟୁ, ମିଥ୍ୟା ଓ ଅପ୍ରିୟ କଥା କହିବ ନାହିଁ । (୨୩) ବସ୍ତ୍ର ନ ପିନ୍ଧି ବା ଏକ ବସ୍ତ୍ରରେ ଘରୁ ବାହାରିବ ନାହିଁ । (୨୪) ଶେଯରେ ଶୋଇବା ପୂର୍ବରୁ ପାଦ ଧୋଇବ । (୨୫) ଅଶୌଚ ବସ୍ତ୍ର, ହସ୍ତ ପଦରେ ଶୟନ କରିବ ନାହିଁ । (୨୬) ଧୂଳଧୂସର ପାଦରେ ଶୋଇବ ନାହିଁ । (୨୭) ଉତ୍ତର ବା ପଶ୍ଚିମକୁ ମୁଣ୍ଡ କରି ଶୋଇବ ନାହିଁ । (୨୮) ଅନ୍ୟ କାହାର ଶେଯରେ ଶୋଇବ ନାହିଁ । (୨୯) ଲଙ୍ଗଳା ହୋଇ ଶୋଇବ ନାହିଁ । (୩୦) ସକାଳ ଓ ସନ୍ଧ୍ୟାରେ ଶୋଇବ ନାହିଁ ।

ଏହି ଚରଣଟି ନିତିଦିନ ଆଚାର ପ୍ରତି ବିଶେଷ ଦୃଷ୍ଟି ଦେବ । ତୁମେ ବର୍ଷେ ପର୍ଯ୍ୟନ୍ତ ଏହି ନିତ୍ୟ ନିୟମ ପାଳନ କଲେ ତୁମର ମନୋରଥ ପୂର୍ଣ୍ଣ ହେବ । ଏଥିରେ ବିଘ୍ନ ଘଟିଲେ ପ୍ରତିକୂଳ ଫଳ ଘଟିବ ।

ମୁନିଙ୍କ ଉପଦେଶ ଶୁଣି ଦିତି ଦୃଢ଼ସ୍ୱରରେ କହିଲେ—ବ୍ରହ୍ମନ୍ ! ଏଥିରେ କୌଣସି ପ୍ରକାର କଠିନତା ନାହିଁ । ମୁଁ ପ୍ରାୟ ଏସବୁ ପାଳନ କରୁଛି । ଏହା ସଦାଚାର ନାରୀ ପକ୍ଷରେ ସର୍ବଦା ପାଳନୀୟ । ମୁଁ ଏ ସମସ୍ତ ନିୟମ ପାଳନ କରିବି । ନିତିଦିନ ଆଚାର, ବ୍ୟବହାର ପ୍ରତି ସର୍ବଦା ଲକ୍ଷ୍ୟ ରଖିବି । ଆପଣ ମୋତେ ପୁଂସବନ ବ୍ରତ ବିଷୟରେ ଉପଦେଶ ଦିଅନ୍ତୁ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଦିତି ସବୁକଥା ସ୍ୱୀକାର କରିଗଲା ପରେ ଭଗବାନ୍ କଶ୍ୟପ ବିଧି ପୂର୍ବକ ପୁଂସବନ ବ୍ରତ ଶିକ୍ଷା ଦେଲେ । ଶାସ୍ତ୍ରୀୟ ବିଧି ଅନୁସାରେ ଗର୍ଭାଧାନ ସଂସ୍କାର କଲେ । ଭଗବାନ୍ କଶ୍ୟପଙ୍କ ଅମୋଘ ତେଜୋଯୁକ୍ତ ବୀର୍ଯ୍ୟ ଆକାଶରେ ଶୁକ୍ଳପକ୍ଷର ଚନ୍ଦ୍ର ବଢ଼ିଲା ପରି ଦିତିଙ୍କ ଗର୍ଭରେ ବଢ଼ିବାକୁ ଲାଗିଲା । ଦିତି ଗର୍ଭ ଧାରଣ କରି ଖୁବ୍ ସାବଧାନତାର ସହିତ ବ୍ରତ ନିୟମ ପାଳନ କରିବାକୁ ଲାଗିଲେ ।

## ଛପ୍ପୟ

ଯୋଗ କହେଁ—ବ୍ରତ ଏକ ବତାଉଁ ତୋହି ପୁଂସବନ ।
କରେ ତାହି ନିର୍ବିଘ୍ନ ହୋହି ଇଚ୍ଛିତ ସୁତ ଶୋଭନ ॥
ହୋହି ଚନିକହୁଁ ଛିଦ୍ର ଫେରି ସୁତ ସୁରପ୍ରିୟ ହୋୱୈ ।
ଯଦି ହ୍ୱୈ କେଂ ଅପବିତ୍ର କୂଠ ମୁଖ ତେଂ ତୂ ଯୋୱୈ ॥
ସଦାଚାର ପାଳନ କରେ, କଦାଚାର କୂଁ ତ୍ୟାଗୀ କେଁ ।
ବ୍ରତ ବୈଷ୍ଣବ ଯହି ବର୍ଷ ଭର କରିର ସମୟ ପର ଜାଗି କେଁ ॥

●

ମୁଦ୍ରାକର— ନବରତ୍ନ ପ୍ରିଣ୍ଟର୍ସ, ଝାଞ୍ଜିରୀମଙ୍ଗଳା, କଟକ-୯